# ମାମା ପାଇଁ ଗପଟିଏ

(ଗଳ୍ପ ସଂକଳନ)

ଗାଳ୍ପିକା ଡକ୍ଟର ସ୍ୱରାଜ୍ୟଲକ୍ଷ୍ମୀ ମିଶ୍ର
'କୈବଲ୍ୟ', ବଳଗଣ୍ଡି, ବଡ଼ଦାଣ୍ଡ, ପୁରୀ

ପ୍ରକାଶକ ଦିଲୀପ କୁମାର ବେଉରା
ବିଜୟିନୀ ପବ୍ଲିକେଶନ୍ସ
ଶଙ୍କରପୁର, ଅରୁଣୋଦୟ ମାର୍କେଟ୍, କଟକ - ୧୨

ପ୍ରଥମ ପ୍ରକାଶନ : ୩୦ ନଭେମ୍ବର ୨୦୨୦

ପ୍ରଚ୍ଛଦ ରମାକାନ୍ତ ସାମନ୍ତରାୟ

ମୁଦ୍ରଣ ସଙ୍ଗୀତା ପ୍ରିଣ୍ଟର୍ସ, କଟକ

# Mama Pain Gapatie

(Short Story Collection)

Writer Dr. Swarajya Laxmi Mishra
'Kaibalya', Balagandi,
Badadanda, Puri
Phone : 06752-222888

Publisher Dilip Kumar Beura
**Bijayinee Publications**
Shankarpur, Arunodaya Market
Cuttack - 753 012
Phone : 9439241471

First Edition 30 November 2020

Cover Art Ramakanta Samantaray

Printed at Sangeeta Printers, Cuttack

Price : ₹ 160 ISBN : 978-81-948343-9-7

# ମନ ଖୋଜିବାରେ
# ଓ ହୃଦୟର ବାସ୍ନାରେ ଜାରିତ
# 'ମାମା ପାଇଁ ଗପଟିଏ'
# ସଂପର୍କରେ ପଦେ...

ବିଶିଷ୍ଟ ଗାଳ୍ପିକା, ଯିଏ ଅର୍ଦ୍ଧଶତାବ୍ଦୀ ଧରି ମଣିଷକୁ ଖୋଜି ଆସିଛନ୍ତି ଓ ମଣିଷପଣିଆର ଅମୃତମୟ ଭାବରେ ଉଦ୍ଦୀପିତ ହୋଇଛନ୍ତି, ସିଏ ଲେଖିଚାଲିଛନ୍ତି ଗଳ୍ପ ପରେ ଗଳ୍ପ, ଉପନ୍ୟାସ ପରେ ଉପନ୍ୟାସ; ଯାହା ହୋଇଯାଇଛି ତାଙ୍କ ଗଳ୍ପକାରିତାର ଗୋଟିଏ ଗୋଟିଏ ଅନନ୍ୟ ଭାବ । ସର୍ବତ୍ର ମଧ୍ୟ ଧ୍ୱନିତ ହୋଇଛି ତାଙ୍କ ଅନୁଭବ ଓ ଅନୁଭୂତିର ସ୍ନାତ ସୁନ୍ଦର ରୂପ । 'ମାମା ପାଇଁ ଗପଟିଏ' ଷୋଳଟି ଗଳ୍ପର ଏକ ରମ୍ୟ ସଂକଳନ । କେତୋଟି ଗଳ୍ପ ଦୀର୍ଘ, କେତୋଟି ସୀମିତ । ଦୀର୍ଘ ହେଲେ ମଧ୍ୟ ତାହା ଖଣ୍ଡଜୀବନର ଅନୁଭୂତିରେ ସ୍ନିଗ୍ଧ । ସର୍ବତ୍ର ଅଛି ନାଟକୀୟତା ଓ ଉତ୍କଣ୍ଠା । ସ୍ରଷ୍ଟା ହୃଦୟର ଅମୃତ ରାଗିଣୀର ଘୁମନ୍ତ ଗନ୍ଧଧ୍ୱନି । ଆଧୁନିକ ନରନାରୀ, ଯୁବକଯୁବତୀ, ପ୍ରୌଢ଼ ଓ ବୃଦ୍ଧ/ବୃଦ୍ଧାଙ୍କର ମନଗହନର ରହସ୍ୟ ସର୍ବତ୍ର ଉନ୍ମୋଚିତ । ସବୁ ଗଳ୍ପ ମନସ୍ତାତ୍ତ୍ୱିକ; ଚେତନ ଓ ଅବଚେତନର ସଂଘର୍ଷରେ ଶାଣିତ । ପରିଣତି ବେଳକୁ ଗୋଟାଏ ଉଲ୍ଲାସବୋଧ ପାଠକ ଉପଲବ୍ଧି କରେ । କୌଣସି ଗଳ୍ପରେ ପ୍ରେମ ନାମରେ ଯୌନତାର ବୀଭତ୍ସ ଚିତ୍ର ନାହିଁ । ସ୍ୱାମୀ ସ୍ତ୍ରୀର ସଂପର୍କ ନାନା ଦ୍ୱନ୍ଦ୍ୱ ଭିତରେ ଆପେଆପେ ସମାଧାନ

ହୋଇଯାଇଛି । ଶାଶୂ-ଶ୍ୱଶୁର, ପିତା-ମାତା, ବନ୍ଧୁ-ବାନ୍ଧବୀ ତଥା ସ୍ୱାମୀ ପରିତ୍ୟକ୍ତା ଅସହାୟ ନିଃସ୍ୱ ବୃଦ୍ଧାର ବ୍ୟଥା ଓ ବେଦନା, ପୁରୀ, ସମୁଦ୍ର ଓ ଜଗନ୍ନାଥଙ୍କର ମାହାତ୍ମ୍ୟ; ସର୍ବୋପରି ମଣିଷର ଅନ୍ତର୍ନିହିତ ସ୍ୱରୂପ ଉଦ୍‌ଘାଟନ ଗଳ୍ପଗୁଡ଼ିକୁ ପ୍ରାଣବନ୍ତ କରିଦେଇଛି ।

'ମାମା ପାଇଁ ଗପଟିଏ'ରେ ଶିଶୁ ମନସ୍ତତ୍ତ୍ୱ ଓ ବାତ୍ସଲ୍ୟ ମମତାର ମହିମା ବେଶ୍ ଚିତ୍ତାକର୍ଷକ ହୋଇଥିଲାବେଳେ 'ଏ ଘର ଭଙ୍ଗାର' ଦୀର୍ଘ ଗଳ୍ପ ଭିତରେ ସ୍ୱାମୀ ଓ ସ୍ତ୍ରୀର ଭୁଲ ବୁଝାମଣାରୁ ପରସ୍ପରର ଛାଡ଼ପତ୍ର, ଏହା ସତ୍ତ୍ୱେ ଉଭୟଙ୍କ ପ୍ରତି ଅବଚେତନ ସ୍ତରରେ ଆକର୍ଷଣ ଓ ଶେଷରେ ବାନ୍ଧବୀଙ୍କ ଉପଦେଶ ଓ ପରାମର୍ଶରେ ସ୍ୱାମୀର ପତ୍ନୀ ଉଦ୍ଦେଶ୍ୟରେ ନୂତନ ଗୃହ ନିର୍ମାଣ ଓ ପୁନର୍ବାର ମିଳନ ବାସ୍ତବିକ ସାମାଜିକ ଅଙ୍ଗୀକାରବଦ୍ଧତାର ପରିଚୟ ଦିଏ । ସ୍ୱାମୀ ଓ ସ୍ତ୍ରୀର ଛାଡ଼ପତ୍ର ନୁହେଁ; ଏକତ୍ର ଭାବର ମଧୁର ବିନିମୟରେ ଜୀବନ ଯେ ଅମୃତମୟ ହୁଏ ତାହା ଏହି ଗଳ୍ପରେ ବ୍ୟଞ୍ଜିତ । 'ମତୀ ଦେଠେଇ' ଗଳ୍ପଟି ମଧ୍ୟ ମନସ୍ତାତ୍ତ୍ୱିକ ଓ ବୃଦ୍ଧା ମତୀଦେଈର ମାତୃତ୍ୱ ମହିମାରେ ରଞ୍ଜିମନ୍ତ । ସୁଆଦ ଓ ଅସୁଆଦକୁ ସମାନ ମଣିବା, ମିତା ପରି ଯୁବତୀର ମା' ମନର ଆପଣାପଣ ବେଶ୍ ମର୍ମସ୍ପର୍ଶୀ । 'ନିର୍ବାଚନର ଚିତ୍ର' ବାସ୍ତବରେ ଚଳିତ ସମୟର ଗାଣତନ୍ତ୍ରିକ ରାଜନୀତି, ଭୋଟ୍-ବ୍ୟବସ୍ଥା ଓ ସେଥିରେ ଟାଉଟରମାନଙ୍କର ଭୂମିକା, ଟଙ୍କା ବଣ୍ଟନ ଇତ୍ୟାଦି ପ୍ରତି ଏକ ତିର୍ଯ୍ୟକ ବ୍ୟଙ୍ଗ । ଭାରତବର୍ଷରେ ତଥା ଓଡ଼ିଶାରେ ଶିକ୍ଷାର ଅଭାବରୁ ନରନାରୀମାନେ ଯେପରି ଅପାତ୍ରରେ ପ୍ରଲୋଭନରେ ପଡ଼ି ଭୋଟ୍ ଦିଅନ୍ତି ତାହା ପ୍ରତି ମଧ୍ୟ ଗାଳ୍ପିକାଙ୍କର ପ୍ରକାଶ ପାଇଛି ବେଦନାକ୍ତ ବିଦ୍ରୂପ । 'ଚକାଜହ୍ନ, ଅଦିତି ଓ ଅବିର' ଗଳ୍ପରେ ନାରୀ ମନର ଅଦିନିଆ ବିଷାଦର କଳାଛାଇର ଚିତ୍ରଣ ସହିତ, ନିଜର ଦାମିକା ପରିଚୟକୁ ଛାଡ଼ି ନିଚ୍ଛୁଟା ମଣିଷଟିଏ ହେବାପାଇଁ ଅଛି ଆହ୍ୱାନ । 'ସୀତା ନବମୀ, ସାୟନ୍ତନୀ ଓ ସଂସ୍କୃତି ସୁରକ୍ଷା ମଞ୍ଚ' ଗଳ୍ପରେ ସଂସ୍କୃତି ସୁରକ୍ଷା ନାମରେ ସ୍ୱେଚ୍ଛାଚାରିତା, ଯୁବମାନସିକତାରେ ଅହଂଭାବ ଓ ସ୍ୱାର୍ଥପରତା, ସମାଜରେ ଅସାମାଜିକଙ୍କ ଉପଦ୍ରବ, ନାରୀର ସାହସିକତା ଓ ସାହିତ୍ୟକୁ ସାହିତ୍ୟ ଭାବରେ ବିଚାର କରିଯିବାର ଚିନ୍ତା; 'ସ୍ମୃତିରୁ ପାଖୁଡ଼ାଏ' ଗଳ୍ପରେ ସ୍ମୃତି ଓ ସାନ୍ତ୍ୱନା, ସକଳ ଦୁଃଖ ଭିତରେ ନୀଳଚକ୍ର ଓ ପତିତପାବନ ବାନା ଦର୍ଶନରେ ସାନ୍ତ୍ୱନା; 'ଦୀପ-ରୁଖା' ଗଳ୍ପରେ ଐତିହ୍ୟର ସ୍ୱାକ୍ଷର ଓ ନାରୀ ଜୀବନରେ

ପରଂପରାବୋଧର ମନ୍ବୟ ଉଚ୍ଚାରଣ; 'ଶୂନ୍ୟବାସୀ' ଗଳ୍ପରେ ଅଭିଜାତ ମଣିଷମାନଙ୍କର ବୌଦ୍ଧିକସ୍ତରରେ ଭିନ୍ନତା, ଭାବଜଗତରେ ଏକତ୍ୱ; 'ସମୁଦ୍ର ଦର୍ଶନ' ଗଳ୍ପରେ ଅମୃତ ଉପଲବ୍ଧି ପାଇଁ ଆକାଙ୍କ୍ଷା, ସମୁଦ୍ର ଦର୍ଶନ ମଧ୍ୟଦେଇ ନାନା ଭାବଭାବନା ଓ ଆଶ୍ୱସ୍ତିର ସ୍ୱର; 'ଏକଲାପଣ' ଗଳ୍ପରେ ପ୍ରକୃତ ମଣିଷ ଖୋଜିବାର ଉତ୍କଣ୍ଠା, ପ୍ରାଣୋଚ୍ଛଳ ମଣିଷ ଓ ଜହ୍ନରାତି ଭଳି ଜୀବନ ଖୋଜିବାର ବାସନା; 'ପ୍ରିଡେଟର' ଗଳ୍ପରେ ଭାଗ୍ୟରୂପୀ ପ୍ରିଡେଟର୍‌ର ମଣିଷ ଜୀବନରେ ପ୍ରଭାବ; 'ମୁଁ ସରଦେଇ, ମୋ ଚଟିଘର' ଗଳ୍ପରେ ସୁରେନ୍ଦ୍ର ମହାନ୍ତିଙ୍କର ନୀଳଶୈଳର ସରଦେଈ ଚରିତ୍ର ମାଧ୍ୟମରେ ଶ୍ରୀକ୍ଷେତ୍ର ଓ ଜଗନ୍ନାଥ ଚେତନା, ଦିବ୍ୟ ବିଭୁବୋଧରେ ଜୀବନର ସକଳ ଦୁଃଖ ଓ ଯନ୍ତ୍ରଣାକୁ ଭୁଲିଯିବାର ସଂକଳ୍ପ; 'ଈର୍ଷାଗତ୍ରୁ ଏବଂ ଭାବମୟୀ ବୈଦେହୀ' ଗଳ୍ପରେ ସାମାଜିକ ଅର୍ଗଳି ଭିତରେ ପ୍ରେମର ସ୍ୱୀକୃତି, ପ୍ରେମର ପ୍ରତିଶ୍ରୁତିକୁ ରକ୍ଷା କରିବା ପାଇଁ ସ୍ୱାମୀର ସଂସାରକୁ ପତ୍ନୀର ବିଶ୍ୱାସ ଓ ନିଷ୍ଠାରେ ଘର ସଜାଇବାରେ ତା'ର ଭୂମିକା; 'ଅପେକ୍ଷାରେ' ଗଳ୍ପରେ ମନ ଓ ଈଶ୍ୱରଙ୍କୁ ଏକ ଆଶ୍ୱାସନା ଭାବରେ ବିଚାର, ପ୍ରେମର ମହାନତା; 'ବିଡ଼ମ୍ବିତ ପୃଥିବୀର କଥା' ଗଳ୍ପରେ ଜଣୈକା ଅସହାୟା ବୃଦ୍ଧାର ଜୀବନର କାହାଣୀରେ ମଦ୍ୟପ ପୁରୁଷ ପ୍ରତି ତୀବ୍ର କଟାକ୍ଷ, ଆଦି ବେଶ୍ ଚମତ୍କାର ଭାବରେ ବ୍ୟଞ୍ଜିତ ଓ ରୂପାୟିତ ।

ସମଗ୍ର ଗଳ୍ପରେ ଗାଳ୍ପିକା ଯେପରି ଭାବରେ ମଣିଷର ଉତ୍ତରଣ ଓ ମଣିଷପଣିଆର ବିକାଶ ପାଇଁ ପ୍ରେରଣା ଦେଇଛନ୍ତି ତାହା ତାଙ୍କର ସାମାଜିକ ଦାୟବଦ୍ଧତାର ପରିଚୟ ଦିଏ । ଗଳ୍ପଗୁଡ଼ିକର ଚିତ୍ର ଓ ଚିତ୍ରାୟନ, ଭାବ ଓ ଭାବନା, ସ୍ମୃତି ଓ ସାନ୍ତ୍ୱନା, ସମ୍ବେଦନଶୀଳ ମାନସିକତା ଓ ସହୃଦୟତା ଉପରେ ଯେପରି ଗାଳ୍ପିକା ଗୁରୁତ୍ୱ ଦେଇଛନ୍ତି ତାହା ବାସ୍ତବିକ ଗଭୀର ହୃଦୟସ୍ପର୍ଶୀ । ମୁଁ ଡକ୍ଟର ସ୍ୱାରାଜ୍ୟଲକ୍ଷ୍ମୀଙ୍କ ଏହି ନୂତନ ଗଳ୍ପ ପୁସ୍ତକ ପାଇଁ ପ୍ରାଣର ଅଭିନନ୍ଦନ ଜଣାଉଛି । ତାଙ୍କର ପୂର୍ବରୁ ପ୍ରକାଶିତ ଓ ବହୁଚର୍ଚ୍ଚିତ ଗଳ୍ପ ପୁସ୍ତକ ପରି ଏହା ମଧ୍ୟ ପାଠକ ଓ ସମାଲୋଚକମାନଙ୍କୁ ଆକର୍ଷଣ କରିବ ।

**ବୈଷ୍ଣବଚରଣ ସାମଲ**
ଅବସରପ୍ରାପ୍ତ ପ୍ରଫେସର, ବିଶ୍ୱଭାରତୀ
ଶାନ୍ତିନିକେତନ

# ସୂଚୀ





# ମାମା ପାଇଁ ଗପଟିଏ

କୁଆଁର ପୁନେଇ।

ଆଜି ମାମାର ଜନ୍ମଦିନ। ମେଘର ଅଗଣାରେ ପରିପୂର୍ଣ୍ଣ ଜହ୍ନ ଉଭା ହେଇ ହସୁଛି ଖିଲିଖିଲି - ମାମା ଭଳି - ଉଚ୍ଛ୍ୱସିତ, ଉଚ୍ଛୁଳା। ନ' ବର୍ଷ ତଳେ ଏମିତିକା ଗୋଟାଏ ଦିନରେ ମନେଇ ମାମା ଓହ୍ଲେଇ ଆସିଥିଲା ଆମ ଅଗଣାକୁ ବୋଝେ ଗୁଣରେ ଖୁଣଟିକେ ନେଇ। ରୁପାଜହ୍ନ ମୁହଁରେ କଳା ଟିକେ ଭଳି ତା'ର ଓଠ ଟିକେ ଅପୂର୍ଣ୍ଣ ଥିଲା। ହେଲେ ସମସ୍ତଙ୍କ ସନ୍ଦେହକୁ ପଛକୁ ଠେଲି ମାମା ଅନର୍ଗଳ କଥା କହି ଚମତ୍କୃତ କରିଦେଲା ସମସ୍ତଙ୍କୁ। ଖାଲି କଥାତ କହିଲାନି, ସାତ ଆଠ ବର୍ଷବେଳୁ ତା' କୁନିକୁନି ହାତରେ ଧରିଥିବା କଲମ ଗୀତ ଗାଇଲା ମଧ। ସେଦିନ ସତରେ ମୁଁ ଚକିତ ହେଇ ଯାଇଥିଲି। ଆଉ ଏମିତିକା ଗୋଟାଏ ଜନ୍ମତିଥିରେ ତାକୁ କଲ୍ୟାଣ କରିଥିଲି ମନଭରି- "ତୋ କଲମ ଅଜସ୍ରସ୍ରାବୀ ହେଉ।" ସେ କିନ୍ତୁ ସବୁଥର ଭଳି ଉପହାରଟିଏ ଚାହିଁଥିଲା। ଯେମିତି ସେ ସମସ୍ତଙ୍କଠାରୁ ଦାବିକରେ ଟଫି, ଚକୋଲେଟ୍, ଖେଳଣା ନଚେତ ଫ୍ରକ୍ - ତା'ର ଇଚ୍ଛା ଅନ୍ୟ ସାଥିମାନଙ୍କ ପାଖରେ ଯାହା ନାହିଁ, ସେଇ ଗୋଟାକ ତା'ର ଦରକାର। ସେ ଅଲଗା ସମସ୍ତଙ୍କଠୁ। ମନେଇଟିଏ।

ଏଥର ଅନେକ ଦିନପରେ ମାମାକୁ ଦେଖିଲି। ଝଞ୍ଜାଳ ଭିତରେ ମୁଁ ଗାଁକୁ ଯାଇପାରିନଥିଲି। କଟକ ବି ଯାଇନଥିଲି। ବାରମ୍ବାର ଫୋନ୍ କରୁଥିଲା ମାମା, ମୁଁ କାହିଁକି ଯାଉନି। ସେ ମୋ ସାଙ୍ଗରେ ଆସନ୍ତା। ମୋ ପାଖେ ରହନ୍ତା କିଛିଦିନ। ଖେଳନ୍ତା, ବୁଲନ୍ତା, ଗପ ଶୁଣନ୍ତା ରାତିରାତି। ଆକଟିବାକୁ ତ ବାପା ବୋଉ କେହି ନଥାନ୍ତେ- "କେତେ ମଜା ହୁଅନ୍ତା ଜାଣିଛୁ ଦେଠେଇ। ମୁଁ ନା କେତେଗୁଡ଼ାଏ ପୋଏମ୍ ଲେଖିଛି ଇଂଲିଶ୍ ଆଉ ଓଡ଼ିଆରେ ବି। ତୁ ଆସିଲେ ସିନା ଦେଖେଇବି।" ମାମା କହୁଥିଲା, ମୁଁ କିନ୍ତୁ ଯାଇପାରୁନଥିଲି କୌଣସି କୌଣସି କାର୍ଯ୍ୟବ୍ୟସ୍ତତା ଯୋଗୁଁ।

ସବୁଥର ଭଳି ମହାଷ୍ଟମୀ ପୂଜା ପାଇଁ ଗାଁକୁ ଯାଉଥିଲି ଏଥର । ମାମା ଆସିଥିଲା ତା' ବାପା ସାଙ୍ଗେ । ଦେଖୁଦେଖୁ ଫାଟିପଡ଼ିଲା ଅଭିମାନରେ । ଗୋଡ଼ଛୁଇଁ ପ୍ରଣାମ କରିବା ଆଗରୁ ହିଁ ମୁହଁ ଫୁଲେଇ କହିଲା- "ଦଦେଇଙ୍କୁ କହିଲୁ ସେ ଆଗ ଚାକିରି ଛାଡ଼ନ୍ତୁ ନହେଲେ ତୁ ଚାକିରି ଛାଡ଼- କି ଗୋଟାଏ ଚାକିରି କରିଛ ଯେ ମୁଁ ଟିକିଏ ଭୁବନେଶ୍ୱର ଯାଇ ବୁଲିପାରୁନି ।"

ତାକୁ କୋଳେଇ ନେଲି ଆଦରରେ ।

ଗେଲ କରୁକରୁ କହିଲି, "ଆମର ଚାକିରି ଛାଡ଼ିବା ଦରକାର ନାହିଁ । ତୁ ତ ଆଉ ବର୍ଷ ଦି'ଟାରେ ବଡ଼ ହୋଇଯିବୁ, ନିଜେ ନିଜେ ଆସିପାରିବୁ, ଏକୁଟିଆ ରହିପାରିବୁ । ଖାଇପାରିବୁ ନିଜ ହାତରେ । ଆଉକିଛି ତ ଅସୁବିଧା ରହିବନି । ବ୍ୟସ୍ତ କାହିଁକି ହଉଛୁ ଯେ... ।" ସେ କିନ୍ତୁ ମାନିବାକୁ ପ୍ରସ୍ତୁତ ନ ଥିଲା । ସାଙ୍ଗେସାଙ୍ଗେ ଆପଣାପକ୍ଷ ସମର୍ଥନ କରି କହିଲା- "ମୁଁ ତ ବଡ଼ ହେଇଗଲିଣି । ମୁଁ ନିଜେ ଗାଧେଇ ପାରୁଛି, ଖାଇ ପାରୁଛି ନିଜ କାମ ନିଜେ କରୁଛି- ଏକା ରହିଲେ ବି ଡରୁନି । ତା' ଛଡ଼ା ମୁଁ ତୋରି ଭଳିଆ ଲେଖିପାରୁଛି ବି । ମୋତେ ସାଙ୍ଗରେ ନେଇ ଯା' ଦେଠେଇ । କେତେ ପୋଏମ୍ ଶୁଣେଇବି ତୋତେ । ଜାଣିଛୁ ନା କେତେ ପ୍ଲଟ ମୁଁ ଚିନ୍ତା କରି ରଖିଛି । ଭାରି ମଜା ହେବ । ଏଣ୍ଡିଂ ଗୁଡ଼ାକ ତୁ ଶୁଣିଲେ ସିନା କେମିତି ଲାଗୁଛି କହିବୁ... । ଦେଠେଇ ତୁ ମୋତେ ସାଙ୍ଗରେ ନେବୁ ନା..... ।" ମାମା ମୋତେ ଗୁଡ଼େଇ ଧରିଥିଲା, ଛାଡୁ ନ ଥିଲା । ସତେଯେମିତି ମୁଁ ଖସି ଚାଲିଯିବି ।

ସବୁବେଳେ ସେ ଏମିତି କରେ । ସବୁତକ କଥା ଏକାଥରକେ କହିଯିବ ଠିକ୍ ତା' ସାନ ପିଇସୀ ଭଳି । ତେଣେ ମହାଷ୍ଟମୀ ପୂଜା ପାଇଁ ବେଳ ଗଡ଼ିଯାଉଥିଲା । ସମସ୍ତେ ତରତର ହେଉଥିଲେ ମନ୍ଦିର ଯିବା ପାଇଁ । ଆହୁରି ଅନେକ କାମ ଅଛି କରିବାକୁ... ।

ମାମାକୁ ଘେରି ସମସ୍ତେ ବସିଥିଲେ । ମୁଁ ଆଉ ମୋର ମଝିଆଣୀ ନଣନ୍ଦ ଲତା, ତା' ପୁଅଝିଅ ବୁଲୁ ଟୁଲୁ ସମସ୍ତେ ଖଟ ଉପରେ ବସି ତା' କଥା ଶୁଣୁଥିଲୁ । ତକିଆ ଉପରେ ମୁଣ୍ଡ ରଖି ମାମା ତା' ନିଜସ୍ୱ ଠାଣିରେ ଗପୁଥିଲା । ଉତୁରି ଆସୁଥିବା ଗୋଟାଏ ଛନଛନିଆ ସବୁଜ ଅଙ୍କୁର ଏବଂ ତା'ର ସୃଜନଶୀଳତାର ପ୍ରଗଲ୍ଭ କାହାଣୀ । ହୁଏତ ଅଡୁଆ ଲାଗୁଥିବ ଅନ୍ୟମାନଙ୍କୁ । ମଝିଆଣୀ ଭାବୁଥିବ ଆସୁଆସୁ ଭାଉଜ ଗେଲବସରି ଝିଆରୀ ସାଙ୍ଗେ ଗପ ଜମେଇ ଦେଲା । କିମ୍ବା ଭାବୁଥିବ, ଏଡ଼େଟିକେ ପିଲାର କଥାକୁ ଏମିତି ଗୁରୁତ୍ୱ ଦେଇ ସମୟ ନଷ୍ଟକରୁଛି କାହିଁକି କେଜାଣି ?

ମୁଁ କିନ୍ତୁ ମାମା କଥାକୁ ଆଡ଼େଇ ପାରୁନଥିଲି । ତା' ଉତୁରା ମନର କଅଁଳ ସ୍ୱପ୍ନକୁ ହେୟ ଜ୍ଞାନ କରିପାରୁନଥିଲି । ସେ କହୁଥିଲା ତା' ପିଲାଳିଆ ଢଙ୍ଗରେ ଅଥଚ ତା' କଥା ସବୁ ହାଲୁକା ଫାଙ୍କା ନଥିଲା । ମୁଁ ତା' ଭିତରେ ଗଭୀରତାର ଇଙ୍ଗିତ ଖୋଜି ପାଉଥିଲି ଏବଂ ଭାବୁଥିଲି - ମାମା କ'ଣ ଏ ଭିତରେ ଏତେ ବଡ଼ ହୋଇଯାଇଛି ଏସବୁ ଓଜନିଆ କଥା ଭାବିବାକୁ । ମନ ଗ୍ରହଣ କରି ମଧ୍ୟ କରିପାରୁ ନଥିଲା ।

ଅବଶ୍ୟ ବହୁପୂର୍ବରୁ କୁନିଝିଅ ମାମାର ଗପ ଶୁଣିବାକୁ ଅସରନ୍ତି ବିଳାସ ଭିତରେ ମୁଁ ଯେଉଁ ଜିଜ୍ଞାସୁ ମନର ପରିଚୟ ପାଇଥିଲି, ଆଜି ନ'ବର୍ଷର କଳିକା ଭିତରର ସେଇ ସ୍ୱପ୍ନବିଳାସ, କଲମ ମୁନରେ ରୂପ ପାଉଛି, କିଛି କମ୍ କଥା ନୁହେଁ। ଆତ୍ମମଗ୍ନ ହେଇ ଯାଉଥିଲା ସେ କହିଲାବେଳେ, ଲେଖିଲାବେଳେ ମଧ। ମୁଁ ଚକିତ ହେଇଯାଉଥିଲି। କ୍ରମଶଃ ସେ ମୋତେ ମୁଗ୍ଧ କରୁଥିଲା। ମୁଁ ସତେକି ଆତ୍ମବିସ୍ମୃତ ହେଇ ଫେରିଯାଉଥିଲି ମୋ ଶୈଶବକୁ।

ସେଦିନ ବି ମନ ମୋର ଅନ୍ତରଙ୍ଗ ଶ୍ରୋତାଟିଏ ଖୋଜୁଥିଲା। ଆଉ ଆଜି ପର୍ଯ୍ୟନ୍ତ ସେଇ ଖୋଜିବାର ଶେଷ ହୋଇନି। ଖୋଜୁଛି ସହୃଦୟ ଶ୍ରୋତାଟିଏ... ତା' ପାଖରୁ କିଛି ଆଶ୍ୱାସନା ଏବଂ ତା' ଦେଖା ସ୍ୱପ୍ନକୁ ଭଲପାଇବାର ପାଲଟା ଦରଦ। ପ୍ରକାରାନ୍ତରେ ଟିକିଏ ଉତ୍ସାହ। ଏତିକିର ଅଭାବରେ କି ଯେ ଯନ୍ତ୍ରଣା!

ମାମା ଆଜି ସେଇତକ ଚାହୁଁଛି। ଚାହୁଁଛି ବୋଲି ବୁଝେଇପାରୁନି। ମୁଁ କିନ୍ତୁ ଠିକ୍ ଜାଣିଛି। ଜାଣୁଛି ତା' ଅଙ୍କୁରମୁଖୀ ସୃଜନୀସତ୍ତା ଗୋଟାଏ ଆନ୍ତରିକ ସାଉଁଳାର ଆଶ୍ରୟ ଖୋଜୁଛି। ପାଇଲେ ହିଁ ମାଡ଼ିଯିବ ନିର୍ଭୟରେ- ଲଟେଇଯିବ ବଣୁଆ ଲତା ଭଳି।

ମୁଁ ତା' ପାଇଁ ସେଇ ଅନ୍ତରଙ୍ଗ ଆଶ୍ରୟଟିଏ ହେଇଯିବାକୁ ଚାହିଁଲି। ସେ ତା'ର ସଦ୍ୟ ଲେଖିଥିବା ଇଂରାଜୀ କବିତାଟିଏ ପଢ଼ି ଶୁଣେଇଲା। ଶୁଣାଉ ଶୁଣାଉ କେତେବେଳେ ସେ ବର୍ଷାରେ ଗାଧୋଇ ପଡୁଥିଲା ତ କେତେବେଳେ ପ୍ରଜାପତି ହେଇ ଉଡ଼ିଯାଉଥିଲା। ଏଇ ବର୍ଷାଧୁଆ ଆକାଶ, ରଙ୍ଗବେରଙ୍ଗୀ ଫୁଲ, ଚିତ୍ରିତ ପ୍ରଜାପତିକୁ ସୃଷ୍ଟି କରିଥିବା ଈଶ୍ୱରଙ୍କୁ ଆଶ୍ଚର୍ଯ୍ୟ ଆଖିରେ ଚାହୁଁଥିଲା। ଏ ଦେଶକୁ, ଏ ମାଟିକୁ, ଏଇ ମାଟିର ମଣିଷମାନଙ୍କ ପ୍ରତି ତା'ର ପ୍ରଗାଢ଼ ଭଲପାଇବା ଶବ୍ଦ ହେଇ ଫୁଟି ଉଠୁଥିଲେ କବିତାର ପଂକ୍ତିମାନଙ୍କରେ। ମୁଁ ପ୍ରଲୁବ୍ଧ ହୋଇ ଉଠୁଥିଲି କ୍ରମଶଃ। ହଠାତ୍ ସେ କଥାର ମୋଡ଼ ବଦଳେଇ କହିଲା "ଦେଠେଇ, ମୋ ପାଇଁ ଗୋଟାଏ ଡ୍ରାମା ଲେଖିଦବୁ ! ମୁଁ ପ୍ଲଟ୍ ଠିକ କରିଛି। ଭାରି ମନ ହେଉଛି। ବାପାଙ୍କୁ କହିବି ଆସନ୍ତା ପୂଜାରେ ଷ୍ଟେଜ୍ କରିବେ।" ତା' ବାପା ଜଣେ ଭଲ ନିର୍ଦ୍ଦେଶକ। ମାମା ତା' ବାପାକୁ ମଧ ଲକ୍ଷ୍ୟ କରୁଛି- ତେଣୁ ବାପା ଭଳି ହୋଇଯିବାକୁ ବି ମନ ତା'ର। ମନେମନେ ହସିଲି ଏବଂ କହିଲି- "ମୁଁ କ'ଣ ଡ୍ରାମା ଲେଖିପାରିବି କି ମା', କହିବୁ ଯଦି ଗପଟିଏ ଲେଖିଦେବି....... ।"

ସେ କିନ୍ତୁ ସାଙ୍ଗେ ସାଙ୍ଗେ କହିଲା - "ଏତେବଡ଼ ଦେଠେଇ ହୋଇଛୁ, ଏତେ ଗପ ଲେଖୁଛୁ, ମୋ ପାଇଁ ଡ୍ରାମାଟିଏ ଲେଖି ଦେଇପାରିବୁନି ? ବାପାଙ୍କୁ କି ବୋଉକୁ କହିଲେ ତ ଶୁଣନ୍ତିନି। ତାଙ୍କର ବେଳ ନାହିଁ ମୋ କଥା ଶୁଣିବାକୁ- ଖାଲି କଲେଜ କାମ, ଘର କାମ। ଓଲଟି ରାଗୁଛନ୍ତି ପାଠ ନ ପଢ଼ି ସବୁବେଳେ ବାଜେକଥାରେ ସମୟ ନଷ୍ଟ କରୁଛି କାହିଁକି ବୋଲି। କହିଲୁ ଦେଠେଇ ଷ୍ଟୋରି କି ପୋଏମ୍ ଲେଖିବା କ'ଣ ଖରାପ କଥା ? ଭୁଲ ? ?" ମୁହଁରେ ହତାଶର ମେଘ ଛାଇଯାଉଥିଲା।

ମୋର ଇଚ୍ଛା ହେଲାନି ତା' ମନମରା ମୁହଁ ଦେଖିବାକୁ । ତଥାପି କହିଲି- "ବୋଉ କ'ଣ ମିଛ କହୁଛି । ପାଠପଢ଼ା ବେଳରେ ଏସବୁ ଭାବିଲେ ପରୀକ୍ଷାରେ କେମିତି ଭଲ କରିବୁ ? ସେଇଥିପାଇଁ ଏଥର କ୍ଲାସ୍‌ରେ ତୋର ପୋଜିସନ୍ କମିଗଲା ନା ?"

ବ୍ୟସ୍ତ ହେଇ ସେ କହିଲା- "ଠିକ୍ କଥା ଯେ, ହେଲେ ମୁଁ କ'ଣ କରିବି । ମୋତେ ତ ପୋଏମ୍ ଲେଖିବାକୁ ମନ ହେଲା । କି ଚମତ୍କାର ବର୍ଷା ହେଉଥିଲା । ମନେହେଲା ବରଫ ସବୁ ଗୁଣ୍ଡଗୁଣ୍ଡ ହେଇ ଝଡୁଛି - ଝରକା ପାଖରେ ବସିଥିଲି ତ... ।"

"ନା, ଏଇଟା ମୋଟେ ଭଲକଥା ନୁହେଁ । ପାଠପଢ଼ି ବଡ଼ ହେଲେ ସିନା ସମସ୍ତେ ଭଲ ପାଇବେ । ଆଉ ଏମିତି ପାଗଳାମି କରିବୁନି ।" -କହିଲି ତାକୁ ।

"ତା'ହେଲେ ଆଜି ମୋ ପ୍ଲଟ୍ ଟା ଶୁଣିବୁନି ?" -ପଚାରିଲା ମାମା ।

ତା' ମନ ଭାଙ୍ଗିବାକୁ ଇଚ୍ଛା ହେଲାନି । କହିଲି- "ଶୀଘ୍ର ଶୀଘ୍ର କହିଦେ ସମରାଇଜ୍ କରି । ଆସନ୍ତା ସପ୍ତାହରେ ତୋ' ଜନ୍ମଦିନକୁ....." ମୋ' ପାଟିରୁ କଥା ଛଡ଼େଇ ନେଇ କହିଲା- "ଗିଫ୍ଟ ଦେବୁ ? କ'ଣ ଦେବୁ ? ?" ମୋତେ ଦିଥର ଝାଙ୍କି ନେଇ କହିଲା- "କହ କ'ଣ ଦେବୁ ? ଭଲ ଗିଫ୍ଟଟିଏ ଦେବୁ, ଯେମିତି ଲିସାଅପା ହେରିକାଙ୍କ ପାଖରେ ନଥିବ ।"

"ଗପଟିଏ.... ତୋ ପାଇଁ । ଚଳିବ ନା ?"

"ହଉ ! ଠିକ୍ ଅଛି ।" ଅବଶ୍ୟ ଖୁସି ହେଇଗଲା । କହିଲା- ଲିସା ଅପାକୁ ବି କେହି ଗପ ଲେଖି ଦେଇ ନଥିବେ ! ଚଳିବ । ତା'ପରେ ପେଟେଇ ପଡ଼ିଲା ଖଟ ଉପରେ ସ୍ୱାଭାବିକ ଢଙ୍ଗରେ । ବାଁ ହାତଟାକୁ ଗାଲରେ ଢିରା ଦେଇ କହିଚାଲିଲା ତା' ଭାବିଥିବା ପ୍ଲଟ୍ । ମଝିରେମଝିରେ କଥାରେ ଅସଙ୍ଗତି ଆସିଲେ ଲିଭେଇ ଦେଉଥିଲା ତକିଆ ଉପରେ... ସତେ ଯେମିତି ସେ ଲେଖୁଛି... ଲେଖି ଚାଲିଛି... । ସେ କହି ଚାଲିଥିଲା- "ମୋ ପ୍ଲଟ୍‌ର ହିରୋ ହେଲା ବିଶ୍ୱଜିତ.... ଗରୀବ ଗାଉଁଲି ଘର ପୁଅ । ବାପା ଜଣେ ଟିଚର । ଭଲ ପଢ଼େ । ପୋଏମ୍ ଲେଖେ..." ମଝିରେ ବୁଲୁଭାଇନା ଅଟକେଇଲା ଭଳି କହିଲା- "ଗାଉଁଲି ପୁଅଟାର ନାଁ ବିଶ୍ୱଜିତ, ଭଲ ଶୁଭୁନି ମଦନା ରଖ ଭଲ ଶୁଭିବ- ନହେଲେ ହରିଆ... ।" ଚିଡ଼ିଉଠିଲା ମାମା- "ମଝିରୁ କାହିଁକି ଡିଷ୍ଟର୍ବ କରୁଛୁ । ମୋ' ଇଚ୍ଛା ଯାହା ରଖିବି । ମୋ' ସାଙ୍ଗ ନା ବିଶ୍ୱଜିତ୍ । ମୋତେ ଭଲଲାଗେ ।" ପୁଣି ଆରମ୍ଭ କଲା କହିବାକୁ- ହଁ, ତା'ର ଇଚ୍ଛା ବଡ଼ ହେଲେ ଟିଚର୍‌ଟିଏ ହେବ - ସ୍କୁଲଟିଏ ଗଢ଼ିବ । ଭଲ ଭଲ ଟିଚର ରଖିବ । ସେମାନେ ଭଲ ପାଠ ପଢ଼େଇବେ- ସେ ତ ଖୁବ୍ ବଡ଼ ହୋଇ ଯାଇଥିବ ଏବଂ ବହୁତ ପୋଏମ୍, ଷ୍ଟୋରୀ, ଡ୍ରାମା ଲେଖିଥିବ- ପୋଏଟ୍ ଭାବେ ବହୁତ ନାଁ ତା'ର ହେଇଯାଇଥିବ - ବାପା ମା' ବୁଢ଼ାବୁଢ଼ୀ ହୋଇ ମରିଯିବେ - ବହୁତ ପୁରସ୍କାର ପାଇବ - ଶେଷରେ ସେ ଏକା ହୋଇଯିବ । ଅନ୍ୟମାନେ

ତାକୁ ସହରକୁ ଯିବା ପାଇଁ ଡାକିବେ – ସେ ଯିବନି । ଖାଲି ଲେଖିବ ଆଉ ଲେଖିବ – ନଖାଇ ନପିଇ । ରାତିରେ ବି ଶୋଇପାରିବିନି ଭାବିଭାବି । ଏମିତି ଅନେକ ଦିନ ଗଲା । ଦିନେ ସକାଳୁ ତା'ର ଚିଟର ଫ୍ରେଣ୍ଡମାନେ ଆସି ଦେଖିଲେ ଯେ, ଲଣ୍ଠନରୁ ତେଲ ସରିଯାଇ ଲିଭିଯାଇଛି.... ଖାତା କଲମ ଖୋଲା ହୋଇ ପଡ଼ିଛି ଟେବୁଲ ଉପରେ... । ଆଖିବୁଜି ଶୋଇଯାଇଛି ବିଶ୍ୱଜିତ.... ନିଃଶ୍ୱାସ ନାହିଁ ।" ଏକା ନିଃଶ୍ୱାସରେ କଥା ଶେଷ କରି ମୋ ମୁହଁକୁ ଚାହିଁଲା ମାମା ଓ କହିଲା, "ଭଲ ଲାଗିବନି ଦେଠେଇ ଏଣ୍ଡିଂଟା ?"

ମୁଁ କିଛି କହିବା ପୂର୍ବରୁ ତା' ବୁଲୁ ଭାଇନା କହିଲା– "ମୋତେ ଭଲ ହେବନି । ପୋଏଟ୍‌କୁ କିଏ ମାରେ । ମରିଗଲେ ତା' ଲେଖା କେହି ଆଉ ପଢ଼ିପାରିବେନି । ଏମିତିକା ଏଣ୍ଡିଂ କେବଳ ସିନେମାରେ ହୁଏ ସତସତ ହୁଏନି...." ଚିଡ଼େଇଲା ଭଳି କହିଲା ବୁଲୁ ମଜା ଦେଖିବାକୁ ।

ମାମା କିଛି ସମୟ ଚାହିଁଲା, କିଛି ଭାବିପାରିଲାନି କ'ଣ କହିବ । ହଠାତ୍ ବିରକ୍ତ ହେଇଗଲା । ଯେମିତି ଖେଳରେ ହାରିଗଲେ ରାଗିଯାଏ, ସେମିତି ରାଗିଗଲା- "ନା, ସେ ମରିବ.... ନିଶ୍ଚେ ! ମୁଁ ଭାବିଛି ଯେମିତିହେଲେ ସେ ମରିବ.... ମରିବ ନା ଦେଠେଇ ?" ମୋ ମୁହଁକୁ ପୁଣି ଚାହିଁଲା ।

ଏତେବେଳଯାଏଁ ମୁଁ ମୋ ଭିତରେ ହଜି ଯାଇଥିଲି । ମାମାର ପ୍ରଶ୍ନରେ ସଚେତନ ହେଲି ଏବଂ କହିଲି- "ପୋଏଟ୍‌କୁ ନ ମାରିଲେ ବି ତ ହେବ.... ସମସ୍ତେ ଯେତେବେଳେ ଚାହୁଁଛନ୍ତି ସେ ବଞ୍ଚୁ, ଆଉ ଲେଖୁ ।"

ସେ କିଛି ମାନିବାକୁ ପ୍ରସ୍ତୁତ ନ ଥିଲା । କହିଲା – "କେମିତି ବଞ୍ଚିବ । ସେ ତ ନଖାଇ ନପିଇ ଲେଖୁଥିଲା । ନ ଖାଇ କ'ଣ ମଣିଷ ବଞ୍ଚେ ?"

"ତା' ହେଲେ ଠିକ୍ ଅଛି ପୋଏଟ୍ ମରୁ, ତୁ ଯେତେବେଳେ ଭାବିସାରିଛୁ ।" କହିଲି । ସେ କିନ୍ତୁ ଭାରି ଚାଲାକ୍ । କହିଲା- 'ମୋ ମନ ରଖିବାକୁ ତୁ କହୁଛୁ ।' ମୋ ଅଣ୍ଟାରେ ତା' ହାତ ଗୁଡ଼େଇ ମୋ ମୁହଁକୁ ଚାହିଁଥିଲା ହୁଏତ ମୁହଁରୁ ମୋର ପ୍ରତିକ୍ରିୟା ପଢ଼ିବାକୁ ପ୍ରୟାସ କରୁଥିଲା ।

"ଚମତ୍କାର ହୋଇଛି । ତୁ ଏଇ ପ୍ଲଟ୍ କେମିତି ଭାବିଲୁ ?" ଲଟାନାନୀ ପଚାରିଲା ତାକୁ । ମୁଁ ସେମିତି ଚାହିଁଥାଏ.... । ମୋ ମୁହଁକୁ ଟିକିଏ ଟାଣିଆଣିଲା ତା' ମୁହଁ ପାଖକୁ ଆଉ ଟିକିଏ ନିଚାଗଳାରେ କହିଲା ମୋ କାନରେ- "ଏଇଟା ତ ମୋ ଲାଇଫ୍‌ଷ୍ଟୋରୀ । ମୁଁ ଏମିତି ପୋଏଟ୍ ହେଇ ମରିବାକୁ ଚାହେଁ ।"

ସତକୁ ସତ ମୁଁ ଚମକିଗଲି । ଚମକି ଉଠିଲି ନିଜ ଭିତରେ । ଏଡ଼େ ଟିକେ ଛୁଆ ଏତେ ଗଭୀରକୁ ଗଲା କେମିତି ! ହେ ଭଗବାନ ! ଗୋଟାଏ ବିଚିତ୍ର ଅନୁଭବ ହେଲା ମୋ

ଭିତରେ । ଦେହ ଶୀତେଇ ଉଠିଲା । ଈଶ୍ୱରଙ୍କୁ ପ୍ରଣାମ କଲି ଏବଂ ମନେମନେ କଲ୍ୟାଣ କଲି ତାକୁ.... ।

କେତେବେଳୁ କେଜାଣି ଡା' ଦଦେଇ ଆସି ଠିଆ ହୋଇ ଦେଖୁଥିଲେ ଆମକୁ । ମୋ ଅନ୍ୟମନସ୍କତାକୁ ଲକ୍ଷ୍ୟ କରି କହିଲେ- "କ'ଣ ଆଜ୍ଞେବାଜ୍ଞେ ଗପୁଛି ଯେ ଟଗଲିଟା, ତମେ ତାକୁ ଶୁଣୁଛ ବସି । ମନ୍ଦିର ଯିବ ପରା ?"

"ମୋଟେ ବାଜେକଥା ନୁହେଁ । ତମେ ବି କହିଲ ଶେଷରେ... ତମେ କ'ଣ ଚାହୁଁନ ଯେ, ମୁଁ ଗୋଟାଏ ପୋଏଟ୍ ହୁଏ, ରାଇଟର ହୁଏ । ନାଁ କରେ ?" ମାମା ଆଖିରେ ଅଚାନକ ଅଭିମାନର ଲୁହ ଜକେଇ ଆସିଲା କହୁକହୁ । ସେମିତି ବାଷ୍ପରୁଦ୍ଧ କଣ୍ଠରେ ଦଦେଇଙ୍କ ଆଡ଼କୁ ଚାହିଁ ଜବାବ ଦେଲା ମାମା ଅଳିକଲା ଠାଣିରେ ।

"ତମେମାନେ କେହି ମୋତେ ବୁଝିପାରୁନ, ବାପାବୋଉ ତ ମୋଟେ ନୁହେଁ, ତମେ ବି ନୁହଁ । ଏକା ଦେଠେଇ ବୁଝିପାରୁଛି ଟିକିଏ । ଆଉ କେହି ନୁହେଁ ।" ଡା' ଆଖିରେ ଲୁହ ଜକେଇ ଚିକ୍‌ମିକ୍ କରୁଥିଲା । ଏଥର ଦଦେଇ ହସିହସି ତାକୁ କୋଳେଇ ନେଲେ । ଆଦର କରୁକରୁ କହିଲେ- "ଟଗଲି ଜଣେ ବଡ଼ ପୋଏଟ୍ ହେବ । ନାଁ କରିବ, ମୁଁ ଖୁସୀ ହେବିନି ତ କିଏ ହେବ ! ତୁ ଖାଲି ଟିକିଏ ମନେଇ ବୋଲି ନା... ।" ସେ ଫ୍ରକରେ ମୁହଁ ପୋଛୁଥିଲା ।

ମୁଁ କିନ୍ତୁ ଚକିତ ହୋଇଥିଲି ତା'ର ସ୍ୱପ୍ନ ଦେଖି । ମନେ ମନେ ଭାବିଲି.... ମୋ ଆଖିରୁ ତ ସ୍ୱପ୍ନସବୁ ହଜିଗଲାଣି । ଆଉ ଯାହା ବାକି ଅଛି ତୁ ନେଇଯା । ନେଇଯା ମୋ' ଆଖିର ସ୍ୱପ୍ନ । ମୋ ନିଦତକ ବି ନେଇଯା' । ସ୍ୱପ୍ନ ତୋର ସାକାର ହେଉ । ତୁ ବଡ଼ ହ' । ତୁ ନାଁ କର । ସ୍ୱପ୍ନ ମୋର ସାକାର ହୋଇଯିବ । ମୁଁ ସିନା ପାରିଲିନି, ତୁ ନିଶ୍ଚେ ପାରିବୁ । ନିଶ୍ଚେ ।

ତା'ପର ଦିନ ସକାଳେ ମୁଁ ଭୁବନେଶ୍ୱର ଫେରିଆସିଥିଲି । ଆସିଲାବେଳେ ମାମା ପୁଣିଥରେ ମୋତେ ମନେପକେଇ ଦେଇଥିଲା, ତା'ର ଜନ୍ମଦିନର ଉପହାର କଥା ।

ସଞ୍ଜ ନଇଁଲାଣି ଅନେକ ବେଳୁ । କୁଆଁର ପୁନେଇଁର ନୂଆ ଫ୍ରକ୍ ପିନ୍ଧି ମାମା ହୁଏତ ଚାନ୍ଦ ଦେଖୁଥିବ । ସାଙ୍ଗସାଥି ମେଳରେ ପୁଚି ଖେଳୁଥିବ କି ଗପ ଜମେଇଥିବ ଲିସା ଅପା ସାଥିରେ । ମୁଁ କିନ୍ତୁ ତାକୁ ଦେଇଥିବା ପ୍ରତିଶ୍ରୁତିକୁ ରକ୍ଷା କରିବାକୁ ଯାଇ ତାରି ଭାଷା ଆଉ ଭାବକୁ, ତାରି କଞ୍ଚାସ୍ୱପ୍ନକୁ କଲମରେ ରୂପ ଦେଉଥିଲି, ତାକୁ ହିଁ ଉପହାର ଦେବି ବୋଲି ।



# ଏ ଘର ଭବ୍ୟାର

ସେଦିନ କାହିଁକି ହଠାତ୍ ଅଞ୍ଜନର ଭବ୍ୟା କଥା ଖୁବ୍ ମନେ ପଡ଼ିଲା । ଏମିତି ଯେ କେବେ ଭବ୍ୟା ମନେପଡ଼େନି ତା ନୁହଁ, ମନେପଡ଼େ । ତେବେ ଆଜି ଟିକେ ଅଲଗା, ଅଧିକା କରି, ତା'ର ଚେତନ ଓ ଅବଚେତନକୁ ଗ୍ରାସ କଲାଭଳି । ଭବ୍ୟା ତା'ଝିଅ । ସେ କିନ୍ତୁ ଦେଖିନି ତାକୁ । କେମିତି ହୋଇଥିବ କେଜାଣି । ତା'ଭଳି ନା ଆଦ୍ୟା ଭଳି ? କେଜାଣି ! ଭାବିଲାବେଳେ କଳ୍ପନାରେ ଡେଣା ଲାଗେ । ଉଲ୍ଲସିତ କରେ ତାକୁ । ଯାହା ବି ହେଉ; ଯାହାଭଳି ବି ହେଉ, ସେ ନିଶ୍ଚୟ ସୁନ୍ଦର ହୋଇଥିବ । ଠିକ୍ ପରୀଟିଏ ଭଳି । ଆଉ ସ୍ୱଭାବ.....

ଅଞ୍ଜନ ବେଶି ଭାବିବାକୁ ଲାଗିଲା ଭବ୍ୟା କଥା । ଆଉ ଭବ୍ୟା ମନେପଡ଼ିଲେ ହିଁ ଆଦ୍ୟା ମନେପଡ଼େ । ପଡ଼ିବା ସ୍ୱାଭାବିକ । ଦିନେ ସେ ଯେ ତା'ର ଅତ୍ୟନ୍ତ ପ୍ରିୟତମା ଥିଲା, ଓ ଅଫିସ୍‌ର କାର୍ଯ୍ୟବ୍ୟସ୍ତତା ଭିତରେ ବି ଦିନରେ ଚାରି ପାଞ୍ଚଥର ତା' ପାଖକୁ ଫୋନ୍ ନକଲେ ମନ ଥୟ ଧରୁ ନଥିଲା, ଏକଥା ବି ସତ । ସେଥିପାଇଁ ଆଦ୍ୟା କମ୍ ବିରକ୍ତ ହୁଏନି ତା' ଉପରେ । ଏତେଥର ଫୋନ୍ କଲ ଆସିଲେ ମୋ ବନ୍ଧୁମାନେ କ'ଣ ଭାବିବେ କହିଲ ଦେଖି.... ଥଟ୍ଟା ମସ୍କରା କରିବେନି ?

ଗୋଟାଏ ରୋମାଣ୍ଟିକ୍ ହସରେ ସେ ତା'ର ଉତ୍ତର ଫେରାଉଥିଲା– ନହେଲେ ମୋ' ମନ ବୁଝୁନି ଯେ' । ଅନେକ ସମୟ... ବେଶ୍ ଲମ୍ବା... ଦୀର୍ଘ ଚାରିବର୍ଷରୁ ଅଧିକ । ଲମ୍ବା ନିଃଶ୍ୱାସ ଛାଡ଼ିଲା ଅଞ୍ଜନ ଏବଂ ଦୀର୍ଘଶ୍ୱାସର ଉଷ୍ଣତା ତା' ଭାବନାକୁ ଓଦା କରିପକେଇଲା ।

କହିବାକୁ ଗଲେ ମାତ୍ର ଚାରିଟା ବର୍ଷ; ହେଲେ କେତେ ଯୁଗ ଭଳି ଲାଗୁଛି । ଯେମିତି ଲକ୍ଷେ ଯୋଜନ ଦୂରରେ ଥିଲା ଭଳି । ଅଥଚ ଭାବିଲେ, ଆଦ୍ୟା ତ ଆଦ୍ୟା ତା'ର କେତେ ପାଖରେ । ଛାତି ଭିତରେ, ମନ ଭିତରେ ଅଛି । ସେଇ ଯେ, ତମସାକୁ ନେଇ ତା'ର ଆଉ ଆଦ୍ୟା ଭିତରେ କଥା କଟାକଟି ଆରମ୍ଭ ହୋଇ ତିକ୍ତତାରେ ପରିଣତ ହେଲା, ଏବଂ ଦିନେ

ସେଇଟା ଏତେ ତୀବ୍ର ଆଉ ଜଟିଳ ରୂପ ନେଲା ଯେ, ଆଦ୍ୟା ସିଧାସଳଖ ଯାଇ କୋର୍ଟରେ ଠିଆହେଲା ଡିଭୋର୍ସ ମାଗିବାକୁ । ସେ ତ କଳ୍ପନା ବି କରିନଥିଲା । ଆଦ୍ୟା ପୁଣି ଏମିତି ପାଗଳାମି କରିବ ! ତା' ଚେତନା ବରଫ ପାଲଟି ଯାଇଥିଲା ସେଦିନ ।

ଆଡ୍‌ଭୋକେଟ୍ ବହିଦାର ଅନେକ ବୁଝେଇଥିଲେ- କୋର୍ଟ ବାହାରେ ଆମେ ବୁଝାମଣା କରିନେବା । କେଶ୍ ଷ୍ଟ୍ରଙ୍ଗ ନୁହେଁ । ବେସ୍‌ଲେସ୍ । ଏମିତି ଭୁଲ ବୁଝାମଣା ଘଟେ ବେଳେବେଳେ । କିଛି ସେମିତି ବଡ଼କଥା ନୁହେଁ । ଥରେ ମନକୁ ସ୍ଥିର କରି ଭାବ, ଦେଖିବ, କଥାଟା କିଛି ହିଁ ନୁହେଁ । ସଜଡ଼ାଘର ଭାଙ୍ଗି ଦେବାଟା ଖୁବ୍ ସହଜ ଝିଅ, ଗଢ଼ିବା ସହଜ ନୁହେଁ । ପ୍ଲିଜ୍ କଥାଟାକୁ ଦି'ଥର ଭାବି ଦେଖ ।

ନା, ହେଲାନି । ବୁଝିବାକୁ ହିଁ ଥରେ ଚେଷ୍ଟା କଲାନି ଆଦ୍ୟା । ଆଡ୍‌ଭୋକେଟ୍ ବହିଦାର ପୁଣିଥରେ ମନେପକାଇ ଦେଇଥିଲେ ନିଷ୍ପତ୍ତି ନେବା ଆଗରୁ । ଟିକିଏ ସମୟ ନିଅ ଝିଅ, ସବୁକିଛି ସଜାଡ଼ି ଦେବ ସେ ।'

ଶୁଣି ନଥିଲା ଆଦ୍ୟା । ଅଞ୍ଜନ ବାଧ୍ୟହୋଇ ଡିଭୋର୍ସ ପେପରରେ ଦସ୍ତଖତ କରିଥିଲା । ଏବଂ ଆଦ୍ୟା ସବୁକିଛି ଛାଡ଼ିଛୁଡ଼ି ଦେଇ ସେପାରେସନ୍ ପେପର ସହ ଏକାବେଳକେ ଯାଇ ମଧୁଗଡ଼ରେ ଉଠିଲା । ସ୍ୱାଧୀନ ଭାବେ ରହିବ ବୋଲି । ସେତେବେଳକୁ ଭବ୍ୟା ପେଟରେ ଥିଲା । ତା' ଆସିବାର ପ୍ରସ୍ତୁତି ପର୍ବର ବହୁପୂର୍ବରୁ ଦୁହେଁ ଏହି ଭବନଗରର ଟୁ-ବେଡ୍‌ରୁମ ଫ୍ଲାଟ୍‌କୁ ଖୁବ୍ ସଉକିରେ କିଣି ସଜେଇଥିଲେ । ଫ୍ଲାଟ୍‌ଟା ଦୁହିଁଙ୍କର ଥିଲା । ଦୁହିଁଙ୍କ ସଞ୍ଚୟ ଏଥିରେ ବିନିଯୋଗ ହୋଇଥିଲା, ଦୁହିଁଙ୍କ ସ୍ୱପ୍ନର ରଙ୍ଗ ଲାଗିଥିଲା ଏ ଘରେ । ନେମ୍‌ପ୍ଲେଟ୍‌ରେ ଆଦ୍ୟା ନିଜେ ହିଁ ଲେଖିଥିଲା- 'ଏ ଘର ଆଦ୍ୟା ଆଉ ଅଞ୍ଜନଙ୍କର ।'

ଅଞ୍ଜନ ଚାହିଁଲା ସେଇ ହତଭାଗ୍ୟ ନେମ୍‌ପ୍ଲେଟ୍‌କୁ । ଏତେବର୍ଷ ପରେ ବି ସେ ଝୁଲୁଛି ସେମିତି ସ୍ଥିର ହୋଇ, ଧୂଳିମଳିର ଲେପ ଭିତରେ । ଏବେ ବି ଦୁହିଁଙ୍କ ନାଁ ଲୁଚିପାରିନି, କେବଳ କୁହୁଡ଼ିଆ ଦିଶୁଛି । ଭାବୁଭାବୁ ଅଞ୍ଜନ ଫ୍ଲାଟ୍‌ର କବାଟରେ ଚାବି ଲଗେଇ ଖୋଲିଲା ।

ଅନେକ ଦିନର ବନ୍ଦ ଦରଜା । କେମିତି ଗୋଟିଏ ବିକଳ ଚାପା ଶବ୍ଦ କରି ଖୋଲିଗଲା । ଘର ଭିତରକୁ ପାଦ ବଢ଼େଇବା ମାତ୍ରେ ସେ ଯେମିତି କାହାର ଚାପା ଯନ୍ତ୍ରଣାର ସ୍ୱର ଶୁଣିଲା । ଘର ତ ବନ୍ଦ ଥିଲା । ଅଞ୍ଜନ ଆଶ୍ଚର୍ଯ୍ୟ ହୋଇ ଭାବିଲା, ଏଇ ଶବ୍ଦଟା କୋଉଠୁ ଆସିଲା ଯେ ! କିଏ ଅଛି କି ଆଉ ! ତଟସ୍ଥ ହେଲା । ଭାବିଲା, କିଏ ଆଉ ଥିବ, ଶୂନ୍ୟ ଘରଟା – ମନରେ ତା'ର ଦାରୁଣ ଆଘାତ ଲାଗିଛି ନିଶ୍ଚୟ । ଏଇ ଯୋଉ ଚାପା ଆର୍ତ୍ତନାଦଟା ସେଇ ଆଘାତର ହିଁ ପ୍ରତିକ୍ରିୟା । ଅବହେଳାକୁ ବରଦାସ୍ତ କରିପାରିନି । ସେ ସେତିକିବେଳେ ଜାଣିଲା ଘରଟା କେବଳ ଚୂନ ସିମେଣ୍ଟର ନିର୍ଜୀବ ଆଶ୍ରା ନୁହେଁ, ତା'ର ପ୍ରାଣ ଅଛି, ଆବେଗ ଅଛି, ଅନୁଭବ ଅଛି । ତେଣୁ ହିଁ ବରଦାସ୍ତ କରିପାରିନି ।

କେମିତି କରିବ ଯେ! ସେ ନିଜେ କ'ଣ ବରଦାସ୍ତ କରିପାରିଛି ?

ଏଇଘର ଦିନେ ଷୋଡ଼ଶୀ ଭଳି ଉଛୁଳି ଉଠିଥିଲା ନିରଙ୍କୁଶ ପ୍ରଣୟରାଗରେ । ଇନ୍ଦ୍ରଧନୁର ବର୍ଣ୍ଣବିଭା ଆଦ୍ୟା ପଣତକାନିରେ ଝଲସି ଉଠୁଥିଲା । ଘର ଭିତରେ ଜହ୍ନ । ଅସ୍ତ ନଥିଲା ତା'ର । ସାରା ରାତି ହିଁ ଜହ୍ନରାତି । ଅଥଚ ଆଜି... ଆକାଶ ସାରା ଅନ୍ଧାର । ଅମାବାସ୍ୟାର ରାଜତ୍ୱ ।

ଅଞ୍ଜନ ଘର ଭିତରକୁ ପାଦ ବଢ଼େଇଲା । ଦୁଆର ଝରକା ବନ୍ଦ । କୁହୁଳିଆ ଅନ୍ଧାର ଭିତରେ ସତେ ଯେମିତି ମୂର୍ଚ୍ଛିତ ହୋଇ ପଡ଼ିଛି ଘରଟା । ଅନୁଭବ କରି ହେଉଛି ତା' ଦୀର୍ଘଶ୍ୱାସର ଉଷ୍ଣପଣକୁ । ପଶୁପଶୁ ଅଞ୍ଜନ ଛନ୍ଦି ହୋଇପଡ଼ିଲା ବୁଢ଼ିଆଣୀ ଜାଲ ଭିତରେ । ନିଜକୁ ମୁକୁଳେଇବାକୁ ଯାଇ ବାଁପଟ ସୁଇଚବୋର୍ଡ଼ ଆଡ଼କୁ ହାତ ବଢ଼େଇଲା ସୁଇଚ୍ ଅନ୍ କରିବାକୁ । ମନେପଡ଼ିଲା, ବିଦ୍ୟୁତ୍ ବିଭାଗ କନେକ୍ସନ କାଟିଦେଇଛନ୍ତି ଆପେ । ବ୍ୟବହାର ହେଉନଥିବା ଘର.... ସେ ଟ୍ୟାକ୍ସ ବି ତ ଭରିନି ଚାରିବର୍ଷ ହେଲା । ଟର୍ଚ୍ଚ ବି ନାହିଁ ତା' ହାତରେ । ଅବଶ୍ୟ ପଢ଼ା ଟେବୁଲ ଡ୍ର'ରେ ନିଶ୍ଚୟ ଥିବ । ହେଲେ ବ୍ୟାଟେରି ନ ଥିବ, ଛାଡ଼ । କ୍ୟାଣ୍ଡେଲଟିଏ ହେଲେ ବି ଚଳିଥା'ନ୍ତା । ଦିଆସିଲି ବି ତ ଦରକାର ତା'ପାଇଁ । ଆଉ ଗୋଟିଏ ଉପାୟ ହେଲା, ଡ୍ରଇଁରୁମର ଝରକାଟା ଖୋଲାଯାଇପାରେ । ନିଶ୍ଚୟ ଆଲୋକ ପଶିଆସିବ ଏବେ । ହେଲେ ଖୋଲିବାକୁ ତା'ର ଇଚ୍ଛା ହେଲାନି । ଏକେତ ସଞ୍ଜ ହୋଇ ଆସୁଛି । ଆଲୁଅ ଫିକା ପଡ଼ିଆସୁଥିବ । ଦ୍ୱିତୀୟରେ, ଝରକାଟା ବାହାରକୁ । ରାସ୍ତାରେ ଯିବାଆସିବା ଲୋକଙ୍କର ନଜର ପଡ଼ିବ । ଏତେଦିନ ପରେ ତାକୁ ଫ୍ଲାଟ୍ ଭିତରେ ଦେଖି, ହଜାରେ ପ୍ରଶ୍ନବାଣ ଛୁଟି ଆସିବ ତା' ଆଡ଼ିକି । ପ୍ରଶ୍ନର ଉତ୍ତର ସବୁ ତାଆ ପାଖରେ ଥିଲେ ବି, ସେ ଦେଇପାରିବନି । ଅଞ୍ଜନ ସେ ସବୁ ଅଡୁଆ ଭିତରେ ପଶିବାକୁ ଚାହିଁଲାନି । ବରଂ ରୋଷେଇ ଘର ଆଡ଼କୁ ପାଦ ବଢ଼େଇଲା । ଅନ୍ତତଃ କିଛି ସମୟ ପଶ୍ଚିମା ଆଲୁଅଟା ପାଇବ ବୋଲି ।

ଝରକାଟା ଟିକିଏ ଜାମ ଧରିଯାଇଥିଲା । ଟିକିଏ ପରିଶ୍ରମରେ ଅବଶ୍ୟ ଖୋଲିଗଲା ଖଟ୍‌ଖଟ୍ ହେଇ । ବିଛେଇ ହୋଇପଡ଼ିଲା ମିଠାମିଠା ନାଲିକିରଣ । ଏ ବି ତାକୁ ଅନ୍ୟମନସ୍କ କରିଦେଲା । ଝରକା ରେଲିଂକୁ ଧରି ସେ ଠିଆହେଇ ପଡ଼ିଲା କିଛି ସମୟ । ସୂର୍ଯ୍ୟ ବୁଡ଼ୁବୁଡ଼ୁ ।

ଅଞ୍ଜନର ଭାବନା ପଛୁଆଣି ବହିଲା । ମନେପଡ଼ିଲା, ଏଇ ଫ୍ଲାଟ୍ କିଣାବେଳର ଘଟଣା । ଏଇ ପଶ୍ଚିମା ଆଲୁଅ ଟିକକ ପାଇଁ ତାକୁ ଅଧିକ ଦଶହଜାର ଟଙ୍କା କ୍ଷତି ସହିବାକୁ ପଡ଼ିଥିଲା । ତେବେ ଦୁଃଖ ନଥିଲା । କାରଣ, ପ୍ରଥମେ ଯେତେବେଳେ ସେ ମନ ଭିତରେ ଘରଟିଏ କରିବାପାଇଁ ନକ୍ସା ଆଙ୍କିଲା, ସେତେବେଳେ ଏଇ ଭବନଗରରେ ତିଆରି ହେଉଥିବା ଆପାର୍ଟମେଣ୍ଟ ତା' ଆଖିରେ ଅନେକ ସ୍ୱପ୍ନ ବୁଣି ଦେଇଥିଲା- ଏଥର ସେ ସତଘର କରିବ,

ଆଉ ମିଛିମିଛିକା ନୁହେଁ । ଇଟା ସିମେଣ୍ଟ ଚୂନର ଚଉଖୁଣ୍ଟିଆ ମଜବୁତ୍ ଘର । ଦକ୍ଷିଣା ଝରକା, ଖୋଲା ପବନ, ତା' ଭିତରେ ସେ ଆଉ ଆଦ୍ୟା ।

ମନ ଉଚ୍ଛନ୍ନ ହେଉଥିଲା । ତା' ପରଦିନ ସକାଳୁ ଯାଇ ଏଇ ପାଖ ଆପାର୍ଟମେଣ୍ଟରୁ ଫ୍ଲାଟ୍‌ଟିଏ ବୁକ୍ କରି ପକେଇଥିଲା ମଧ୍ୟ ଆଦ୍ୟାକୁ ନ ଜଣେଇ । ଇଚ୍ଛା ଥିଲା ହଠାତ୍ ତାକୁ ଚମକେଇ ଦେବ ପ୍ରଥମ ଉପହାର ଦେଇ । ସେଇଟାରେ ଥିଲା ଦକ୍ଷିଣମୁହାଁ ଝରକା, ଖିଲିଖିଲି ପବନର ଅବାଧ ଯା'ଆସ । କିନ୍ତୁ ଆଦ୍ୟା, ଏଇ ପଶ୍ଚିମା ଝରକା ଥିବା ଫ୍ଲାଟ୍‌କୁ ବେଶି ପସନ୍ଦ କଲା । ପବନ ଅପେକ୍ଷା ସୂର୍ଯ୍ୟାସ୍ତ ତା'ର ଖୁବ୍ ପ୍ରିୟ । ସେ ପଚାରିଥିଲା ମଧ୍ୟ - ମୋଠୁ ବି ଅଧିକା ପ୍ରିୟ ? ଆଖିରେ ଦୁଷ୍ଟାମିର ହସ ଚମକେଇ ଉତ୍ତର ଦେଇଥିଲା- ଖୁବ୍ ପ୍ରିୟ ସତରେ ।

ପୁଣି ସେ ପଚାରିଥିଲା– ମୋ ଅନୁପସ୍ଥିତିରେ ମୋ ଶୂନ୍ୟସ୍ଥାନକୁ ସେ ପୂରଣ କରିପାରିବ ?

ପାରିବ । ହେଲେ କିଛି ସମୟ ପାଇଁ । ମୋ ମନକୁ ବୁଝେଇଦେଇ ପାରିବ.... କହିପକେଇ ଜିଭ କାମୁଡ଼ିଥିଲା ଆଦ୍ୟା । ସେ କିନ୍ତୁ ଭିନ୍ନ ପ୍ରକାରେ ଉତ୍ତର ଫେରେଇଥିଲା – ତାହାଲେ ତ ମୁଁ ଜମା ଫ୍ଲାଟ୍ କିଣିବାକୁ ଚାହିଁବିନି । ତମେ କ'ଣ ଜାଣିନ ଆଦ୍ୟା, ତମ ଆଖିରେ ମୁଁ ଏକକ ହୋଇ ରହିବାକୁ ଚାହେଁ ।

ମୁହୂର୍ତ୍ତଟିଏ ବିଳମ୍ବ ନ କରି ଆଦ୍ୟା ତା' ଛାତିରେ ଆଉଜି ପଡ଼ି କାନ ଧରି ଭୁଲ ମାଗିଥିଲା - 'ସରି' ।

ଆଉ ସେ ମିଛିମିଛିକା ଅଭିମାନମିଶା ରୁକ୍ଷସ୍ୱରରେ କହିଲା, "ଖାଲି ସରି କହିଦେଲେ ମୁଁ ମାନିଯିବି ଭାବିଛ, ମୋଟେ ନୁହେଁ ?"

ତା'ହେଲେ..., କେଡ଼େ ବିକଳ ଆଉ ଆର୍ତ୍ତ ଶୁଭୁଥିଲା ତା'ର ପ୍ରତିଟି ଶବ୍ଦ ସେଦିନ । କାନ୍ଦୁଣ୍ମାନ୍ଦୁଣ୍ଣ ଆଦ୍ୟାର ଲୁହ ଛଳଛଳ ସେଇ ଆଖିର ଆବେଦନ ତା' ଛାତିକୁ ସତେ ଯେପରି କାଟିଚିରି ଛିନ୍‌ଛତର କରିପକେଇବ- ଦୁଃସ୍ଥ କାଙ୍ଗାଳ ହୋଇଯିବ ସେ... ମନ ତରଳି ଯାଉଥିଲା, ଧୈର୍ଯ୍ୟଚ୍ୟୁତି ଘଟିଲା । ତା' ମୁହଁକୁ ଦି'ହାତରେ ଟେକି ଧରି କହିଥିଲା କେଡ଼େ ବୋକି ଝିଅ ତମେ ସତରେ ! ମୋ ମିଛ କଥାକୁ ସତ ମାନିଲ ?

ନିଜ ଉଚ୍ଚାରିତ ଅସ୍ଫୁଟ ଧ୍ୱନିରେ ନିଜେ ଚମକିପଡ଼ିଲା ଅଜ୍ଞାନ । ସତେଯେମିତି ପଛୁଆଣି ସୁଅଟା ତାକୁ ଆଗକୁ ଛିଟ୍‌କେଇ ଦେଲା । ଭାଙ୍ଗିଗଲା ଆବେଗ । ଫେରିଆସିଲା ନିଜ ସ୍ଥିତିକୁ । ଭାବିଲା, ସ୍ୱପ୍ନ ଦେଖୁଥିଲା । ନହେଲେ କେହି ତ ନାହିଁ କୁଆଡ଼େ । ସେ ଏକା ଠିଆ ହୋଇଛି ପଶ୍ଚିମା ଝରକାର ରେଲିଂ ଧରି । ଅଧାଖୋଲା ଝରକା । ଅସ୍ତରାଗର ନାଲିଛିଟା ତା' ମୁହଁରେ ବୋଳିହୋଇ ଯାଇଛି । ଆଉ ଟିକକରେ ନାଲିପିଣ୍ଡୁଳାଟା ହଜିଯିବ... ଏମିତିତ ସବୁ ହଜିଯାଏ ଜୀବନରେ । ଖୋଜୁଖୋଜୁ ଅନ୍ଧାର ମାଡ଼ିଆସେ ଆପଣାଛାଏଁ । ଲାଗେ, ସବୁ ମିଛ, ସବୁ ଭ୍ରାନ୍ତି... ଦିବା ସ୍ୱପ୍ନ । ବଳକି ପଡ଼େ ଯାହା, କେବଳ ବହଳ ବନ୍ଧଳ ଏକାକିତ୍ୱ ।

ଦୀର୍ଘଶ୍ୱାସ ପକେଇ ନିଜକୁ ନିଜେ ଶାସନ କଲା ଅଞ୍ଜନ । ଏବଂ ଝରକା କବାଟ ଖୋଲି ଅଳନ୍ଧୁ ସଫା କଲା କୁକିଂ ପ୍ଲାଟ୍‌ଫର୍ମ ତଳେ ଆଉଜି ପଡ଼ିଥିବା ଝାଡୁ ଆଣି ।

ସବୁ ସେମିତି ଅଛି, ଯିଏ ଯୋଉଠି ଥିଲା । ଥାକରେ ସଜା ହେଇଥିବା ସୁନ୍ଦର ସୁନ୍ଦର ଡବା ଭିତରେ ଥିବା ଜିନିଷର ଚେହେରା କିନ୍ତୁ ବଦଳି ଯାଇଛି । ସମୟର ଲମ୍ୱା ହାତ ବଦଳେଇ ଦେଇଛି ସବୁକୁ । ମଣିଷ ବି ଯେତେବେଳେ ବଦଳିଯାଏ ଚିହ୍ନି ହୁଏନା, ଜିନିଷ ତ ଛାର ।

ଚାରିଆଡ଼କୁ ଆଖି ପହଁରିଗଲା । ସ୍ୟାଙ୍କ୍ ଭିତରେ ଅଧୁଆ କଫିମଗ୍ ଦି'ଟା ମୁହାଁମୁହିଁ ଥୁଆ ହୋଇଛି । ଶୁଖି କଳାଦାଗ ପଡ଼ିଯାଇଛି କପ୍ ଭିତରଟା । ମନେପଡ଼ିଲା, ଗଲାଦିନ ଶେଷଥର ପାଇଁ ସେ ନିଜେ ଆଦ୍ୟାକୁ କପେ କଫି କରିଦେଇଥିଲା । ମନା କରୁଥିଲା ଆଦ୍ୟା ପିଇବନି ବୋଲି । ସେ ହିଁ ଅନୁରୋଧ କରିଥିଲା- ପିଇଦିଅ କଫି ଟିକକ, ଖାଲିପେଟ ବୋଲି ଭୋକରେ ଘାଣ୍ଟି ହୋଇଯାଉଛି, ମୁଣ୍ଡ ଝାଙ୍କି ଦେଉଛି... ଏଇତ ପଡ଼ିଯାଉଥିଲ... ପ୍ଲିଜ୍, ଏଇ ଶେଷଥର । ମୁଁ କ'ଣ ଆଉ କହିବି ତମକୁ । ଅସୁସ୍ଥ ହେଇପଡ଼ିଲେ ନିଜକୁ ସମ୍ଭାଳିବ କେମିତି ?

ସେତେବେଳେ ସେ ଜାଣିନଥିଲା ଉବ୍ୟା ଆସୁଛି ବୋଲି । ଅନେକ ଦିନ ପରେ ଖବରଟା ପାଇଥିଲା । ଶୁଣି ଖୁବ୍ ଖୁସିରେ ମନ ନାଚି ଉଠିଲା ସତ, ହେଲେ ଦୁଃଖ ବି ଲାଗିଥିଲା । ଏଯାଏ ବି ସେ ଦୁଃଖର ଅବସାନ ଘଟିନି । ଅଞ୍ଜନ ଭାବିସାରି ନିଜକୁ ନିଜେ ବୁଝାଇଲା, ଯାହା ବି ହେଉ ଈଶ୍ୱର ତା' ଭାଗ୍ୟରେ ଯେତିକି ସୁଖ ଖଞ୍ଜିଛନ୍ତି । ତା'ଠୁ ଅଧିକା ସେ ଚାହିଁବ କାହିଁକି ?

ଆଦ୍ୟା ଗଲାପରେ ନିଜେ ଆଉ କିଛି ନଖାଇ କପେ କଫି ପିଇ, ସେମିତି ଶୋଇପଡ଼ିଥିଲା ସୋଫା ଉପରେ ସକାଳ ପର୍ଯ୍ୟନ୍ତ । ଏବଂ ସକାଳୁ ଉଠି ନିଜ ଦରକାରୀ ଲୁଗାପଟା ନେଇ ଉଠିଯାଇଥିଲା ବନ୍ଧୁ ଅମରେଶ ବସାକୁ । ତା' ପରଠୁ ସେ ଆଉ ଫ୍ଲାଟ୍‌କୁ ଆସିନି । ଏକାବେଳକେ ଆସିଲା ନିଜ ବଦଳି ଅର୍ଡର ପାଇଲାପରେ । ସେତିକିବେଳେ ଯାହା ନିଜ ଆବଶ୍ୟକ କାଗଜପତ୍ର ଲୁଗାପଟା ନେଇ ଯାଇଥିଲା ଯେ ଯାଇଥିଲା । ସେଇଦିନୁ କଫିମଗ୍ ଦି'ଟା ସେମିତି ଥୁଆ ହୋଇଛି ଅଧୁଆ । ସମୟ ସନ୍ଧିରେ ଲୁଚି ଯାଇଥିବା ସେଦିନ ସ୍ମୃତିକୁ ମନେ ପକେଇ ଦେବାକୁ ସତେ କି !

ଅନ୍ୟମନସ୍କ ଭାବେ ଅଞ୍ଜନ ରୋଷେଇ ପ୍ଲାଟ୍‌ଫର୍ମ ତଳର ଡ୍ରୟାରମାନଙ୍କୁ ଗୋଟିଏ ପରେ ଗୋଟିଏ କରି ଖୋଲି ଦେଖିଲା । ହାତରେ ପଡ଼ିଲା କ୍ୟାଣ୍ଡେଲଟିଏ । ଆଶ୍ୱସ୍ତ ଲାଗିଲା । ଯା'ହେଉ, ପାଖ ପାନ ଦୋକାନରୁ ଦିଆସିଲିଟିଏ ନେଇ ଆସିଲେ ବର୍ତ୍ତମାନ ପାଇଁ କାମ ଚଳିଯିବ । ମନେମନେ ଆଦ୍ୟାର ବ୍ୟାବହାରିକ ଜ୍ଞାନର ତାରିଫ୍ କଲା । ଏବେ ଦିଆସିଲିର ଖୋଜ୍‌ରେ ତାକୁ ତଳକୁ ଯିବାକୁ ହେବ ।

ଘର କହିଲେ ଆଦ୍ୟାକୁ ହିଁ ବୁଝାଏ । ତା'ର ହିଁ ଘର ଥିଲା ଏଇଟା । ଦିନରାତି ଲାଗି ସଜାଡ଼ିସୁଜୁଡ଼ି ସାଇତି ରଖିଥିଲା ସବୁ ଜିନିଷ । କହୁଥିଲା, ଏ ଘରକୁ ସେ ଅମରାବତି କରି ରଖିବ । ସ୍ନେହ-ଶ୍ରଦ୍ଧା, ପ୍ରୀତି-ପ୍ରଣୟ, ଶାନ୍ତି-ସୁରକ୍ଷା ଆଉ ନିଶ୍ଚିନ୍ତତା- ଯାହା, ଯେତେବେଳେ ଖୋଜିବ, ପାଇବ । ସମସ୍ତେ କହିବେ ଯେମିତି- ଆମ ଆଦ୍ୟା ଘର ପରି ଘର କରିଛି । ଭାବୁଭାବୁ ଅଞ୍ଜନ ଦୁଆର ଖୋଲିଲା, ବାହାରକୁ ଯିବ ବୋଲି । ଦେଖିଲା, ଜଣେ ଭଦ୍ରଲୋକ ସିଗାରେଟ୍‌ରେ ନିଆଁ ଧରେଇ ତରତର ହେଇ ଆଗେଇ ଯାଉଛନ୍ତି ଲିଫ୍‌ଟ୍ ଆଡ଼କୁ, ଅଞ୍ଜନ ସୁଯୋଗ ପାଇ ପଛରୁ 'ହାଲୋ' କଲା । ଭଦ୍ରଲୋକ ଅଟକି ଟିକିଏ ଚାହିଁଲେ । ଅଞ୍ଜନ ତାଙ୍କଠୁଁ ଦିଆସିଲିଟା ଚାହିଁଲା । ଭଦ୍ରଲୋକ ବଢ଼େଇ ଦେଇ ଟିକିଏ ହସି କହିଲେ- ଥାଉ ଆପଣଙ୍କ ପାଖରେ ।

କ୍ୟାଣ୍ଡେଲ୍ ଜଳିଲା । କ୍ଷୀଣ ଆଲୁଅ ବିଛୁହୋଇ ପଡ଼ିଲା ଘରଟି ଭିତରେ । ଅନ୍ଧାର ହେଇ ଆସୁଥିଲା ତ । ଏଥର ସେ ଶୋଇବା ଘରର ଚାବି ଖୋଲିବ ।

ବେଶ୍ ପ୍ରଶସ୍ତ କୋଠରି । ଝରକାକୁ ଲାଗି ପଲଙ୍କ ଦି'ଟା ପଡ଼ିଛି, ଶୂନ୍ୟତାକୁ ସାଥିକରି । ସୁଇଟ୍‌ଡ୍ରିମ୍‌ର ଏମ୍ବ୍ରୋଏଡରି କରା ଗୋଲାପୀ ତକିଆ ଖୋଳ ଲଗା ବଡ଼ବଡ଼ ତକିଆ ଦି'ଟା ବି ସେମିତି ଅପେକ୍ଷା କରିଛନ୍ତି । ଝରକାରେ ଦାମୀ ଗୋଲାପୀ ସ୍କ୍ରିନ୍ । ଆଦ୍ୟାର ପ୍ରଥମ ପସନ୍ଦ- ଏଇ ଗୋଲାପୀ ରଙ୍ଗ । କାନ୍ଥକଡ଼ରେ ଡ୍ରେସିଂଟେବୁଲ୍ । ଟେବୁଲ ଉପରେ ସେମିତି ଥୁଆ ହେଇଛି କସ୍‌ମେଟିକ୍ ସାମଗ୍ରୀ । ଆଦ୍ୟାର ନିଜସ୍ୱ ବ୍ରାଣ୍ଡ, ପାର୍କଏଭନ୍ୟୁ, ପରଫ୍ୟୁମ୍ ସନ୍‌ଡ୍ରମ୍, ପଣ୍ଡସ୍ କୋଲଡ୍ କ୍ରିମ୍ ।

ଅବଶ୍ୟ ରୂପଚର୍ଚ୍ଚାର ଅଭ୍ୟାସ ନଥିଲା ଆଦ୍ୟାର । ଖୁବ୍ କମ୍, ଆଖିରେ ନ ପଡ଼ିଲା ଭଳି ହିଁ ସେ ନିଜକୁ ସଜାଏ । କିନ୍ତୁ ପରଫ୍ୟୁମ୍ ପ୍ରତି ତା'ର ଦୁର୍ବଳତା ଥିଲା । ପରଫ୍ୟୁମକୁ ଅନ୍ୟମନସ୍କ ଭାବେ ଏପାଖସେପାଖ କରୁକରୁ, ଦି'ତିନିଥର ସ୍ପ୍ରେ କରିଦେଲା ସେ । ଜାଣେନା, କାହିଁକି ତା'ର ଏଇ ପ୍ରକାର ଖିଆଲ ସବାର ହେଲା । ଅବଚେତନରେ ଆଦ୍ୟାର ଛବିଟା ଲୁଚିରହି ତାକୁ ଉସୁକେଇଥିଲା ବୋଲି କି କ'ଣ । ଅଥବା, ପରଫ୍ୟୁମ୍ ବାସ୍ନା ଭିତରେ ଆଦ୍ୟାକୁ ଅନୁଭବ କରିବାର ଦୂରନ୍ତ ଲୋଭ । ଜାଣେନା, ଜାଣେନା ସେ । ତେବେ ପରଫ୍ୟୁମ୍‌ର ବାସ୍ନାକୁ ନାକ ଫଣକେଇ ଆଘ୍ରାଣ କଲା । ପାନିଆ ଖୋଜୁ ଖୋଜୁ ଆଖିରେ ପଡ଼ିଲା ସିନ୍ଦୂର ଫରୁଆଟା । ଭାବିଲା, ଆଦ୍ୟା ବୋଧେ ଜାଣିଜାଣି ଛାଡ଼ିଯାଇଛି । କାରଣ, ସିନ୍ଦୂର ଫରୁଆର ଅପରିହାର୍ଯ୍ୟତା ତା' ପାଖରେ ଆଉ ନାହିଁ । ସେପାରେସନ୍ ପେପରଟା ସିନ୍ଦୂର ଟିକକ ପୋଛିଦେବା ପାଇଁ ଯଥେଷ୍ଟ ନିଶ୍ଚୟ ।

ଅଞ୍ଜନକୁ କିନ୍ତୁ ଏକଥା ଭାବିଲାବେଳକୁ ଅସ୍ୱସ୍ତି ଲାଗିଲା, ଭଲ ଲାଗିଲାନି । ମନେମନେ 'ସରି' କହି ମୁଣ୍ଡରେ ପାନିଆ ଚଳେଇ ମିରର୍‌ରେ ପରଦା ଆଡ଼େଇଲା ।

ଆଇନାଟା ବେଶ୍ ବଡ଼, ଓଭାଲ ଟାଇପର୍ । ସେଥିରେ ଧଳା ଫିନ୍‌ଫିନ୍ ପରଦା ଝୁଲେଇ ଥିଲା ଆଦ୍ୟା । ଖାସ୍ ଏଇ କମକୁଟକରା ପରଦା ପାଇଁ ଗୋଟାଏ ଛୁଟିଦିନ ସେ ସମଗ୍ର ବଜାର ଘୂରିବୁଲିଛି ଆଦ୍ୟାକୁ ନେଇ । ପରଦା ତା'ର ଆବଶ୍ୟକ– ଆଇନା କ'ଣ ଏମିତି ଖୋଲା ପଡ଼େ ?

– ଅସୁବିଧାଟା କ'ଣ ? ପ୍ରଶ୍ନ କରିଥିଲା ସେ – ଆଇନା ତ ସବୁବେଳେ ସତ କୁହେ ।

– ସେଇଥିପାଇଁ ତ । ମାଡ଼ିପଡ଼ିବ ନିଜକୁ । ସବୁବେଳେ ଯେମିତି ଜଣେ ଚାହିଁଥିବ ଚୌକିଦାର ଭଳି ତବଡବ ଆଖିରେ । ଝୁଲେଇ ଦେଇଥିଲା ପରଦାଟା ।

ହାତ ସ୍ଥିର ହୋଇଗଲା ଅଞ୍ଜନର । ପାନିଆ ଥୋଇ ଭାବିଲା, ବୋଧେ ସେଇଥିପାଇଁ କି କ'ଣ କେହି ଜଣେ ହେଲେ ରହିଲେନି ତା' ଜୀବନର ସତ ମିଛର ସାକ୍ଷୀ ହେଇ । ବିପର୍ଯ୍ୟସ୍ତ ହେଇଗଲା ତା'ର ଏଇ ସ୍ଥାୟୀ ଠିକଣାଟା । ହାରିଗଲା ସେ ।

ସଂସାରରେ ସମସ୍ତଙ୍କର ଗୋଟାଏ ସ୍ଥାୟୀ ଠିକଣା ଥାଏ । ତା'ର ନଥିଲା । ଏଇ ସ୍ଥାୟୀ ଠିକଣା ପାଇଁ ସେ କେତେ ସ୍ୱପ୍ନ ନ ଦେଖିଛି । ଆଦ୍ୟା ସହିତ ତା'ର ପ୍ରଥମ ସାକ୍ଷାତ ହିଁ ମନରେ ଏଇ ସ୍ଥାୟୀ ଠିକଣାର ନିଶ୍ଚିତ ଭରସା ପୂରେଇ ଦେଇ କହିଥିଲା– କଥାଦେଲି, ତମ ଇଚ୍ଛାର ତମ ସ୍ୱପ୍ନର ମର୍ଯ୍ୟାଦା ରଖିବି ।

ଅଥଚ କଥା ରଖିଲାନି ଆଦ୍ୟା ।

ଦିନଥିଲା, ତା'ର ଏତେ ଛୋଟ ଛୋଟ କଥାକୁ ବି ଗୁରୁତ୍ୱ ଦେଇ ଭାବୁଥିଲା ସେ । ନିଜ ସୁଖ ସୁବିଧା ନ ଭାବି, ଯେମିତି ହେଉ ପୂରଣ କରି ଥୋଇ ଦେଉଥିଲା ତା' ସାମ୍ନାରେ । ପରସ୍ପର ପରସ୍ପରର ଛୋଟ ଛୋଟ ଖୁସି ଆଉ ଇଚ୍ଛା ପ୍ରତି ସବୁବେଳେ ସଚେତନ ଥିଲେ । ଆଦ୍ୟା କହୁଥିଲା 'ଖୁସି ତ ଖୁସି । ଛୋଟ ହେଉ କି ବଡ଼ । ତମ ଆଉ ମୋ'ଖୁସି ଭିତରେ ଫରକ ଅଛି ନା କ'ଣ ? ଦୁହେଁ ଦୁହିଁଙ୍କ ମନ ଭିତରକୁ ଗଳିପଶି ଖୋଜିବାକୁ ପ୍ରୟାସ କରୁଥିଲେ । ପ୍ରତିଟି ମୁହୂର୍ତ୍ତକୁ ସେମାନେ ସଞ୍ଜୀବିତ କରି ରଖୁଥିଲେ ଆନନ୍ଦ ଆଉ ଉଲ୍ଲାସରେ । ସେ ଚାହିଁଥିଲା, ଏ ଘର ଭିତରେ କେବଳ ଆନନ୍ଦର ନୀଳଜ୍ୟୋତ୍ସ୍ନା ଲହଡ଼ି ଭାଙ୍ଗିବ । ଜହ୍ନ କେବେ ଲୁଚିବନି କି, ନୀଳକଇଁ କେବେ ଶୋଇବନି । ଜୁଆରରେ ଭାସିବେ ଦୁହେଁ ଅସରନ୍ତି ସମୟ ଧରି । ସବୁ ମିଛ ହେଇଗଲା । ଗୋଟାଏ ତୁଚ୍ଛ ଭ୍ରାନ୍ତିକୁ ଜାବୁଡ଼ି ଧରି ତା'ର ଏତେ ପ୍ରିୟ ଅଞ୍ଜନକୁ ପର କରିଦେଲା ଆଦ୍ୟା । ମିଛୁଆ ହୋଇଗଲା ଅଞ୍ଜନ । ଅବିଶ୍ୱାସୀ, ଲମ୍ପଟ ହୋଇଗଲା । ହୋଇଗଲା ବି ଆହୁରି କେତେ କ'ଣ । କାଠଗଡ଼ା ଭିତରେ ଠିଆହୋଇ ଏତେସବୁ ଅଭିଯୋଗ ଆଣିଲାବେଳକୁ ଟିକିଏ ବି ଦ୍ୱିଧାଗ୍ରସ୍ତ ହେଲାନି । ଏତେଦିନର ଅନ୍ତରଙ୍ଗତା, ବିଶ୍ୱାସ, ଯାହା ଉପରେ ସେମାନେ ପ୍ରେମର ଇମାରତ ଠିଆ କରିବାର ଶପଥ

ନେଇଥିଲେ- ଭାବିଲେନି ବି ଥରେ ସେକଥା । ଏତେ ଜିଦ୍‌ଖୋର ସେ କେମିତି ହେଲା କେଜାଣି । ଅଞ୍ଜନ କେବେ ଦେଖିନଥିଲା ଆଦ୍ୟାର ଏଇ ଭିନ୍ନ ରୂପ୍ । କୋଉ ଅପଦେବତାର ଅଭିଯୋଗ ନଇଁଆସିଲା ତା' ସଂସାର ଉପରକୁ କେଜାଣି ! ଏକାବେଳକେ ଅଚିହ୍ନା ପାଲଟିଗଲା ।

ଆଖି ଓଦା ହୋଇଆସିଲା ଅଞ୍ଜନର । ତଣ୍ଟି ପାଖରେ ଗୋଟାଏ ପ୍ରକାରର ଯନ୍ତ୍ରଣା ତାକୁ ଅସ୍ତବ୍ୟସ୍ତ କରିପକେଇଲା । ଜାଣିପାରିଲା, ଇମୋସନ୍‌ର ବ୍ୟୁହ ଭିତରକୁ ସେ ପଶିଯାଉଛି ଧୀରେଧୀରେ । ଯଦିଓ ଏଇଟା ସ୍ୱାଭାବିକ । ତେବେ ବର୍ତ୍ତମାନ ପାଇଁ ନିଜକୁ ତ ସମ୍ଭାଳିବାକୁ ପଡ଼ିବ । ତା'ର କିଛି ଦାୟିତ୍ୱ ଅଛି । କ୍ୟାଣ୍ଡଲଟା ସରିବା ଆଗରୁ ତାକୁ ସେସବୁ କାମ ସାରିବାକୁ ପଡ଼ିବ । ନିଜକୁ ଶାସନ କରୁକରୁ ସେ ଟେବୁଲ ଡ୍ର ଖୋଲିଲା । ସେମିତି ପଡ଼ିଛି ଆଲମିରାର ଚାବିକାଠି ଡ୍ର'ର ଗୋଟିଏ କୋଣରେ । ତା' ପାଖକୁ ତା' ରୁମାଲ ଚଉତା ହେଇ ଥୁଆହେଇଛି । କିଛି ଏପାଖସେପାଖ ହେଇନି । କେବଳ ତା' ଜୀବନକୁ ଛାଡ଼ି ।

ଏଥର ସେ ଉଠିଗଲା ଆଇମିରା ପାଖକୁ ଲମ୍ୱା ଦୀର୍ଘଶ୍ୱାସ ନେଇ । ତାକୁ ଖୋଜିବାକୁ ପଡ଼ିବ ଆଦ୍ୟାର ସାର୍ଟିଫିକେଟ୍, ତନିମା ଫୋନ୍ କରିଥିଲା ତା'ପାଖକୁ । ଆଦ୍ୟାର ବାନ୍ଧବୀ ତନିମା । ଖବରଦେଲେ ଯଥା ସମୟରେ ସେ ଆସି ନେଇଯିବ ତା' ପାଖକୁ ସେସବୁ କାଗଜପତ୍ର ।

ଅଭିମାନ ଲାଗିଲା ତାକୁ । ନିଜେ ତ ଫୋନ୍ କରିପାରିଥା'ନ୍ତା । କଲାନି, ଭୟ ଲାଗିଲା ? ଭାବିଲା ବୋଧେ, ସେ ଯାଇତାଇ ଲୋକଙ୍କ ଭଳି ତାକୁ ହଇରାଣ ହରକତ କରିବ, କିଛି ଦାବି କରିବ । ନା, ଆତ୍ମସମ୍ମାନ ବାଟ ଓଗାଳିଲା । ସେ ତ ସେଭଳି ଅସାମାଜିକ ନୁହେଁ । ଛାଡ଼ ସେସବୁ କଥା, ଅଞ୍ଜନ ଆଉ ଅଡୁଆ ଗଣ୍ଠିକୁ ଖୋଲିବା ପାଇଁ ଚେଷ୍ଟା କଲାନି । ତା'ଛଡ଼ା ଆପଣା ମଣିଷ ପାଖରେ ସିନା ଅଭିମାନ । ଆଦ୍ୟା ତ ସେଇ ତାଲିକା ଭିତରୁ ତାକୁ କାଟିଦେଇଛି ।

ଯେତେ ଶୀଘ୍ର ପାରେ ଦାୟିତ୍ୱ ବୋଝଟା ଓହ୍ଲେଇଦେବ ସେ । ତେଣୁ ତରବର ହୋଇ ଆଇମିରାଟା ଖୋଲିଲା ସେ । ଖୋଲୁଖୋଲୁ ଦରଜା ସହିତ ପୁଳାଏ ଲୁଗାପଟା ମାଡ଼ିଆସିଲା ତା'ଆଡ଼କୁ । ତା' ସହିତ ଶୁଖିଲା ଫୁଲର ଗଜରାହାର ଏବଂ କର୍ପୂରମାଳ ଦି'ଟା- ଖସିପଡ଼ିଲା ବନ୍ଦ ପ୍ୟାକେଟ୍ ଭିତରୁ ତା' ପାଦ ଉପରକୁ ।

ଗନ୍ଧକର ବାସ୍ନା ସହିତ ଗୋଳେଇ ହୋଇଯାଇଥିଲା କର୍ପୂରର କ୍ଷୀଣ ଗନ୍ଧ । ସେସବୁ ତା' ଦେହମନକୁ ସଞ୍ଚରିଯାଇ ତାକୁ ହଠାତ୍ ରୋମାଞ୍ଚିତ କରିନେଲା ପଲକମାତ୍ରେ । ନେଇଗଲା ତାକୁ ଅନ୍ୟ ସମୟକୁ ଏବଂ ମୁହୂର୍ତ୍ତକ ପାଇଁ ଅଞ୍ଜନ ଭୁଲିଗଲା ଯେତେସବୁ ଅବସାଦ, ଅଭିମାନ ଆଉ ଯନ୍ତ୍ରଣାକୁ । ଲୁଗାପଟାତକ ତଳୁ ଖଟ ଉପରକୁ ଉଠେଇବାକୁ ଯାଇ, ସେ ସିଧା ପହଞ୍ଚି ଯାଇଥିଲା ଇସ୍କନ୍ ମନ୍ଦିର ବେଢ଼ାରେ ।

ଠିକ୍ ପାଞ୍ଚବର୍ଷ ପୂରିଯିବ ଆଉ ମାସଟା ପରେ । ସେଇବର୍ଷର ଦୋଳପୂର୍ଣ୍ଣିମା ଆକାଶରେ ଚକାଜହ୍ନ । ବସନ୍ତରାସର ଧୁମ୍ ଚାଲିଥାଏ ସବୁ ମନ୍ଦିରରେ । ରାଧାକୃଷ୍ଣଙ୍କ ମହାରାସ ଫୁଲ ଆଉ ଫଗୁଣର ପୃଷ୍ଠଭୂମିରେ । ଘରେ ବାହାରେ ସବୁଠି ଫଗୁ ଆଉ ଅବିରର ମହୋତ୍ସବ । ଭାବୁଭାବୁ ତନ୍ମୟ ହେଲା ଅଞ୍ଜନ ।

ଆଦ୍ୟା ଚାହିଁଲା ଏଇ ଫୁଲ ଆଉ ରଙ୍ଗର ତିଥିରେ ତା' ସୀମନ୍ତକୁ ସେ ସିନ୍ଦୂରିତ କରିବ, ସେ ନିଜେ ବି ଚାହିଁଥିଲା । ତା' ମନର ଫଗୁ ଅବିରରେ ଆଦ୍ୟାର ଦେହମନକୁ ରଙ୍ଗେଇଦେବ । ଫୁଲର ଦୋଳିରେ ବସେଇ ଝୁଲେଇବ ଅନନ୍ତକାଳ ପର୍ଯ୍ୟନ୍ତ ।

ସେଇୟା ହେଲା । ଦୁହେଁ ପହଞ୍ଚି ଯାଇଥିଲେ ଇସ୍କନ୍ ମନ୍ଦିରରେ । ଯଦିଓ ଆଦ୍ୟାର ଇଚ୍ଛା ଥିଲା ପୁରୀ ଆସିବ । ଫଗୁ ଅବିର ଭିଜା ଶ୍ରୀମନ୍ଦିର ବେଢ଼ାରୁ ଦ୍ୱୈତ ଜୀବନର ଅୟମାରମ୍ଭ କରିବ । ସେ କିନ୍ତୁ ଚାହିଁ ନଥିଲା । ନ ଚାହିଁବାର କାରଣ ବି ଥିଲା । ସେ ଚାହୁଁ ନଥିଲା ଯେ, ଏ ବିବାହରେ କୌଣସି ପ୍ରକାର ବ୍ୟାଘାତ ସୃଷ୍ଟି ହେଉ । ହଜାରେ ପ୍ରଶ୍ନବାଣରେ ଉଭୟେ କ୍ଷତବିକ୍ଷତ ହୁଅନ୍ତୁ । କାରଣ ଆଦ୍ୟା ଘରୁ କାହାର ସମର୍ଥନ ନଥିଲା ଏ ବିବାହରେ । ଆଦ୍ୟା କୁଳୀନ ଆଚାର୍ଯ୍ୟ ପରିବାରର ଏକମାତ୍ର ସନ୍ତାନ । ତା' ସହିତ ଥିଲା ବଂଶ ମର୍ଯ୍ୟାଦା ଏବଂ ସଂଭ୍ରାନ୍ତ ପରମ୍ପରା । ବାପା ନରେନ୍ଦ୍ର ଆଚାର୍ଯ୍ୟଙ୍କର ଦେହାନ୍ତ ହୋଇଥିଲା ଅନେକ ଦିନରୁ । ସେ ଆର୍ମି ଅଫିସର୍ ଥିଲେ । ଆଦ୍ୟା ଖୁବ୍ ଛୋଟ ଥିଲା, ବାପାଙ୍କୁ ତା'ର ମନେ ନାହିଁ । ବିଧବା ମା' ଏବଂ ତାକୁ 'ଆହା' କରିବା ପାଇଁ ତାଙ୍କର ସମାଜ ଥିଲା ତାଙ୍କ ସାଥିରେ । ଆମ ସମାଜ ବ୍ୟବସ୍ଥା ତ ଏତେ ଉଦାର ନୁହେଁ । ବ୍ୟକ୍ତିଗତ ରୁଚି କିମ୍ବା ଇଚ୍ଛାକୁ ସେଭଳି ଉତ୍ସାହିତ କରେନା । ତେଣୁ ଭାବିଚିନ୍ତି ପାଦ ଉଠେଇବାକୁ ପଡ଼େ । ଆଉ ତା'ର... ବି ତ ପରିଚୟ ବୋଲି କିଛି ନାହିଁ । ଜାତି, କୁଳ, ଗୋତ୍ରବିହୀନ ଏକ ମାନବ ଶିଶୁ - ମିସନାରୀ ଅନାଥାଶ୍ରମର ଅନ୍ତେବାସୀ । ଜାଣେନା ସେ କୋଉଠୁ ଆସିଛି । କିଏ ତାକୁ ଜନ୍ମ ଦେଇଛି ।

ପିଲାଦିନୁ ଫାଦର ସାଇମନ୍ ଏବଂ ମଦର ମେରୀୟମ୍‌ଙ୍କୁ ହିଁ ସେ ଚିହ୍ନିଛି ବାପା ମା'ବୋଲି । ସେମାନେ ସ୍ନେହ ମମତା ବାଣ୍ଟି ଦେଇଛନ୍ତି ତା'ଭଳି ଅନେକ ମଣିଷ ଶିଶୁ ଭିତରେ ଅକୁଣ୍ଠ ଭାବେ । ଆଉ ସେ.... ସେଇ ବଣ୍ଟା ହେଉଥିବା ସ୍ନେହମମତାରୁ ନିଜଭାଗ ଆହରଣ କରି ବଢ଼ି ଆସିଛି ଅନେକଙ୍କ ଭିତରେ ଜଣେ ହୋଇ । ତା'ପଛରେ କେହି ନଥିଲେ କି ନାହାନ୍ତି । ଯଦିବି କିଏ ଅଛି ତ, ଦୟା ଅନୁକମ୍ପା ଦେଖେଇବା ପାଇଁ । ନ ହେଲେ ଆଙ୍ଗୁଠି ଦେଖେଇ କହିବାକୁ ଯେ ଏମାନେ ଅନାଥ, ଅବୈଧ ଅଥବା ପାପସୃଷ୍ଟି ସମାଜର ଆସ୍ଥା, ବିଶ୍ୱାସ ଅର୍ଜନ କରିବା ପାଇଁ ଏମାନେ ଅଯୋଗ୍ୟ । ସଂଭ୍ରାନ୍ତ ପରିଚୟ ବହନ କରୁଥିବା ସମାଜ ଏମାନଙ୍କୁ ସ୍ୱୀକାର କରିବାକୁ କୁଣ୍ଠିତ ହୁଏ । ଏଥିପାଇଁ ଅନ୍ତତଃ ଘରଟିଏ ଜରୁରୀ- ଏକ ପରିଚୟ ବହନ କରୁଥିବା ଘର ।

ଆଦ୍ୟାକୁ ନେଇ ସେ ଏଭଳି ଏକ ଘରର ସ୍ୱପ୍ନ ଦେଖିଥିଲା ।

ଛାତି ଭିତରେ ଏକ ଅବ୍ୟକ୍ତ ଯନ୍ତ୍ରଣା, କହିପାରୁ ନଥିବା, ସହିପାରୁ ନଥିବା ଯନ୍ତ୍ରଣା । କର୍ପୂରମାଳକୁ ଥୋଇଦେଇ ଅଞ୍ଜନ ଛାତିକୁ ଚାପିଧରିଲା କିଛି ମୁହୂର୍ତ୍ତ । ଓଃ, କି ଅସହ୍ୟ ସତରେ ! ଏଇ ଯନ୍ତ୍ରଣା ତା' ପାଇଁ ନୂଆ ନୁହେଁ, ଅନେକଥର ସେ ଛଟପଟ ହେଇଛି ଏଇ ଯନ୍ତ୍ରଣାରେ । ବିଶେଷ କରି, ବୟସ ବଢ଼ିବା ସଙ୍ଗେସଙ୍ଗେ । ଯୋଉଦିନରୁ ତା' ଭିତରେ ନିଜକୁ, ନିଜ ପରିଚୟକୁ ଖୋଜିବା ଆରମ୍ଭ ହେଲା– ସେଇଦିନରୁ । କାହାକୁ ବି ମନର ଅତି ନିକଟରେ ନ ପାଇ ନିଜକୁ ଏକୁଟିଆ ମନେକରିଛି । ନିଜକୁ ନିଜେ ବୁଝେଇଛି ଅଗତ୍ୟା । ଯନ୍ତ୍ରଣାକୁ ନେଇ ଫାଦରଙ୍କ ପାଖକୁ ଯାଇଛି ପ୍ରଶ୍ନ ନେଇ । ତା' ଭିତରେ ଏତେ ଯନ୍ତ୍ରଣା କାହିଁକି ? ଉତ୍ତରରେ ସେ କହିଛନ୍ତି - "ତୁମେ ଏବେବି ଦ୍ୱିଧାଗ୍ରସ୍ତ ଅଞ୍ଜନ, ନିଜକୁ ଚିହ୍ନିପାରୁନ, ଖୋଜି ପାଉନ । ସେଇଥିପାଇଁ ତୁମର ଏଇ ଯନ୍ତ୍ରଣା ।"

ତା'ହେଲେ.... ମୁଁ କିଏ ଫାଦର, କୋଉଠୁ ଆସିଛି ?

ତୁମେ ଏଇ 'ବିରାଟ'ର ଏକ ଅଂଶବିଶେଷ । ଏଇ ବିରାଟ ପୃଥିବୀ ତୁମର । ନିଜକୁ ଛୋଟ ମନେ କରିବାଟା ହିଁ ଅପରାଧ । କାରଣ ଈଶ୍ୱରଙ୍କ ଏଇ ସୃଷ୍ଟିରେ ସବୁ ମଣିଷ ସମାନ– ଯେମିତି ବାପାମା'ଙ୍କ ଆଖିରେ ସବୁ ସନ୍ତାନ ସମାନ । ତାଙ୍କ ଘର ସଭିଙ୍କ ପାଇଁ ଖୋଲା ।

ସେଇଦିନରୁ ତା' ଚେତନ ମନ ଭିତରେ ଏଇ ଘର ଆଉ ବାପା ମା'– କନ୍‌ସେପ୍ଟଟା ପଦ୍ମାସନା ପକେଇ ବସିଯାଇଛି । ସ୍ୱପ୍ନ ଦେଖି ଆସିଛି ଏମିତିକା ଏକ ସୁନ୍ଦର ଜୀବନର ।

ଫାଦର ସାଇମନଙ୍କ ସେଇ କଥାପଦକ ତାକୁ ପିଲାଦିନୁ କେବଳ ଭାବୁକ ନୁହେଁ ଦାର୍ଶନିକ ମନସ୍କ ମଧ୍ୟ କରିଦେଇଛି । ତା' ଭିତରେ ଥିବା ସେଇ 'ବିରାଟ'କୁ ଖୋଜୁଖୋଜୁ ହିଁ ତ ଦିନେ ଅଚାନକ ସାକ୍ଷାତ୍ ହୋଇଯାଇଥିଲା ଆଦ୍ୟା ସହିତ ୟୁନିଭର୍‌ସିଟି କ୍ୟାମ୍ପସ୍‌ରେ । ଜୀବନ ଯନ୍ତ୍ରଣାର ସିଂହଭାଗ ନିଜେ ନେବ ବୋଲି କଥାଦେଇ ପଶି ଆସିଥିଲା ଆଦ୍ୟା ତା' ଜୀବନ ପରିଧି ଭିତରକୁ ସ୍ନିଗ୍ଧ, ସୁଶୀତଳ ମାଳତୀ ଫୁଲର ବାସ୍ନା ଭଳି ।

ତା'ପରେ ଦୀର୍ଘ ଚାରିବର୍ଷର ପାଠପଢ଼ାବେଳେ ଓ ହଷ୍ଟେଲ ରହଣି ଭିତରେ ଦୁହିଁଙ୍କର ସମ୍ପର୍କ ନିବିଡ଼ରୁ ନିବିଡ଼ତର ହୋଇଥିଲା । ସତେଯେମିତି ପରସ୍ପର ପରସ୍ପର ପାଇଁ ଜନ୍ମ ନେଇଛନ୍ତି । ସେଠି ଆଉ କାହାର ସ୍ଥାନ ନାହିଁ । କି ରୋମାଞ୍ଚକର ମୁହୂର୍ତ୍ତ ସବୁ ! ଚିତ୍ରମୟ । ସ୍ମୃତିଭରା । ବିଭୋର ହୋଇପଡୁଥିଲା ଅଞ୍ଜନ । ସେସବୁ ଦିନର ସ୍ମୃତି ରୋମନ୍ଥନ କରୁକରୁ ବିହ୍ୱଳ ହୋଇପଡ଼ିଲା ।

ସେ ସମୟଟା ବି ଥିଲା ସେମିତି । ଜୀବନକୁ ଗଢ଼ିବାର ବେଳ । ପରିଚୟ ତିଆରି କରିବାର ବେଳ । ସେଇ ଦମ୍ଭ ହିଁ ତାକୁ ସଂସାରରେ ଆଉ ଦଶଜଣଙ୍କ ଭିତରେ ଜଣେ କରି ଠିଆ କରିପାରିଲା । ଆଉ ସେ ଦମ୍ଭରେ ହିଁ ସେ ସ୍ୱପ୍ନ ଦେଖିଥିଲା ଏକ ସୁନେଲୀ ଭବିଷ୍ୟତର । ନକ୍ସା ଆଙ୍କିଥିଲା ଚାରିକାନ୍ଥ ଥିବା ଏକ ନିବୁଜ ସ୍ଥାୟୀ ସୁଦୃଢ଼ ଘରର, ଯିଏ ସବୁ ପ୍ରକାରର

ସୁଖ ଶାନ୍ତି, ନିରାପତ୍ତା ସହିତ ଏକ ସଂଭ୍ରାନ୍ତ ପରିଚୟ ଦେଇ ପାରୁଥିବ । ତା' ଭିତରେ ପକ୍ଷୀ ଆଉ ପକ୍ଷିଣୀ ଭଳି ସେ ଆଉ ଆଦ୍ୟା - ଜନ୍ମ ନେବ ଭବିଷ୍ୟତ, ଗଢ଼ିଉଠିବ ଏକ ନୂତନ ପରମ୍ପରା ।

ଦିନ ଦିନ ରାତି ରାତି କଟିଯାଏ ସ୍ୱପ୍ନ ଦେଖୁଦେଖୁ । ଆଦ୍ୟା ସ୍ୱପ୍ନକୁ ଟେକିଦିଏ ଆହୁରି । ସ୍ୱପ୍ନ ଡେଣା ମେଲାଏ ଆକାଶ ଛୁଇଁବାକୁ ତ, କେତେବେଳେ କାଠିକୁଟା ଗୋଟାଇ ବାସା ବାନ୍ଧିବାକୁ ପ୍ରସ୍ତୁତ ହୁଏ । ଅସଂଖ୍ୟ ମିଠାମିଠା ଅନୁଭୂତି ସହିତ, ଅଖଣ୍ଡ ପ୍ରତିଶ୍ରୁତି । ତଥାପି ଜୀବନ ଡରାଏ । ବହୁବାଟରେ । ବଞ୍ଚିବାର ସାଧନ ଖୋଜୁଖୋଜୁ କ୍ଳାନ୍ତ ହୋଇପଡ଼େ ଅଞ୍ଜନ । ଆଦ୍ୟା ଭରସା ଦିଏ, ଏମିତି ଭାଙ୍ଗିପଡ଼ିଲେ କି ଚଳିବ, ଜୀବନଟା ଯେ ଗୋଟାଏ ଚ୍ୟାଲେଞ୍ଜ୍ । ଡରିଲେ ସେ ଡରେଇବ ।

ଆଦ୍ୟାର ଖୁବ୍ ସାହସ ଥିଲା । ସେ ଯେତେବେଳେ ତା'ର ସ୍ୱପ୍ନ ନେଇ ଆତଙ୍କିତ ହୁଏ । ପରିଣତି କଥା ଭାବି ହତାଶ ହୁଏ, ଆଦ୍ୟା କ'ଣ ସତରେ ସମସ୍ତ ଆତ୍ମୀୟସ୍ୱଜନଙ୍କୁ ଛାଡ଼ି, ବିଶେଷ କରି ତା' ମା'ଙ୍କୁ ଛାଡ଼ି ଆସିପାରିବ ?

ଆସିଥିଲା ଆଦ୍ୟା । ସମସ୍ତ ପ୍ରତିରୋଧ ପ୍ରତିବନ୍ଧକକୁ ଡେଇଁ, ସେ ଆସିଥିଲା, ତା' ହାତଧରି ବାଟ ଚାଲିବାକୁ । ସେଦିନ ତ ଆକାଶରୁ ଜହ୍ନ ଖସି ପଡ଼ିଥିଲା ତା' ଆଞ୍ଜୁଳାରେ । ପୃଥିବୀଟା ଛୋଟ ହୋଇଯାଇଥିଲା ଆଉ ଆଦ୍ୟା ଅନେକ ବଡ଼ ହୋଇଯାଇଥିଲା ତା' ଆଖିରେ ।

ଆଦ୍ୟା କହୁଥିଲା- "ପ୍ରେମ ପାଇବାକୁ ହେଲେ, ଭୟକୁ ଜିତିବାକୁ ହେବ । ସାହସ ବାନ୍ଧିବାକୁ ହେବ ନିଆଁକୁ ଡେଇଁବା ପାଇଁ ।"

କେବଳ କଥାରେ କହୁ ନଥିଲା ସେ, କରି ଦେଖେଇ ଦେଇଥିଲା ମଧ । ଅଥଚ ଆଜି.... ? ପ୍ରେମର ସେଇ ଛଳଛଳ ନିର୍ଝରିଣୀର ଏଡ଼େ ସୁନ୍ଦର ମନଟା ଏମିତି ନିଷ୍ଠୁର ହୋଇଗଲା କେମିତି ? ଦୀର୍ଘଶ୍ୱାସ ଟାଣିଲା ଅଞ୍ଜନ ।

ପ୍ୟାକେଟ୍ ଭିତରେ ଅଲଗା ଅଲଗା କରି କର୍ପୂରମାଳ, ରଜନୀଗନ୍ଧାର ଗଜରା ସହିତ ସେଦିନର ସିନ୍ଦୂର ଫରୁଆଟା ବି ସାଇତି ରଖିଛି ଆଦ୍ୟା ଯତ୍ନର ସହିତ । ଅଞ୍ଜନ ଆଦରରେ ତାକୁ ଛାତିରେ ଚାପିଧରିଲା ଏବଂ ଫେରିଗଲା ପଛଦିନକୁ ।

ଏମ୍.ଏ. ରେଜଲ୍ଟ ବାହାରିବା ପୂର୍ବରୁ ହିଁ ସେ ଚାକିରିରେ ଯୋଗ ଦେଇଥିଲା, ମେଡ଼ିକାଲ ରିପ୍ରେଜେଣ୍ଟେଟିଭ୍ ଭାବେ । ବଡ଼ ଗୋଟାଏ ଔଷଧ କମ୍ପାନୀରେ । ଚାକିରିଟା ତା' ପାଇଁ ଖୁବ୍ ବଡ଼ ଆଶ୍ୱାସନା ଥିଲା । ଏଣିକି ସେ ସ୍ୱାଧୀନ ଭାବେ କିଛି ଗୋଟାଏ ନିଷ୍ପତ୍ତି ନେଇପାରିବ । କିନ୍ତୁ ଆଦ୍ୟାର ପଢ଼ା ସରିନଥିଲା । ପଢ଼ାଟା ସରିଗଲେ... ଭଲ ହୁଅନ୍ତାନି ?

ନା, ମୁଁ ଆଉ ଅପେକ୍ଷା କରିପାରିବିନି । ତମକୁ ଛାଡ଼ି ମୁଁ ଏକା ରହିପାରିବିନି ଅଞ୍ଜନ । ଆସନ୍ତା ଦୋଳ ତିଥିରେ ମୋ ସୀମନ୍ତରେ ସିନ୍ଦୂର ଲାଗିବ ।

କ୍ୟାଲେଣ୍ଡର ସୀମିତ ଆଲୋକ ଭିତରେ ଅଞ୍ଜନର ମୁହଁ ପ୍ରଫୁଲ୍ଲ ଦିଶିଲା, ସେଦିନର ଉଲ୍ଲାସ କଥା ଭାବୁଭାବୁ ।

ଆଦ୍ୟାକୁ ନେଇ ସେ ମାର୍କେଟିଂ କରିଥିଲା । ଆଦ୍ୟା ନିଜପାଇଁ ଗୋଲାପୀ ବନାରସୀ ବାଛିନେଲା । ସେ କିନ୍ତୁ ଫଗୁ ରଙ୍ଗର ସୁନେଲୀ ଜରିଫୁଲର ବନାରସୀ କିଣିଥିଲା– ଆଜି ମୋ ପସନ୍ଦର ଶାଢ଼ୀ ତୁମେ ପିନ୍ଧିବ । ଦେଖୁନ ଚାରିଆଡ଼ କିମିତି ଫଗୁ ଉଡୁଛି । ଏଇ ଫଗୁଣ ଫଗୁରେ ଫିକା ଗୋଲାପୀ ରଙ୍ଗଟା ତମକୁ ମୋଟେ ସାଜିବନି । ଆଦ୍ୟା କିଛି କହି ନଥିଲା । ତା' ସହିତ କିଣି ଆଣିଥିଲା ଏଇ କପୂର୍ମୋଗ୍ରା ଦି'ଟା ବି । ମହମହ ବାସ୍ନା ପିଙ୍ଗୁଥିଲା ସେଦିନ । ନାକ ପାଖକୁ ନେଇ ଆଘ୍ରାଣ କରିବାକୁ ଲାଗିଲା ଅଞ୍ଜନ । କ୍ଷୀଣ ହେଇଯାଇଛି ବାସ୍ନା । ଆଦ୍ୟା ଆଉ ତା'ର ସମ୍ପର୍କ ଭଳି । ଭାବିଦେଇ ନିଜକଥାକୁ ନିଜେ ସଂଶୋଧନ କଲା ଅଞ୍ଜନ । ଯଦି ଆଦ୍ୟା ସହିତ ସମ୍ପର୍କ ତା'ର କ୍ଷୀଣ ହୋଇଯାଇଛି, ତ ସେ ଏବେ ଭାବୁଛି କାହିଁକି ତା' କଥା ? ଏତେ ଯନ୍ତ୍ରଣା କାହିଁକି ତା' ଭିତରେ ?

ସେଇ ସନ୍ଧ୍ୟାରେ ଦୁହେଁ ଯାଇଥିଲେ ଅନୁପମ ପାଖକୁ, ଖୁସି ଖବରଟା ଜଣେଇବା ପାଇଁ । ଅନୁପମ ତା'ର ଘନିଷ୍ଠ ବନ୍ଧୁ । ଏକା ସ୍ୱଭାବ, ଦୁହେଁ ଦୁହିଁଙ୍କ ସୁଖଦୁଃଖକୁ ବାଣ୍ଟି ନିଅନ୍ତି ପିଲାଦିନୁ । ଏବେବି ବଦଳିନି ଅନୁପମ– ଅଛି ତା' ସହିତ । ତାରି କଥାରେ ହିଁ ସେ ନିଜ ଅଭିମାନ ଛାଡ଼ି ଆସିଛି ଏଇ ଫ୍ଲାଟ୍‌କୁ । ନହେଲେ ତ ସେ ଚାହୁଁନଥିଲା ।

ସେଦିନ ବି ଅନୁପମ ସବୁ ବ୍ୟବସ୍ଥା କରିବାର ଦାୟିତ୍ୱ ନେଇଥିଲା । ଏବଂ ସେଇ ସନ୍ଧ୍ୟାରେ ନିଜଆଡୁ ଖୁଆଇଥିଲା ଦିହିଁଙ୍କୁ ଖୁସିରେ । କହିଥିଲା, ଆହୁରି ବି ଗୋଟାଏ ଗିଫ୍‌ଟ ଅଛି ତୋ' ପାଇଁ । ସରପ୍ରାଇଜ୍ କହିପାରୁ ।

'କି ପ୍ରକାର ସରପ୍ରାଇଜ୍', ପୁଣି ମୋ ପାଇଁ ?

ଗୋଟାଏ ନିମନ୍ତ୍ରଣ, ରବୀନ୍ଦ୍ର ସାଂସ୍କୃତିକ ମଞ୍ଚ ତରଫରୁ ପ୍ରୋଗ୍ରାମ୍ ଅଛି ଓଡ଼ିଶୀ ନୃତ୍ୟର । ତୋତେ ଫୋନ୍ କରିବାକୁ ଯାଉଥିଲି । ତୁ ଆସିଲୁ । ଖୁବ୍ ଭଲ ହେଲା– ସାଥିହୋଇ ଯିବା । ଆଜିଦିନଟା ବି ମେମୋରେବଲ୍ ହେଇ ରହିଯିବ ତୋ' ପାଇଁ ।

ଅନୁପମର ସେଇକଥାଟା ମନେ ପକେଇବାକୁ ଯାଇ ଅଞ୍ଜନ ମନକୁ ମନ ସ୍ୱଗତୋକ୍ତି କଲା । ମେମୋରେବଲ୍ ହେଇ ହିଁ ରହିଗଲା ସତକୁ ସତ । ହେଲେ ଆନନ୍ଦ ବଦଳରେ ନିଆଁଖୁଣ୍ଡା ହିଁ ମାରୁଛି ମନରେ, ଅନୁପମ । ସବୁ କେମିତି ଓଲଟପାଲଟ ହୋଇଗଲା ।

ସେଦିନ ଯଦି ତମସା ସହିତ ତା'ର ମୋଟେ ଭେଟ ହିଁ ହୋଇନଥାନ୍ତା... ତ, ଜୀବନଟା ଆଉପ୍ରକାରେ ସହଜ ସରଳ ସ୍ୱାଭାବିକ ଢଙ୍ଗରେ ଗଡ଼ିଚାଲିଥା'ନ୍ତା ହୁଏତ । ନା, ଆଖିରୁ ନିଦ ହଜିଯାନ୍ତା, ନା ସ୍ୱପ୍ନ ଭାଙ୍ଗି ଚୂରମାର ହୋଇଯାଆନ୍ତା । ଆଜିର ଏଇଦିନ ତାକୁ ଦେଖିବାକୁ ପଡ଼ିନଥାନ୍ତା ହୁଏତ ।

କିନ୍ତୁ ଈଶ୍ୱରଙ୍କ ନିର୍ଦ୍ଦେଶ ଏଇୟା ହିଁ ଥିଲା । ଅନ୍ୟମନସ୍କ ଭାବେ ଏକଥା ଭାବୁଭାବୁ ଚକିତ ବିସ୍ମୟରେ ନିଜକୁ ଚାହିଁଲା ଅଞ୍ଜନ । ବିଶ୍ୱାସ କରିପାରିଲାନି ନିଜକୁ । ଇଏ କିଏ ? ଯାକୁ ତ ସେ ଚିହ୍ନିନି । ଅଞ୍ଜନ କାହିଁ ? ନିଜ ଉପରେ ଅଖଣ୍ଡ ବିଶ୍ୱାସ ରଖିଥିବା ଅଞ୍ଜନ ? ସେ କ'ଣ ଏତେ ଦୁର୍ବଳ ହୋଇପଡ଼ିଛି ଯା ଭିତରେ ? ନା, ନିଜକୁ ଦୋଷମୁକ୍ତ କରିବାକୁ ଯାଇ ଅଦୃଶ୍ୟ ଈଶ୍ୱରଙ୍କ ଆଶ୍ରା ଖୋଜୁଛି ? ନିଜ ଭୁଲଠିକ୍ ବିଚାର କରିବାକୁ ଯାଇ ହଡ଼ବଡ଼େଇ ଯାଉଥିଲା ସେ ।

ଭାବନା ଏଥର ତମସା ପାଖରେ ଯାଇ ପହଞ୍ଚିଲା ।

ସେଦିନ ତିନିହେଁ କଫିହାଉସ୍‌ରେ ବସି ବେଶ୍ ଖୁସିମଜାରେ ଖାଇଥିଲେ । ତା'ପରେ ସିଧା ଯାଇ ପହଞ୍ଚିଥିଲେ ରବୀନ୍ଦ୍ର ମଞ୍ଚରେ । ସମୟହୋଇ ଆସୁଥିଲା.... ଆଲୁଅ ଲିଭିଯାଇଥିଲା ଅଡ଼ିଟୋରିୟ [illegible] । ଘୋଷକ ସୂଚନା ଦେଉଥିଲେ ମଞ୍ଚ ଭିତରୁ । ତରବର ହୋଇ ତିନିଜଣ ଜାଗା ଖୋଜି ବ [illegible] । ବେଶ୍ ଭିଡ଼ଥିଲା । 'ମାନଭଞ୍ଜନ' ପରିବେଷଣ କରିବେ ବିଶିଷ୍ଟ ନୃତ୍ୟାଙ୍ଗନା ତ [illegible] ଶ୍ୱାସରାୟ ।

ପ [illegible] ଉଠିବା ସଙ୍ଗେସଙ୍ଗେ ଆଲୁଅ ଜଳି ଉଠିଲା । ଏକ ବିଶିଷ୍ଟ ମୁଦ୍ରାରେ ମାନିନୀ ଶ୍ରୀରାଧା ଭୂମି [illegible]ରେ ତମସା । ଅଞ୍ଜନ ଚମକି ପଡ଼ିଲା ନିଜ ଭିତରେ ନିଜ ଥ୍ରୀଲ୍‌କୁ ନ ଅଟକେଇ [illegible]ନୁପମକୁ ପଚାରିବା ଆଗରୁ ହିଁ, ଅନୁପମ ତା' କାନପାଖରେ କହିଲା, ଚିହ୍ନିପାରୁଛୁ[illegible]ରେ ଅଞ୍ଜନ ନୃତ୍ୟଶିଳ୍ପୀ ତମସାକୁ ? ତୁମ ଆଶ୍ରମର ଅନ୍ତେବାସିନୀ...ମନେ ପଡୁଛି ?

ଚକିତ ବିସ୍ମୟରେ ଚାହିଁଥିଲା ଅଞ୍ଜନ ମଞ୍ଚ ଉପରେ ଲଳିତ ଛନ୍ଦରେ ହିଲ୍ଲୋଳ ସୃଷ୍ଟି କରୁଥିବା ଶିଳ୍ପୀକୁ । ଚମତ୍କାର । କେତେ ବଦଳିଯାଇଛି ତମସାର ଚେହେରା । ହଠାତ୍ ଚିହ୍ନିହେଉନି । ତୁ ନ କହିଥିଲେ ସମୟ ଲାଗିଥା'ନ୍ତା ଚିହ୍ନିବାକୁ – କହିଲା ଅଞ୍ଜନ ।

ସମୟ ସମସ୍ତଙ୍କୁ ବଦଳେଇ ଦେଇଛିରେ । ଆମେ ସମସ୍ତେ ପରିପକ୍ୱ ହୋଇଯାଇଛେ ବିଚାର, ବୟସ ଓ ଦୃଷ୍ଟିରେ ଉତ୍ତର ଦେଇଥିଲା ଅନୁପମ ସଂକ୍ଷିପ୍ତରେ ।

ପାଖରେ ବସିଥିବା ଆଦ୍ୟା ବିସ୍ମୟ ପ୍ରକାଶ କରି ପ୍ରଶ୍ନ କରିଥିଲା, "କୋଉ ତମସା, ମୁଁ ତ କାହିଁ ଶୁଣିନି କେବେ ତମ ପାଖରୁ ଏଇ ନାଁ..."

'ନା, ଶୁଣିନ କି ଦେଖିନ କେବେ । ସେ ଅନେକ କଥା, ଆଉ କେବେ କହିବି.... । କଥା ବଢ଼ି ନଥିଲା, ତମସାର ନୃତ୍ୟ ସଭିଙ୍କ ମନପ୍ରାଣକୁ ବାନ୍ଧି ରଖିଥିଲା ଅନେକ ସମୟ ପର୍ଯ୍ୟନ୍ତ । ଘନଘନ କରତାଳି ଭିତରେ ପ୍ରୋଗ୍ରାମ୍ ସରିଲା । ଖାଲି ହେଲା ଦର୍ଶକ ଗ୍ୟାଲେରୀ । ଲିଭିଗଲା ପାଦପ୍ରଦୀପ । ସେମାନେ ଅପେକ୍ଷା କରିଥିଲେ ତମସା ସହିତ ସାକ୍ଷାତ୍ କରିବେ ବୋଲି ।

ଆଗରୁ ଅନୁପମ ଚିହ୍ନିଥିଲା ତମସାକୁ । ସଂସ୍କୃତି ବିଭାଗର ଜଣେ ପଦସ୍ଥ ଅଫିସର

ଅନୁପମ । ସେ ହିଁ ଚିହ୍ନେଇ ଦେଇଥିଲା ତମସାକୁ ଅଞ୍ଜନ ସହିତ । ଆଉ, ଇଏ ଆଦ୍ୟା, ଅଞ୍ଜନର ବାନ୍ଧବୀ । ଖୁସିରେ ଉଚ୍ଛୁଳି ଉଠିଥିଲା ତମସା । ସତେଯେମିତି ଆପଣା ମଣିଷକୁ ପାଖରେ ପାଇଛି ଏବଂ ନିମନ୍ତ୍ରଣ କରିଥିଲା ସମସ୍ତଙ୍କୁ ତା' ଘରକୁ ।

ଫେରିବା ବାଟରେ ତମସା କଥା ହିଁ ସେମାନେ ଆଲୋଚନା କରିଥିଲେ । ପୁରୁଣା ସ୍ମୃତି ସତେଜ ହୋଇଯାଇଥିଲା ପୁଣି । ପିଲାଟିଦିନରୁ ତମସା ଭଲ ନାଚେ ବୋଲି, ଫାଦର ତାକୁ ସୁଯୋଗ ଦେଇଥିଲେ ସେଇ ଦିଗରେ ଯିବା ପାଇଁ । ସ୍କୁଲରୁ ଫେରି ପ୍ରତ୍ୟେକଦିନ ସେ ନାଚସ୍କୁଲ ଯାଉଥିଲା, ପଢ଼ାପଢ଼ିରେ ଏତେ ଭଲ କରୁନଥିଲା । ଅନେକ ସାଂସ୍କୃତିକ ଅନୁଷ୍ଠାନରୁ ନିମନ୍ତ୍ରିତ ହୋଇ ନାଚିବାକୁ ଯାଉଥିଲା । ଓଡ଼ିଶୀ ରିସର୍ଚ୍ଚ ସେଣ୍ଟରରେ ଯୋଗ ଦେଲାପରେ ତା' ପ୍ରତିଭାର ଆଶାତୀତ ବିକାଶ ଘଟିଥିଲା । ବିଦେଶ ଯିବାକୁ ସୁଯୋଗ ମିଳିଲା । ପ୍ରତିଷ୍ଠା ବି ଆସିଲା ତା' ସହିତ । ଆଶ୍ରମ ସହିତ ସମ୍ପର୍କ କ୍ରମଶଃ କ୍ଷୀଣ ହେବାକୁ ଲାଗିଲା । ସେଇ ରିସର୍ଚ୍ଚ ସେଣ୍ଟରରେ ହିଁ ତମସାର ଦେଖାହୋଇଥିଲା ବିବସ୍ୱାନ ସହିତ । ବିବସ୍ୱାନ ବିଶ୍ୱାସରାଏ ସେତେବେଳେ ଲୋକସମ୍ପର୍କ ବିଭାଗରେ ଜଣେ ଉଚ୍ଚପଦସ୍ଥ ଅଫିସର ଥିଲେ । ତମସାର ନୃତ୍ୟ ଶୈଳୀ ତାଙ୍କୁ ବିଭୋର କରିଥିଲା । ଦୁହେଁ ପାଗଳ ଥିଲେ ଦୁହିଁଙ୍କ ପାଇଁ । ସମ୍ପର୍କ ନିବିଡ଼ତର ହେଲା । ଏତେ ନିବିଡ଼ ହେଲା ଯେ, ସମାଜର ରୀତିନୀତି, ଶୃଙ୍ଖଳା ପ୍ରତି ଆଖି ବୁଜିଦେଇଥିଲେ ଏବଂ ଉଭୟେ ଏକାଠି ରହିବା ପାଇଁ ସ୍ଥିର କରିଥିଲେ ।

ସେତେବେଳେ ଅଞ୍ଜନ 'ଲିଭ୍ ଟୁଗେଦର' ସମ୍ପର୍କରେ ଶୁଣିଥିଲା । ଆଧୁନିକ ଜୀବନଶୈଳୀର ଏହାଥିଲା ସଦ୍ୟତମ ବିଚାରଧାରା । ଆମଦାନୀ ହୋଇଥିଲା ପାଶ୍ଚାତ୍ୟରୁ । ତମସା ଓ ବିବସ୍ୱାନ ଏଇ ବିଚାରଧାରାକୁ ଆପଣେଇ ନେଇଥିଲେ । ତା'ପରେ ସେ ଆଉ କିଛି ଖବର ରଖିନି । ଅନେକ ଦିନ ଧରି ତମସା ବାହାରେ ଥିଲା । ବାସ୍ । ସଂକ୍ଷିପ୍ତରେ ଅଞ୍ଜନ ଘଟଣାକୁ ଉପସ୍ଥାପିତ କରିଥିଲା । ଆଦ୍ୟା ଆଗରେ । ଏବେ ସେ ଏକ ପୁତ୍ର ସନ୍ତାନର ଜନନୀ ମଧ୍ୟ । କହିଥିଲା, ଅନୁପମ । ଏଇ କଲିକତାରେ ହିଁ ରହୁଛି ।

ତା'ପରେ ଦୀର୍ଘସମୟ ବିତିଯାଇଥିଲେ ସୁଦ୍ଧା, ତମସା ଘରକୁ ଯିବାପାଇଁ ସୁଯୋଗ ମିଳି ନଥିଲା ଅଞ୍ଜନକୁ । ଭୁଲି ଯାଇଥିଲା ତମସା ମାନସପଟରୁ ନୂଆ ଜୀବନର ଉନ୍ମାଦନା ଭିତରେ । ଆଲୋଚନା ବି ସେଇଠି ସରିଥିଲା । ବସାରେ ପହଞ୍ଚି ଯାଇଥିଲେ ସମସ୍ତେ । ଆଦ୍ୟାକୁ ହଷ୍ଟେଲରେ ଛାଡ଼ିଲାବେଳେ ଅନୁପମ ମନେପକେଇ ଦେଇଥିଲା, ଯେମିତି ସେ ପ୍ରସ୍ତୁତ ଥିବ ନିଜେ ଦୋଳପୂର୍ଣ୍ଣିମା ତିଥିକୁ ।

ତା'ର ସପ୍ତାହକ ପରେ ଥିଲା ଦୋଳପୂର୍ଣ୍ଣିମୀ । ତା' ଜୀବନର ସର୍ବଶ୍ରେଷ୍ଠ ସ୍ମରଣୀୟ ଦିନ । ଭାବୁଭାବୁ ଚେତନା ଶିହରିତ ହେଲା । ଆନମନା କରିଦେଲା ତାକୁ । ଲାଗିଲା, ଫ୍ଲାଟ୍‌ର ବନ୍ଦ କୋଠରି ଭିତରେ ନୁହେଁ, ସେ ରାଧାକୃଷ୍ଣଙ୍କ ବିଗ୍ରହ ସମ୍ମୁଖରେ ହିଁ ଯାଇ

ଠିଆହୋଇଛି । ଘିଅଦୀପ ଜଳୁଛି ଦୀପରୁଖା ଉପରେ । ଅଗୁରୁ ଚନ୍ଦନର ବାସ୍ନା ମହକି ଉଠୁଛି । ଧୂପର ସୁଗନ୍ଧରେ ଭରିଯାଇଛି ସମଗ୍ର ପରିବେଶ । ପାଖରେ ଆଦ୍ୟା । ପିନ୍ଧିଛି ତା' ପସନ୍ଦର ଫଗୁରଙ୍ଗୀ ଜରିଫୁଲିଆ ବନାରସୀ । କପାଳରେ ଟିପିଟିପି ଚନ୍ଦନ । ହାତଭର୍ତ୍ତି ନାଲିଚୂଡ଼ି । ସମ୍ମୋହିତ ଅଞ୍ଜନ । ଇଏ ତା' ପ୍ରେୟସୀ ଆଦ୍ୟା, ନା ରାଇବିନୋଦିନୀ- କୃଷ୍ଣପ୍ରିୟା ? ରୋମାଞ୍ଚିତ ଶରୀରରେ ବେପଥୁ ଖେଳିଗଲା । ବିଗଳିତ ହେଉଥିଲା ତନୁମନ । ପୂଜକ ମହାଶୟ ବ୍ୟସ୍ତ ହୋଇ ଉଠିଲେ । ମାଧବଙ୍କ ନୀତି ବଢ଼ିଗଲାଣି, ଏଥର ସେ ଦୋଳଦେବୀଙ୍କୁ ବିଜେ କରିବେ । ଆପଣମାନେ ନିର୍ଦ୍ଧାରିତ କାର୍ଯ୍ୟ ସମ୍ପାଦନ ପାଇଁ ପ୍ରସ୍ତୁତ ହୁଅନ୍ତୁ । ନିକଟରେ ଠିଆ ହୋଇଥିଲା ଅନୁପମ, ବଢ଼େଇଦେଲା କର୍ପୂରମାଳ ଓ ସିନ୍ଦୂର ଫରୁଆ ଥାଳିରେ । ଆହୁରି ଦି' ଚାରିଜଣ ବିଦେଶୀ କୃଷ୍ଣଭକ୍ତ ଠିଆ ହୋଇଥିଲେ ପାଖରେ ଦର୍ଶକ ସାଜି । ପୂଜକ ମହାଶୟ, ଥାଳିରୁ କର୍ପୂରମାଳ ଉଠେଇ ଟିପ୍ପଣୀ କଲେ- ଇଏ ସିନା କର୍ପୂରମାଳ, ହେଲେ ଫୁଲମାଳ କାହିଁ ?

ଅନୁପମ ତରବର ହୋଇ ଆଣିବ ବୋଲି ବାହାରୁଥିଲା, ହଠାତ୍ ପୂଜକ ମହାଶୟ କ'ଣ ଭାବି ତାକୁ ଅଟକେଇ ଦେଲେ । ଏବଂ ବିଗ୍ରହଙ୍କ ଗଳାରୁ ଦୁଇଟି ଗଜରା କାଢ଼ି ବଢ଼େଇଦେଲେ ଆଦ୍ୟା ଆଉ ତା' ହାତକୁ । କହିଲେ- 'ପ୍ରଭୁଙ୍କ ଦିବ୍ୟ ଅନୁଗ୍ରହ, ଆପଣଙ୍କ ଦାମ୍ପତ୍ୟଜୀବନ ମଧୁମୟ ହେଉ । ଦୁହେଁ ଦୁହିଁଙ୍କୁ ମାଳା ପିନ୍ଧେଇ ଦିଅନ୍ତୁ ଏଥର ।

ଆଦ୍ୟା ତା' ବେକରେ ରଜନୀଗନ୍ଧାର ଗଜରା ପିନ୍ଧେଇ ଦେଲା । ଏବଂ ସେ ଧରିଥିବା ମାଳାକୁ ଆଦ୍ୟା ଗଳାରେ ପିନ୍ଧେଇବା ପାଇଁ ଝୁଙ୍କି ପଡ଼ିଲାବେଳକୁ, ହାତରୁ ଖସିପଡ଼ିଲା ଶୁଖିଲା ଫୁଲର ଗଜରାହାର ଚଟାଣ ଉପରେ । ଭାଙ୍ଗିଗଲା ମିଠା ଆବେଶ । ଖସିପଡ଼ିଲା ଅଞ୍ଜନ ଆକାଶରୁ ମାଟି ଉପରକୁ । ରୁଦ୍ଧକୋଠରି ଭିତରେ ପହଁରିଗଲା କରୁଣ ମୂର୍ଚ୍ଛନାଟିଏ, କରୁଣରୁ କରୁଣତର ହେଇ ସତେଯେମିତି ହାତ ବାଜିଗଲା କେନ୍ଦରା ତାରରେ । କାନ୍ଦି ଉଠିଲା ସେ ଚଉତା ବନାରସୀର ପଣତରେ ମୁହଁ ଲୁଚେଇ । ଉଚ୍ଛୁରି ଆସୁଥିବା କୋହକୁ ଚାପିବାର ବୃଥାପ୍ରୟାସ କରିବାକୁ ଯାଇ ତରୁଣ ବିଧୂର ଅଞ୍ଜନ ବିରହୀ ରାମଙ୍କ ଭଳି ବାହୁନି ଶୂନ୍ୟ କୋଠରିର ଧୂଧୂ ବାଲିବନ୍ତ ଉପରେ ଠିଆ ହୋଇ ।

କାହିଁକି ତମେ ଏମିତି ନିଷ୍ଠୁର ହେଲ ଆଦ୍ୟା, ତମେ ନଥିବା ଏଇ ଘରକୁ ମୁଁ ଯେ ସହିପାରୁନି ।

ମହମବତିର ଶିଖା ଦୋହଲି ଉଠିଲା ତା' ଦୀର୍ଘଶ୍ୱାସର ଉଷ୍ଣତାରେ । କିଛି ସମୟ କଟିଗଲା ସେମିତି । ତା'ପରେ ବୁଝେଇଲା ନିଜକୁ । ଯେମିତି ଆଜିଯାଏ ବୁଝେଇ ଆସିଛି । ଲୁହ ପୋଛିଲା, ହେଲେ ସ୍ମୃତିକୁ ସେ ପୋଛିପାରିବନି, ଭୁଲି ପାରିବନି ବି ଆଦ୍ୟାକୁ । ଯେତିକି ସେ ଭୁଲିବ ବୋଲି ଭାବିବ, ସେତିକି ତୀବ୍ରଭାବେ ସେ ଠିଆହେବ ଆସି ତା' ଆଗରେ । ତା' ଛଡ଼ା ସେ କ'ଣ ସବୁ ଭୁଲିଯିବ ବୋଲି ଭଲପାଇଥିଲା ?

ଅଞ୍ଜନ ନିଜ ଦୁର୍ବଳତା ପାଇଁ ଲଜ୍ଜିତ ହେଲା, ଦୁଃଖ କଲା । ଭାବିଲା, ଯାହାହେଉ ବି ତା' ପାଖରେ ଭାବିବା ପାଇଁ ସ୍ମୃତି ଅଛି ତ । ସବୁ ଶେଷ ହୋଇଯାଇନି । ତେବେ ଖାଲିପଣ ଭିତରେ ନିଜେ ବଞ୍ଚିବାକୁ ତାକୁ ଶିଖିବାକୁ ହେବ- ଅନୁପମ ଠିକ୍ କହୁଥିଲା ।

ମହମବତି ଆଡ଼କୁ ନଜର ଗଲା । ସରିଆସୁଛି, ଶୀଘ୍ର କାମ ସାରିବାକୁ ପଡ଼ିବ ତାକୁ । ଯତ୍ନର ସହିତ ଆଦ୍ୟାର ସ୍ମୃତିକୁ ପୁଣିଥରେ ସାଉଁଟି ରଖିଲା । ଯଥା ସ୍ଥାନରେ । ଥାଉ ସବୁ । ଯଦି କେବେ ଆଦ୍ୟା ଆସି ଖୋଜିବ... । ଆଦ୍ୟା ସମ୍ପର୍କରେ ସେ ପୂର୍ଣ୍ଣଚ୍ଛେଦଟିଏ ଟାଣି ପାରୁନଥିଲା ନିଜ ଭିତରେ । ଏଇ ଅପେକ୍ଷାରେ ବି ତ ଆନନ୍ଦ ଅଛି ।

ତରବର ହୋଇ ଲକର ଖୋଲିଲା । ଖୋଜିନେଲା କାଗଜପତ୍ର ଗୋଟିଗୋଟି କରି । ଆବଶ୍ୟକ କାଗଜପତ୍ର । ସାର୍ଟିଫିକେଟ୍‌କୁ ଏକାଠି କରି ଖାମ୍ ଭିତରେ ଭର୍ତ୍ତି କରି ଉଠିଲା ଅଞ୍ଜନ । ଏଥର ସେ ଯିବ । ବତିଟା ଧପ୍‌ଧପ୍ କଲାଣି । ଲିଭିଗଲେ, ଅନ୍ଧାର ମାଡ଼ିଆସିବ, ଅନ୍ଧାରକୁ ତା'ର ଭାରି ଭୟ । ସେ ତ ସବୁବେଳେ ଆଲୁଅ ମାଗିଆସିଛି ଈଶ୍ୱରଙ୍କୁ ।

ଗୋଟିଗୋଟି ଦୁଆର ଝରକା ବନ୍ଦକରି ଚାବିଦେଲା । ଚାବି ଦେଉଦେଉ, ଭାବନାଜଗତରୁ ସିଧାସଳଖ ଓହ୍ଲେଇ ଆସି, ବାସ୍ତବତାର ଦାଣ୍ଡଦୁଆରେ ଠିଆ ହେଲାବେଳକୁ, ହାତ ଘଣ୍ଟିରେ ଆଠଟା ବାଜୁଥିଲା ଏବଂ ଖାଁ ଖାଁ ନିଛାଟିଆପଣମାନେ ତା' ହାତଧରି ଓହ୍ଲେଇ ଆସିଥିଲେ ତା' ସହିତ ଆଉ ଘେରିଗଲେ ତାକୁ ।

ସେ ଛାଟିପିଟି ହୋଇ ସେମାନଙ୍କ ଘେର ଭିତରୁ ନିଜକୁ ମୁକୁଳେଇବାର ପ୍ରୟାସ କଲା । ରାସ୍ତାର ଗହଳି ଭିତରୁ ପାଦ ବଢ଼େଇ ଭାବିଲା, ଆଦ୍ୟା ବିନା ତା' ଜୀବନଟା ଯେ ନିଛାଟିଆ ମରୁଭୂମି- ସେଠି ଖାଲି ବାଲିଝଡ଼, ନିଆଁର ବର୍ଷା । ରକ୍ତମାଂସର ଅଞ୍ଜନ ସିଝି ଯାଉଥିଲା ସେଇ ନିଆଁର ତାତିରେ ।

ମରୁଝରଟାକୁ ଖୋଜୁଖୋଜୁ ପୁଣି ସେ ଫେରିଲା ସେଇ ନୂଆ ବାହାହୋଇଥିବା ଦିନକୁ । ସେତେବେଳେ ବି କମ୍ ଝଡ଼କୁ ସେମାନେ ସାମ୍ନା କରିନାହାନ୍ତି । ବାହାଘର ସିନା ସୁରୁଖୁରୁରେ ହେଇଯାଇଥିଲା, ହେଲେ ପରିସ୍ଥିତି ତ ଅନୁକୂଳ ନଥିଲା । ଆଦ୍ୟାର ପରିବାର ତରଫରୁ ଭୟଙ୍କର ପ୍ରତିରୋଧର ସମ୍ମୁଖୀନ ହେଇଥିଲା ସେ । ଆଦ୍ୟାକୁ ଅର୍ଦ୍ଧାଙ୍ଗିନୀ କରି ଭାବିଥିଲା ତା'ର ଦୀର୍ଘଦିନର ଶୂନ୍ୟପଣ ଭରିଆସିବ, ମା' ଆଉ ମମତା ଦୁହିଁଙ୍କୁ ସେ ପାଇବ । ମା'ର କଲ୍ୟାଣକୁ ନେଇ ଆରମ୍ଭ କରିବ ନୂତନ ଜୀବନ । ଅବସୋସ ମେଣ୍ଟିଯିବ । ହେଲାନି । ସେ ବଞ୍ଚିତ ଥିଲା, ଏବେ ଆଦ୍ୟାକୁ ବି ସେଇ ଅଧିକାରରୁ ବଞ୍ଚିତ କଲା । ଏଇ ଝଗଡ଼ା ଅଶାନ୍ତ ହୋଇ ବହି ଚାଲିଥିବ ତା' ଅନ୍ତଃଚେତନାରେ । ମଝିରେ ମଝିରେ ଦୋହଲାଇ ଦେଉଥିବ ତା'ର ଦମ୍ଭିଲା ପୌରୁଷକୁ । ଅସହାୟ କରିଦେଉଥିବ । ଏଇ ଯେମିତି ସେ ଭାଙ୍ଗିରୁଜି ମାଟିରେ ମିଶିଯାଉଥିଲା ତାର ଛ'ଫୁଟର ଚେହେରାଟା ଖସି ଆସି ତାକୁ ଖର୍ବ କରି ପକେଇଲା, ଠିକ୍ ସେମିତି ।

ତଥାପି... ସେ ସାମ୍ନା କରିଥିଲା ସେଦିନର ଝଡ଼କୁ ଦମ୍ଭର ସହିତ ପାଖରେ ଆଦ୍ୟା ଥିଲା ବୋଲି । ଦୁହେଁ ଥିଲେ ଦୁହିଁଙ୍କ ପାଇଁ । ବୋଉର କଲ୍ୟାଣ ବିନା ଜୀବନ ଆରମ୍ଭ କରିଥିଲେ ବି । ଦୁଃଖ କି ଗ୍ଲାନି ନଥିଲା ଆଦ୍ୟା ମନରେ । ଘରୁ ଅପମାନିତ ହୋଇ ଫେରିଲାପରେ ବି, ସେମିତି ଝଟକୁଥିଲା ତା' ମୁହଁରେ ଆଭା । କହିଥିଲା, 'ଦିନ ଆସିବ, ବୋଉ କହିବ ଆଦ୍ୟା ସୁଖରେ ଅଛି, ଘର ପରି ଘର କରିଛି । ସେଇଦିନ ତମେ ପାଇବ ତମର ମର୍ଯ୍ୟାଦା ଓ ଅଧିକାର । ମୁଁ ଅପେକ୍ଷା କରିଛି ସେଇ ସୁଦିନକୁ । ତମେ ଏମିତି ମୋ' ପାଖରେ ଠିଆ ହୋଇଯାଅ ଅଞ୍ଜନ ମୋର ଦମ୍ଭ ହେଇ- ତେଣିକି ମୁଁ ସବୁ ପାରିବି ।

ଏତେ ଝଡ଼ ଅପମାନକୁ ଯିଏ ଖାତର କରିନଥିଲା, ଏତେ଼ ଟିକିଏ ଛୋଟ କଥାକୁ, ଏତେବଡ଼ କରି କିମିତି ଭାବିପାରିଲା ଆଦ୍ୟା ? ସେ ତ ଏବେବି ସେମିତି ଠିଆ ହୋଇଛି ତା'ପାଖରେ ଦମ୍ଭ ହୋଇ । ଅଞ୍ଜନ ଜନଗହଳି ପୂର୍ଣ୍ଣ ରାସ୍ତାରେ ଚାଲୁଚାଲୁ ଏକୁଟିଆ ବାଟବଣା ହୋଇଯାଉଥିଲା ସତେକି ।

ସେତେବେଳକୁ ଆଦ୍ୟାର ପଢ଼ା ସରିଯାଇଥାଏ । ନୂଆ ଚାକିରିରେ ଯୋଗ ଦେଇଥାଏ ଏଇ ସହରରେ, ଗୋଟିଏ କମ୍ପ୍ୟୁଟର ଟିଚିଂ ସେଣ୍ଟରରେ । ଏବଂ ସେ ଥାଏ କଲିକତାରେ । ଦିନେ ଅଚାନକ ଫୋନ୍ କଲ୍ ଆସିଲା ତମସା ପାଖରୁ । ଯଦିଓ ଆଶ୍ଚର୍ଯ୍ୟ ହେବାର କିଛି ନଥିଲା, ତେବେ, ଏତେଦିନ ପରେ କାହିଁକି ଖୋଜିଲା ତମସା ତାକୁ । ସେ ଯାଇପାରିନି ବୋଲି, ମନେ ପକେଇବାକୁ ? କେଜାଣି ।

ଫୋନ୍ ଧରୁଧରୁ ତମସା ଅଭିମାନର ବୋଝ ଓହ୍ଲେଇଲା । କେମିତି ଭୁଲିଗଲ ଅଞ୍ଜନ । ସାଧାରଣ କଥାବାର୍ତ୍ତା ପରେ ନିମନ୍ତ୍ରଣ । ଥରେ ଆସ, ଅନେକ କଥା ଅଛି କହିବାକୁ । ଶେଷକୁ ଲାଗିଲା ତମସାର କଣ୍ଠସ୍ୱର ଭାଙ୍ଗିପଡୁଛି ଯେମିତି, ଫୋନ୍ ବି ସେ କାଟି ଦେଇଥିଲା ।

ସତରେ ଆଶ୍ଚର୍ଯ୍ୟ ଲାଗିଥିଲା ତାକୁ ସେତିକିବେଳେ । କ'ଣ ସେଇ ଅନେକ କଥା ? ତମସା ଘରକୁ ଗଲା ପର୍ଯ୍ୟନ୍ତ ତାକୁ ବ୍ୟତିବ୍ୟସ୍ତ କରି ପକେଇଥିଲା ସେହି ରହସ୍ୟମୟ ଶବ୍ଦଟା । ଭାବନାବାଟରେ ଚାଲୁଚାଲୁ କ୍ଳାନ୍ତ ହେଇ ପଡ଼ିଥିଲା ଅଞ୍ଜନ । ଭାବିଲା, ସାମ୍ନାର କେବିନ୍ ଦୋକନରୁ ଚା' ଖାଇଲେ ସତେଜ ଲାଗିବ ଟିକିଏ ଏବଂ ଠିଆ ହୋଇଗଲା ଚା' ଦୋକାନ ଆଗରେ । ଚିହ୍ନା ଦୋକାନୀ ବଢ଼େଇଦେଲା କପେ ଚା' ହାତକୁ । କହିଲା– ଏତେ ରାତିରେ ବାବୁ ଚା' ଖାଉଛନ୍ତି ଯେ, ଦେହ ଭଲ ଲାଗୁନି କି ?

ଭଲ ଅଛି ଯେ, କାମ ଥିଲା ଟିକିଏ, ସନ୍ଧ୍ୟାବେଳେ ଚା' ଖାଇନି ତ.... କହିପାରିଲାନି ଯେ, ମନଟା ଅସ୍ଥିର, ଭଲ ଲାଗୁନି । ଚା' ବି ଭଲ ଲାଗିବନି । ଦି' ଢୋକ ପାଟିକି ନେଇ ଥୋଇଦେଲା କପ୍ - ଆଗକୁ ବଢ଼େଇଲା ପାଦ । ପଛୁଆଣି ଭାବନା ପୁଣି ହାତ ଧରି ଚାଲିଲା ତା' ସହିତ ।

ସତକୁ ସତ ତମସା ଖୁବ୍ ଏକୁଟିଆ ଅସହାୟ ହୋଇପଡ଼ିଥିଲା । ତାକୁ ଦେଖି ପିଲାଙ୍କ ପରି କାନ୍ଦି ଉଠିଲା । ତାକୁ ଆଶ୍ଚର୍ଯ୍ୟ ଲାଗିଥିଲା । ଘଟଣା କ'ଣ ? ଉଦୀୟମାନ ନୃତ୍ୟଶିଳ୍ପୀ ଆଖିରେ ଏ ଲୁହର ବନ୍ୟା ! ଶୁଣିଥିବା, ସେଇ 'ଅନେକ କଥା'ଟା ବିରାଟ ଅଜଗର ରୂପ ନେଇ ଏବେ ତମସାକୁ ଗିଳିବାକୁ ବସିଛି । ତମସା ପାଖରେ ସବୁକଥା ଶୁଣି ସ୍ତବ୍ଧ ହୋଇଯାଇଥିଲା ତା' ଚେତନା । ବିବସ୍ୱାନ ବିଶ୍ୱାସରାଏ ତାକୁ ଧୋକା ଦେଇଛି । ପ୍ରତିଶ୍ରୁତି ଭାଙ୍ଗିଛି । ମୁହଁ ଫେରେଇ ନେଇଛି । ଏତେବର୍ଷର ସମ୍ପର୍କ.... ଏବଂ ବିଶ୍ୱାସର ମେଘନାଦ ପାଚେରି ଡେଇଁ ପଶିଆସିଛି 'ଇଗୋ' ଅସୁର । ବିପର୍ଯ୍ୟସ୍ତ ହୋଇଯାଇଛି ତମସାର ସଂସାର ।

ସଂସାର ! ହଁ, ସଂସାର ନୁହେଁ ତ ଆଉ କ'ଣ । ନାରୀ ଓ ପୁରୁଷ ଏକାଠି ଗୋଟିଏ ଛାତ ତଳେ ଯେତେବେଳେ ଦିନରାତି ବିତାଉଛନ୍ତି ଏବଂ କୋଳକୁ ପିଲାଟିଏ ବି ଆସିଛି- ଦୁନିଆ ତାକୁ ସଂସାର କହିବନି ଆଉ କ'ଣ କହିବ ?

ହେଲେ ଅଜବ କଥା ଏହି ଯେ, ଏଇ ସଂସାରରେ ସମାଜ କି ପରିବାର କାହାର ବି ମୁଦ ଲାଗିନଥିଲା । ପଶ୍ଚିମାରୀତିରେ ଲିଭ୍ଇନ୍ ଟୁଗେଦର ରିଲେସନ୍‌ସିପ୍ ପାଇଁ କାହାର ସମର୍ଥନ ସ୍ୱୀକୃତି ଅଥବା କାଳିମୁଦର ଆବଶ୍ୟକତା ନଥିଲା । ଦୁଇଟି ଦେହ-ମନ ଏକାଠି ହେଲେ ହିଁ ହେଲା । ସେଇ ବିଶ୍ୱାସ ଓ ଭରସା ଦେଇଥିଲା ବିବସ୍ୱାନ । ସ୍ୱପ୍ନ ଦେଖେଇଥିଲା ବି । ସେଇ ସ୍ୱପ୍ନରେ ଭାସୁଭାସୁ ଦିନେ ସବୁ ଛାଡ଼ିଛୁଡ଼ି ବିବସ୍ୱାନର ହାତଧରି ଆଶ୍ରମ ଛାଡ଼ିଥିଲା ତମସା । ଆଗପଛ କି ପରିଣତି କଥା କିଛି ଭାବିନି । ଭଲପାଇବାର ଦୁର୍ଗ ଭିତରକୁ ପରିଣତି ବା ଆଗପଛ କଥା କାହିଁକି ଓ କେମିତି ପଶିଥା'ନ୍ତା ଅଞ୍ଜନ । ତମସା କହିଥିଲା, ବିବସ୍ୱାନ ହିମାଳୟ ପରି ଠିଆ ହେଉଥିଲେ ମୋ ଆଗରେ । ଆଗରୁ ସେ ଏମିତି ନଥିଲେ ।

ସେ ଜାଣିଥିଲା, ତମସାର ସଫଳତାର ପ୍ରଚ୍ଛଦପଟ ନାୟକ ବିବସ୍ୱାନ ହିଁ ଥିଲା । ତାର ଅନ୍ତର୍ନିହିତ ପ୍ରତିଭାକୁ ଚିହ୍ନି ତାକୁ ଏକ ମର୍ଯ୍ୟାଦାଜନକ ସ୍ଥିତିରେ ପହଞ୍ଚାଇବା ଦିଗରେ ତା'ର ଭୂମିକା ଯଥେଷ୍ଟ । ଅଥଚ ସଫଳତାର ଶୀର୍ଷ ଛୁଇଁଲାବେଳକୁ ବିବସ୍ୱାନ ଈର୍ଷାନ୍ୱିତ ହୋଇପଡ଼ିଲା । ବିଶ୍ୱାସ ହୁଏନା, ତଥାପି ଏହା ସତ୍ୟ । କ'ଣ ହୋଇପାରେ ଯା ପଛରେ ମନସ୍ତାତ୍ତ୍ୱିକ କାରଣ- ସେ ତ ବୁଝିପାରୁ ନଥିଲା । ତାଙ୍କ ପରିବାର ଏ ପ୍ରକାର ସମ୍ପର୍କକୁ ସ୍ୱୀକାର କରୁଥିଲେ ? ଅନ୍ୟମନସ୍କ ଭାବେ ପଚାରିଦେଲା ଅଞ୍ଜନ ତମସାକୁ ।

– ନା, ସମର୍ଥନ ନ ଥିଲା ସତ । ବିବସ୍ୱାନ ନିଜେ ଯେତେବେଳେ ମୋ ସହିତ ଥିଲେ, ମୋର ଆବଶ୍ୟକତା କ'ଣ ଥିଲା ପରିବାର, ଅଥବା ସମାଜ କଥା ଚିନ୍ତା କରିବା ? ବିବୁଧ ଆସିଲା ପରେ ଆମ ସମ୍ପର୍କ ଆହୁରି ଘନିଷ୍ଠ ହେବା କଥା ତ, କାରଣ ସେ ହିଁ ଯୋଡ଼ିଦେଇଥିଲା ଆମ ସମ୍ପର୍କକୁ ନିବିଡ଼ତର କରି ।

– ନା, ତମସା, ଏଇଟା ତମର ଭୁଲ ଧାରଣା । ବିବୁଧକୁ ଏଇ ଯୋଡ଼ିବାର ଅଧିକାର

ସମାଜ ଦେଇନି । ଏବେବି ସେଇ ଅଧିକାର ସମାଜ ନିଜ ହାତରେ ରଖିଛି । କଥା ଦିନେ ଅନୁପମ ହିଁ ତାକୁ କହିଥିଲା । ପ୍ରେମରେ ପାଗଳ ଦୁଇଟି ମନ ସମ୍ପର୍କର ଗୁରୁଦାୟିତ୍ୱ କଥା ମନେ ରଖନ୍ତି ନାହିଁ । ଏ ପାଗଳାମୀ କମି ଆସିଲେ ଦାୟିତ୍ୱ ବୋଝଟା ବୋଝ ହେଇ ସବାର ହୁଏ- ଏ କଥାର ଯଥାର୍ଥତା ଆଜି ଅନୁଭବ କରିପାରୁଛି ସେ । ଏ ବନ୍ୟ ସମ୍ପର୍କର କିଛି ମାନେ ନାହିଁ ସମାଜ ପାଖରେ । ବିବୁଧକୁ ସ୍ୱୀକାର କରିବନି ସମାଜ । ଆମେ ନିଜେ କ'ଣ ତା'ର ଉଦାହରଣ ନୁହଁ ତମସା ? ଯୋଉ ଯୁକ୍ତି ଦେଇ ତମେ ସମ୍ପର୍କକୁ ପ୍ରତିଷ୍ଠା କର ପଛକେ- ସମାଜ ସ୍ୱୀକାର କରିବନି । ଆଉ ବିବସ୍ୱାନ ଶେଷ ମୁହୂର୍ତ୍ତରେ ସମାଜକୁ ସାମନା କରିନପାରି ପଛଘୁଞ୍ଚା ଦେଲା । ଏବଂ ଘଟଣା ଦୁର୍ଘଟଣାରେ ପରିଣତ ହେଲା । ଭଲପାଇବାର ମଧୁନିଶା କଟିଗଲାପରେ, ବାସ୍ତବତାର ନଗ୍ନରୂପ ଠିଆହେଲା, ଜୀବନର କଙ୍କରିତ ରାସ୍ତାରେ । ପ୍ରେମିକରୁ ସ୍ୱାମୀରେ ରୂପାନ୍ତରିତ ହେଲା ବିବସ୍ୱାନର ଚେତନ ପୌରୁଷ । ସେଠି ପ୍ରଭୁତ୍ୱ ଅଧିକାରବୋଧ ସହିତ ଅହଂକାରର ତୀବ୍ର ପରିପ୍ରକାଶ ଘଟି ତମସା ଜୀବନକୁ ଆହୁରି ତମସାୟିତ କରିଦେଲା ।

ବିବସ୍ୱାନ ମୋତେ ବେଶ୍ ଡୋମିନେଣ୍ଟ କରିବାକୁ ଚେଷ୍ଟା କରୁଥିଲେ । କ'ଣ ଖାଇବି, କେମିତି ପିନ୍ଧିବି, କାହା ସଙ୍ଗେ କଥା କହିବି ନ କହିବି, କୋଉ ପ୍ରୋଗ୍ରାମକୁ ଆକ୍ସେପ୍ଟ କରିବି- ସବୁକଥାର ନିଷ୍ପତ୍ତି ସିଏ ନେଉଥିଲେ । ମୁଁ କିଛି କହୁନଥିଲି ଅଞ୍ଜନ । ବିବୁଧ ଆସିଲାପରେ ତାଙ୍କର ବ୍ୟବହାରରେ ପରିବର୍ତ୍ତନ ଆସିଲା । ସେ ଯେମିତି ଚାହୁଁ ନଥିଲେ ବିବୁଧ ଆସୁ । ବିବୁଧ ପାଇଁ ତାଙ୍କର ଦାୟିତ୍ୱ କଥା ମୁଁ ବାରମ୍ବାର ମନେପକାଇ ଦେଉଥିଲି - ଆଉ ସେ ଖାପଛଡ଼ା ରହୁଥିଲେ । ଦିନେ କହୁକହୁ କହିବି ପକେଇଲେ, ତମେ ଆଣିଛ ବିବୁଧକୁ ଯେତେବେଳେ ଦାୟିତ୍ୱ ବି ତମର, ମୋର କାହିଁକି ହେବ ? ତମସା ଶୂନ୍ୟଦୃଷ୍ଟିରେ ବିଳବିଳଉଥିଲା ସତେକି । ମୁଁ ଚମକିଉଠିଲି ଅଞ୍ଜନ..... ମୋତେ ଲାଗିଲା, ମୁଁ ଠକି ହୋଇଯାଇଛି ।

ସତରେ ତମସା ଠକି ହୋଇଯାଇଥିଲା । ବିବସ୍ୱାନ ଘରକୁ ଆସୁନଥିଲା । ପିଲାଟିର ବହୁବିଧ ସମସ୍ୟା ଥିଲା । ବିବସ୍ୱାନ ଥିଲାବେଳେ ତମସା ଆପଣାମଣିଷର ଅଭାବଟା ଅନୁଭବ କରୁନଥିଲା, ଏବେ ସେଇ ଅଭାବଟା ବିରାଟ ଆକାର ହୋଇ ଦେଖାଦେଇଛି । ଅଥଚ ତା'ପାଖରେ ସବୁକିଛି- ଅର୍ଥ, ପ୍ରତିଷ୍ଠା, ପ୍ରତିପତ୍ତି, ସଫଳତା ସବୁକିଛି । କେବଳ ଆପଣାର ହେଇ କେହି ନଥିଲେ । ବାହାରେ ପ୍ରୋଗ୍ରାମ ପାଇଁ ନିମନ୍ତ୍ରଣ ଆସୁଥିଲା । ସେ ଗ୍ରହଣ କରିପାରୁ ନଥିଲା ପରିସ୍ଥିତି ଚାପରେ । ଏ ସମସ୍ତ ସଙ୍କଟ ଭିତରେ ଅଗତ୍ୟା ଅସହାୟ ହୋଇ ଖୋଜିଥିଲା ଅଞ୍ଜନକୁ । ସଂସାରଟା ଯାକ ମଣିଷ ହାଉଯାଉ ଅଥଚ ସବୁଆଡ଼ ଅଣ୍ଡାଳି ସାରିଲାପରେ ଦେଖିଲି ମୋର ହୋଇ କେହି ନାହିଁ । ସେତିକିବେଳେ ତୁମେ ମନେ ପଡ଼ିଲ ଅଞ୍ଜନ । ତମକୁ ନ ଡାକି ମୋର ଆଉ କି ଉପାୟ ଥିଲା ? ତମକୁ ହିଁ ତ ଭାଇ ବୋଲି ଚିହ୍ନିଛି ପିଲାଟି ଦିନରୁ ।

ଭାବିଥିଲି, ବିବସ୍ୱାନ ମୋତେ ସବୁ କିଛି ଦେଇଛନ୍ତି- ଘରସଂସାର, ପରିଚୟ, ଭବିଷ୍ୟତ ଆଉ ସମ୍ପର୍କର ବନ୍ଧନ । ହେଲେ ଆଜି ସବୁ ମିଛ ହୋଇଗଲା । ବିବୁଧର ଭାଗ୍ୟ ବି ମୋରି ଭାଗ୍ୟ ସହିତ ଯୋଡ଼ି ହୋଇଗଲା ଅଞ୍ଜନ- ବିକଳ ହେଇ କାନ୍ଦିଥିଲା ତମସା, ସ୍ଥାୟୀ ଠିକଣାଟି ରହିଲାନି ବୋଲି । ବିବୁଧକୁ ପରିଚୟ ମିଳିଲାନି ବୋଲି ।

ଏଇ ପରିସ୍ଥିତିରେ ସେ ଆଉ କ'ଣ କରିଥାନ୍ତା ? କ'ଣ କରିବା ଉଚିତ ଥିଲା ? ଅସହାୟ ନାରୀଟିକୁ ଆଡ଼େଇ ମୁହଁ ଲୁଚାଇଦେଇ ଆସିପାରନ୍ତା ? ଯଦି ତମସା ତା' ନିଜର ଜନ୍ମିତ ଭଉଣୀ ହୋଇଥା'ନ୍ତା ! ଅମାନବିକ ହୋଇନଥାଆନ୍ତା ? ମଣିଷ ହିସାବରେ ଅସହାୟା ନାରୀ ଆଉ ଶିଶୁଟି ପାଇଁ ତା'ର ତ କିଛି କହିବା ଦାୟିତ୍ୱ ଥିଲା ନା ।

ସେଇ ଦାୟିତ୍ୱ ହିଁ ସେ ତୁଲେଇଛି । ଅମଣିଷ, ସ୍ୱାର୍ଥପର ହୋଇପାରିନି । ହଁ, ଏକଥା ସତ ଯେ, ଆଦ୍ୟା ସହିତ ସେ ଆଲୋଚନା କରିନି ଏ ବିଷୟରେ । ପତ୍ନୀ ହିସାବରେ ସବୁକଥା ଜାଣିବାର ଅଧିକାର ତା'ର ଅଛି । କୌଣସି ପ୍ରକାରର ଗୋପନୀୟତା ରହିବା ଉଚିତ ନୁହେଁ ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ, କାରଣ ଏଇ ଦୁର୍ଲଭ ସମ୍ପର୍କ ବିଶ୍ୱାସ ଆଉ ସ୍ୱଚ୍ଛତା ଉପରେ ହିଁ ପ୍ରତିଷ୍ଠିତ । ଜାତି, କୁଳ, ଗୋତ୍ର, ପ୍ରତିଷ୍ଠା, ପଦମର୍ଯ୍ୟାଦା କେହିବି ଏଇ ସମ୍ପର୍କକୁ ଦୃଢ଼ଭାବରେ ବାନ୍ଧିପାରିବାର ସମର୍ଥ ନୁହଁନ୍ତି । ବୁଝେଇଥିଲା ଅନୁପମ ତାକୁ ଏବଂ ଆଦ୍ୟାକୁ ।

ହେଲେ ଆଦ୍ୟା ବୁଝିବାକୁ ପ୍ରସ୍ତୁତ ନଥିଲା । ତା'ର ଏକା ଜିଦ୍ ଅଞ୍ଜନ ବିଶ୍ୱାସ ଭାଙ୍ଗିଛନ୍ତି ।

ତମସା ବି ତ ଏଇ ବିଶ୍ୱାସକୁ ନେଇ ତା' ପାଖରୁ ସାହାଯ୍ୟ ଲୋଡ଼ିଥିଲା । ସେ ଯେ ବିଶ୍ୱାସ ଭାଙ୍ଗିନି, କେମିତି ବୁଝେଇବ ଆଦ୍ୟାକୁ ? ଏକଥା ବି ସତ ଯେ, ସେଇ କ୍ରାଇସିସ୍ ବେଳେ ସେ ଆଦ୍ୟା ପାଇଁ ବେଶି ସମୟ ଦେଇପାରିନି, ତମସା ଆଉ ତା' ପୁଅ ପାଇଁ ବ୍ୟସ୍ତ ରହି ଯାଇପାରିନି ଆଦ୍ୟା ପାଖକୁ । ବାସ୍, ଏଇ ଭୁଲ୍ ହିଁ ସେ କରିଛି, ଯଦି କରିଛି... ।

ସେ ଭାବିପାରିନି ମଧ୍ୟ, ଆଦ୍ୟା ଆଉ ତା' ଭିତରେ କିଛି ଫରକ ଥାଇପାରେ ବୋଲି । ଏବେବି ଭାବିପାରୁନି, ଆଦ୍ୟାଠୁ ସେ ଭିନ୍ନ ବୋଲି । ଏବେବି ତା' ଭିତରେ ବିଶ୍ୱାସର ଦୀପ ଜଳୁଛି । ଆଦ୍ୟା ଫେରିବ ତା'ର ଜିଦ୍ ନରମିଗଲେ । ଗୋଟାଏ ଦସ୍ତଖତ, ଟୁକୁରାଏ କାଗଜର କ୍ଷମତା ନାହିଁ, ଅଖଣ୍ଡ ବିଶ୍ୱାସ ଭିତ୍ତି ଉପରେ ଠିଆ ହେଇଥିବା ଏଇ ପବିତ୍ର ସମ୍ପର୍କରେ ଗଣ୍ଠିକୁ ଛିଣ୍ଡେଇ ଦେଇପାରିବ । ପୁଣି ଏଇ ଗଣ୍ଠିକୁ ଆହୁରି ଟାଣ କରିଦେଇଛି 'ଭବ୍ୟା' ।

ଭାବନାର ବାଟଚଲା ଶେଷ ହୋଇଗଲା । ବସାଘରେ ପହଞ୍ଚି ଘରର ଚାବି ଖୋଲିଲା । ଗୋଡ଼ହାତ ଧୋଇ ପୋଷାକ ବଦଳେଇଲା । ଗୋଡ଼ର ମାଂସପେଶୀମାନେ କ୍ଳାନ୍ତ ହୋଇପଡ଼ିଥିଲେ । ଫ୍ୟାନ୍ ସୁଇଚ୍ ଅନ୍ କରି ଖଟ ଉପରେ ଚିତ୍ ହୋଇ ପଡ଼ିଗଲା ସେ ।

ପେଟ ଖାଲି- ହାଇ ତୋଳି ଭାବିଲା, ଫେରିଲା ବାଟରେ ଖାଇଦେଇ ଆସିଥିଲେ ଭଲ ହୋଇଥା'ନ୍ତା । ଭୁଲିଗଲା, ଛାଡ଼ । ଆଉ କୁଆଡ଼େ ଯିବାର ଇଚ୍ଛା ନଥିଲା । ଟେବୁଲ ଉପରେ ଥୁଆ ହୋଇଥିବା କଦଳୀ ଦି'ଟା ଖାଇ ପାଣି ପିଇନେବ । ଚଳିଯିବ ରାତିଟା । ଅସାଢ଼ ଦେହଟାରେ ଛାଇଛାଇ ନିଦ, ନିଃଶ୍ୱାସ ଲମ୍ବା ହେଉଥିଲା କ୍ରମଶଃ....

'ପେଟ ପଛେ ଗଁ ଗଁ ଡାକୁଛି... ଭାବନା ରାଜ୍ୟରେ ପଶିଲେ ଭୋକକଥା ମନେ ପଡ଼ିବନି । କି ମଣିଷ ତମେ କେଜାଣି । ତମକୁ ଭୋକ ଲାଗୁଛି ବୋଲି ଯେମିତି ମୁଁ ମନେ ପକେଇବି । ହେ ଭଗବାନ୍ ! ନିତିଦିନର ବ୍ୟସ୍ତତା ଆଦ୍ୟାର । ଅଧାଦିନ ଅଧାଚିଆଁ ସ୍ଥିତିରେ ଅଞ୍ଜନ ଉପଭୋଗ କରୁଥିଲା, ଆଦ୍ୟାର ମଧୁର ବିରକ୍ତିକୁ । ଏବଂ ପଶି ଯାଉଥିଲା ଗଭୀର ନିଦ ରାଇଜକୁ । କାନରେ ପଡ଼ିଲା କାହାର ମିଠାମିଠା ଡାକ- "ବାପା... ଉଠ, ଖାଇବ ପରା । ଉଠୁନ... ବାପା ।"

ଚମକି ପଡ଼ିଲା ଅଞ୍ଜନ ନିଦ ବାଉଳାରେ । ଆଖିପତା ଖୋଲୁ ନଥିଲା । ଖୋଲିବାକୁ ଯାଇ ସେ ଯାହାକୁ ଦେଖିଲା ତଟସ୍ଥ ହୋଇଗଲା ।

ଇଏତ କୁନି ପରୀଟିଏ । ଝଲସି ଉଠୁଛି ରୂପଲାବଣ୍ୟ । ନୀଳ ଜ୍ୟୋସ୍ନାର ଆଲୁଅ ବିଛେଇ ହେଇ ପଡ଼ିଛି ଘରଟା ସାରା । ମହମହ ବାସ୍ନା । ହାତରେ ସୁନାର କୁହୁକ କାଠି- ତା' ମୁହଁ ଉପରେ ମୁହଁ ଥୋଇ ଉଠଉଛି ନିଦରୁ । ଡାକୁଛି ବାପା ବାପା ବୋଲି । କିଏରେ ତୁ ନୀଳପରୀ ? ଆଖିରେ ବିସ୍ମୟର ପ୍ରଶ୍ନବାଚୀ ।

ଚିହ୍ନିପାରୁନ, ମୁଁ ପରା ଭବ୍ୟା । ଏଠି କାହିଁକି ଶୋଇଛ, ଚାଲଯିବା ଆମ ଘରକୁ ।

ଧଡ଼ପଡ଼ ହୋଇ ଉଠିବସିଲା ଅଞ୍ଜନ । ଫୋନ୍‌ଟା ଗର୍ଜୁଥିଲା ବାରମ୍ବାର ବୋଧେ ଅନେକବେଳୁ । କେଡ଼େ ନିଦରେ ଶୋଇପଡ଼ିଛି ସେ । ମିଠା ସ୍ୱପ୍ନଟିଏ ଦେଖୁଥିଲା, ନିଦ ଭାଙ୍ଗିଦେଲା ଏଇ ଫୋନ୍ । ବିରକ୍ତ ଲାଗିଲା ତାକୁ - ବାଧ୍ୟ ଛାତ୍ରଭଳି ଫୋନ୍ ଉଠେଇଲା - ସେପଟୁ ଅନୁପମର ଗଳା - ଶୋଇପଡ଼ିଥିଲୁ ଅଞ୍ଜନ, ନିଦ ଭାଙ୍ଗିଦେଲି ନା ?

'ସ୍ୱପ୍ନ ଭାଙ୍ଗିଦେଲୁ'... ବିଭୋର ହୋଇ କହିଲା ଅଞ୍ଜନ ସ୍ୱପ୍ନ କଥା ।

ସବୁଶୁଣି ଅନୁପମ କହିଲା– ଅଭିମାନ ଛାଡ଼ି ଥରେ ଆଦ୍ୟା ପାଖକୁ ଯାଇପାରିବୁନି ତୁ ଅନ୍ତତଃ ଭବ୍ୟା ପାଇଁ ? ଆଦ୍ୟା ଚାହୁଁଥିବା କାଗଜପତ୍ର କାହା ହାତରେ ନ ପଠେଇ ତୁ ନିଜେ ନେଇଯା' ଅଞ୍ଜନ । ଦେଖିବୁ, ଅଭିମାନର ପାହାଡ଼ ଭାଙ୍ଗିଯିବ ଆଦ୍ୟାର- ଭୁଲିଯା' ସେପାରେସନ୍ କାଗଜ କଥା । ମୋ କଥା ଶୁଣ୍ .... ପ୍ଲିଜ୍ ।

କ'ଣ କହିବାକୁ ଯାଉଥିଲା ଅଞ୍ଜନ... ହେଲେ ତାକୁ କହିବାକୁ ନ ଦେଇ ଅନୁପମ କହିଲା- ଗଲାବେଳେ ଖାଲି ହାତରେ ଯିବୁନି । ଭବ୍ୟା ପାଇଁ କିଛି ଗିଫ୍‌ଟ ନେଇଯିବୁ ନିଶ୍ଚୟ, ହେଲା ? ଫୋନ୍ ରଖିଦେଲା ଅନୁପମ ।

ଅଞ୍ଜନ ଭାବିଲା, ଅନୁପମର ଅନୁରୋଧ ତ ନୁହେଁ ଏକ ପ୍ରକାର ଆଦେଶ । ଅବଶ୍ୟ ତା' ଆବେଗକୁ ଛୁଇଁଲା ଭଳି କଥା କହିଛି । ସେ ବି ଚାହୁଁଥିଲା ମନେମନେ । ଚାହୁଁଥିଲା, ତା' ବିଚାରକୁ କେହି ଜଣେ ସମର୍ଥନ କରୁ । ଅଭିମାନ ଭାଙ୍ଗିବାକୁ ଅନ୍ତତଃ ବାହାନାଟିଏ ମିଳିଯାଉ । ଭବ୍ୟାକୁ ଦେଖିବା ପାଇଁ ଉଚ୍ଛନ୍ନ ହେଉଥିଲା ମନ । ଅନୁପମ ଶୁଣିପାରିଲା ଯେମିତି ତା' ମନ କଥା । ତା'ଛଡ଼ା ଆଦ୍ୟାର କ'ଣ ଏ ଯାଏ ଅଭିମାନ ଦାନା ବାନ୍ଧିଥିବ । ତଳରିଯିବା ଆରମ୍ଭ ହୋଇଯାଇଥିବ । ହୁଏତ ସେ ବି ଚାହୁଥିବ, ଅଞ୍ଜନ ପ୍ରଥମେ ଆସୁ ତା' ପାଖକୁ ।

ଅନେକ ଯୁକ୍ତି ଦେଇ ଭାବିଲା ଅଞ୍ଜନ ରାତିସାରା । ହଁ-ନାହିଁର ଦ୍ୱନ୍ଦ୍ୱ ଦୋଳନ ଭିତରେ ରାତି ପାହିଲା । ମନର ସବୁ ଧୂଳିମଳି ଧୋଇ ହେଇଗଲା ସକାଳର କାକରରେ । ସ୍ୱାଗତ କଲା ଅଞ୍ଜନ ନୂଆ ସକାଳକୁ । କାମନା କଲା- ଏ ସକାଳ ତା' ପାଇଁ ଶୁଭଙ୍କର ହେଉ, ତା' ପାଇଁ ପାରିବାରିକ ଜୀବନଟିଏ ଆଣିଦେଉ । ଆଣିଦେଉ ତା'ର ଭବ୍ୟାକୁ, ତା'ର ଆଦ୍ୟାକୁ ।

ଏଥର ସେ ପ୍ରସ୍ତୁତ ହେଲା ଯିବାପାଇଁ । ମନେ ପଡ଼ିଲା ଅନୁପମର କଥା । 'ଭବ୍ୟା' ପାଇଁ ଗିଫ୍‌ଟ, କ'ଣ ନେବ ତା' କୁନି ପରୀ ପାଇଁ ଗିଫ୍‌ଟ । ତାକୁ ସାଜିଲା ଭଳି କିଛି ଗିଫ୍‌ଟ ନାହିଁ ଏ ସଂସାରରେ । ତାକୁ ଲାଗିଲା ଏମିତି । ସେତିକିବେଳେ ମନେପଡ଼ିଲା ଫ୍ଲାଟ୍ କଥା । ଭବ୍ୟା ପାଖକୁ ଯିବା ପୂର୍ବରୁ ସେ ଫ୍ଲାଟ୍‌କୁ ଯିବ ।

ଅଞ୍ଜନ ସିଧାସିଧା ଚାଲିଲା ଭବନଗର ଫ୍ଲାଟ୍ ଉଦ୍ଦେଶ୍ୟରେ ତରବର ହେଇ । ପହଞ୍ଚିଲା ଫ୍ଲାଟ୍ ସାମ୍‌ନାରେ । ଝୁଲୁଥିବା ନେମ୍‌ପ୍ଲେଟ୍‌କୁ ଓହ୍ଲେଇଦେଲା ତଳକୁ । 'ଏ ଘର ଆଦ୍ୟା ଆଉ ଅଞ୍ଜନଙ୍କର' ତଳକୁ ଲେଖିଦେଲା କାଗଜ କଲମରେ, 'ଏ ଘର ଭବ୍ୟାର'- ଅଠାରେ ଚିପ୍‌କେଇ ଦେଲା କାଗଜଟାକୁ ନେମ୍‌ପ୍ଲେଟ୍‌ରେ । ଆତ୍ମସନ୍ତୋଷର ଆଭା ଚମକି ପଡ଼ିଲା ତା' ମୁହଁରେ । ଯାଠୁ ଭଲ ଗିଫ୍‌ଟ ଆଉ କ'ଣ ହୋଇପାରେ ଭବ୍ୟା ପାଇଁ ! ଅଞ୍ଜନର ମନ ପୂର୍ଣ୍ଣ ହେଇଉଠିଲା ଏକ ଦିବ୍ୟ ଭାବନାରେ ।



# ମତୀ ଦେଠେଇ

ଅବଶ୍ୟ ନିଜ ରକ୍ତର ନୁହେଁ । ଲେଖାଯୋଖାରେ ସେ ଦେଠେଇ । ହେଲେ ନିଜର ଭଳି ଠିକ୍ । ଆମେ ତାଙ୍କୁ ମତୀ ଦେଠେଇ ବୋଲି ଡାକୁ । ନାଁ ଶ୍ରୀମତୀ, ବଡ଼ ହେଲାପରେ ଜାଣିଲି । ଦଦେଇ ସଦାଶିବ ଉତ୍ତରରାୟ ଅନେକ ବର୍ଷ ହେଲା ସେପୁରକୁ ଗଲେଣି । ଦି'ପୁଅ ତିନିଝିଅଙ୍କୁ ଛାଡ଼ି ଯାଇଛନ୍ତି । ମତୀ ଦେଠେଇ ହିଁ ପିଲାଙ୍କୁ ଭଲ ଭାବରେ ମଣିଷ କରିଛନ୍ତି । ଛୋଟ ଚାକିରିଟେ କରିଥିଲେ ଦଦେଇ । ହେଲେ ଜମିବାଡ଼ି ବେଶ୍ ଗୁଡ଼ାଏ ଥିଲା । ଭଲ ଚଳୁଥିଲା ସଂସାର । ଅଧାବୟସରେ ଚାଲିଗଲେ । ଦେଠେଇଙ୍କୁ ପଚାଶ ଛୁଇଁ ନଥିଲା ସାଦା ଥାନ ଶାଢ଼ୀ ପିନ୍ଧିଲା ବେଳକୁ । ସେଇଦିନରୁ ସେ ଏକାଏକା ସଂସାରକୁ ସମ୍ଭାଳିଛନ୍ତି ।

ଆଗରୁ ଆମେସବୁ ଏକାଠି ଗାଁରେ ଥିଲୁ । ଆମ ବାପା ଚାକିରି କରୁଥିଲେ ବାହାରେ । ବୋଉ ଆମକୁ ନେଇ ଗାଁରେ ରହୁଥିଲା ଜମିବାଡ଼ି ବୁଝିବା ପାଇଁ । ତା' ଛଡ଼ା ଘରେ ପାଞ୍ଚପୁରୁଷୀ ଦି' ଯୋଡ଼ା ଶାଳଗ୍ରାମ । ରାଧାମାଧବଙ୍କ ପିତଳ ପ୍ରତିମା ସହିତ ଅନେକ ଦେବଦେବୀ ଠାକୁର ଘରେ । ତାଙ୍କୁ ଛାଡ଼ି ବୋଉ କୁଆଡ଼େ ବି ଯାଇନଥାନ୍ତା । ଆମ ଘରକୁ ଚାରିପାଞ୍ଚଘର ଛାଡ଼ି ଦଦେଇଙ୍କ ଘର । ଦେଠେଇବି ପିଲାଙ୍କୁ ନେଇ ଗାଁରେ ରହୁଥିଲେ । ସେଇଦିନୁ ସମ୍ପର୍କ କ୍ଷୀରନୀରର ।

ଦୁଇ ପରିବାର ଭିତରେ ମୁଁ ସମସ୍ତଙ୍କଠାରୁ ବୟସରେ ବଡ଼ ଥିଲି । ଦେଠେଇ ମୋତେ ଭାରି ଭଲ ପାଆନ୍ତି । ଅଖଣ୍ଡ ବିଶ୍ୱାସ ମୋ ଉପରେ । ତାଙ୍କ ଘରକଥା ଜମିବାଡ଼ି କଥା ବି ମୁଁ ବୁଝେ ବେଳେବେଳେ । ଦଦେଇ ମରିଗଲା ପରେ ସମ୍ପର୍କଟା ଆହୁରି ନିବିଡ଼ ହୋଇଥିଲା । ବଡ଼ ଦି'ଝିଅଙ୍କୁ ଦଦେଇ ବାହା କରିଦେଇ ଯାଇଥିଲେ । ନହେଲେ ପୁଅ ସୁଜୟ, ଅଜୟ ଏବଂ ଝିଅ ସୁଲଗ୍ନାର ବାହାଘର ଦେଠେଇ ହିଁ କରିଥିଲେ । ଦୁଇବୋହୂ ଜିତା ଓ ମିତା । କେବଳ ରୂପରେ ନୁହେଁ, ଗୁଣରେ ମଧ୍ୟ ସୁନ୍ଦର । ବଡ଼ ମନ, ବଡ଼ ବିଚାର । ଦୁହେଁ ଭଇ

ସଂସ୍କାରର । ସୁଜୟ, ଅଜୟ କିନ୍ତୁ ଚାକିରି କଲାପରେ ମତୀ ଦେଠେଇଙ୍କୁ ସାଙ୍ଗରେ ନେଇ ଯାଇଥିଲେ ସହରକୁ । ଛ'ମାସ ସୁଜୟ ଆଉ ଛ'ମାସ ଅଜୟ ପାଖରେ ରହୁଥିଲେ ଦେଠେଇ । ଆଜିକାଲି ବହୁତ ବୁଢ଼ୀ ହୋଇଗଲେଣି ମତୀ ଦେଠେଇ, ଅଣ୍ଟା ନଇଁଗଲାଣି ।

ସେଇ ମତୀ ଦେଠେଇ, ଚିଠି ଖଣ୍ଡେ ଲେଖିଥିଲେ । ଲେଖିଥିଲେ କ'ଣ, ଲେଖେଇଥିଲେ । କାହା ହାତରେ ନିଶ୍ଚୟ । କାରଣ ସେଇଟା ମିତାର ହାତ ଅକ୍ଷର ନଥିଲା । ଲେଖିଥିଲେ ଯେ, ସୁବିଧା ଦେଖି ନିଶ୍ଚୟ ଆସିବୁ ଥରେ । ତୋ ସାଙ୍ଗରେ ଅନେକ କଥା ଅଛି । ଦେଠେଇଙ୍କୁ ଭୁଲିଗଲୁଣି କି ? କାହିଁ ଅନେକ ଦିନ ହେଲା ତୋର ଦେଖା ନାହିଁ, ଆସୁନୁ ।

ଦେଠେଇଙ୍କ ଚିଠିରେ ଅଭିମାନର ସ୍ୱର ସ୍ପଷ୍ଟ ଫୁଟି ଉଠୁଥିଲା । ବୁଢ଼ୀ ମଣିଷ । ଅଶି ପାର କରିଗଲେଣି ବୋଧେ । ସେକାଳିଆ ମଣିଷ ବୋଲି ତଥାପି ଚଳପ୍ରଚଳ କରୁଛନ୍ତି । ହଉପଛେ ଧୀରେ ସୁସ୍ତେ, ନିଜେ କରୁଛନ୍ତି ନିଜ କାମ । ବୟସ ତା'ର ନେତ ଉଡ଼େଇଲାଣି । କେତେବେଳେ କୋଉ କଥା । କାଲିକୁ କାହାର ହାତ ଅଛି, ଥରେ ଯାଇ ଦେଖି ଆସିଲେ ଭଲ ହେବ । ପୁଣି ଚିଠି ଲେଖିଛନ୍ତି ଆସିବା ପାଇଁ । ଯିବାକୁ ହିଁ ହେବ । ନିତା ଦି'ଟା ଆରିସା କରିଥିଲା । ନରମ ଆରିସା, ଦେଠେଇ ଭଲ ପାଆନ୍ତି ଖାଇବାକୁ । ତା' ସହିତ ବାଡ଼ିର ପାଟକପୁରା କଦଳୀ । ନିତା କହିଲା – ନେଇଯିବ ସାଙ୍ଗରେ ।

ସେଦିନ ଖୁବ୍ ସକାଳୁ ସକାଳୁ ହିଁ ବସ୍ ଧରିଲି । ଚାରି ପାଞ୍ଚ ଘଣ୍ଟାର ବାଟ । ପହଞ୍ଚିଲାବେଳକୁ ପ୍ରାୟ ଏଗାରଟା ବାଜି ସାରିଥିଲା । ଖାଇ ବସିଥିଲେ ଦେଠେଇ । ଅବଶ୍ୟ ଖାଇବା ସରିଆସୁଥିଲା । ଦେଖୁଦେଖୁ ଭାରି ଖୁସିଟାଏ ହେଇଗଲେ, "ଏତେ ଦିନକେ ମନେପଡ଼ିଲା ନା ଦେଠେଇ ! ଯା ହେଉ ଆସିଛୁ ତ..... ବସ୍ ପୁଅ.... ମୁଁ ହାତଧୋଇ ଆସୁଛି, ବସ୍ । ମୁଁ କହିଲି, ମୋଟେ ତରତର ହୁଅନି ଦେଠେଇ । ଆରାମରେ ଖାଇ ଧୀରେ ସୁସ୍ତେ ଉଠ.... ମୁଁ ବସିଛି ତ, କିଛି ବ୍ୟସ୍ତ ହେବାର ନାହିଁ ।"

ନାଇଁମ, ସରିଗଲାଣି ପରା... କ'ଣ ଆଉ ଖାଉଛି ଯେ ସମୟ ଲାଗିବ, ଦେଖୁଛୁ ତ ଭାତ, ଡାଲମା, ଏଇ ଦି' ଖଣ୍ଡି ବାଇଗଣ ଭଜା, ଟିକିଏ ସନ୍ତୁଳା ଆଉ ଚିମୁଟାଏ ଶାଗ, ଦହି ଟୋପାଏ, ବାସ୍ । ଏତିକି ତ, କ'ଣ ଆଉ ଖାଉଛି ? କେତେ ଖାଉଥିଲି... ଗଲା ସେ ସମୟ, ନିଜ ହାତରେ ତ କରିପାରୁନି କିଛି । କହ, ଦୟା କରି ଦଉଛନ୍ତି । ଜୀବନ ଅଛି ଯେତେବେଳେ ପେଟ ଚାଖଣ୍ଡକ ବି ତ ଅଛି । ଭଲମନ୍ଦ ଯାହାହେଉ ଖାଇବାକୁ ପଡ଼ିବ । ନିଶ୍ୱାସ ରୋକି, ଦେଠେଇ 'କୃଷ୍ଣ' କରି ପାଣିପିଇ ଉଠିଲେ ହାତ ଧୋଇବାକୁ ।

ବାଁ ହାତରେ ପିତଳ ଢାଳ । ମୁଁ ବି ଉଠିଲି ସାଥିରେ । ଦେଠେଇ ଟିପେଇଟିପେଇ ସିଧାସଳଖ ଚାଲିଗଲେ ବାଡ଼ିପଟ ଲଙ୍କାଗଛ ମୂଳକୁ । ଏଇଟା ତାଙ୍କର ପୁରୁଣା ଅଭ୍ୟାସ ।

କୁଳୁକୁଈା ପାଣିଟୋପାକ ବି ନଷ୍ଟ ହେବନି । ଗଛ ପାଉ । ଦେଠେଇ ମୁହଁ ଧୋଇ ତାଙ୍କର ବଳକା ପାଣିତକ ଲଙ୍କାଗଛ ମୂଳେ ଅଜାଡ଼ି ଦେଉଦେଉ କହିଲେ, "ଗଛଗୁଡ଼ାକ ଶୁଖିଗଲାଣି । କାହାର କ'ଣ ମନ ହେଉଛି ପାଣିଟୋପାଏ ଦେବାକୁ । କହିଲେ କହିବେ, ତମେ ଏତେ କାହିଁକି ବ୍ୟସ୍ତ ହେଉଛ ଯେ... ଆମେ ବୁଝିବୁନି ସେ କଥା । ଯେତେକ ଖାଲି ଚିକ୍କଣ କଥା, ସବୁ ବୁଝିପକଉଛନ୍ତି ସତେକି.... ଆହା, କେଡ଼େ ସୁନ୍ଦର ଫଳ ଧରି ଆସୁଛି.... କଷିଫୁଲ ଲଦି ହେଉଛି, ଶୁଖିଯିବ ପାଣି ନ ପାଇ ସିନା । ବଳ ବୟସ ଥିଲା ସବୁ କରୁଥିଲି, ଏବେ ତ ବାପା ବଳ ପାଉନିରେ.... । ପର ହାତକୁ ଚାହିଁବା କଥା ।" କଥା ଥୟ ଧରୁନି, ପ୍ରଗଲ୍ଭ ହୋଇ କହି ଚାଲିଛନ୍ତି । ଜାଣିଲି, ଦେଠେଇ ମୋତେ ଉଦ୍ଦେଶ୍ୟ କରି କହୁଛନ୍ତି । କହୁକହୁ ଗଛମାନଙ୍କୁ ଟିକିଏ ଆଉଁଶି ଦେଲେ ସ୍ନେହର ସ୍ପର୍ଶ ଦେଇ । ଆଉ ଗଛମାନେ, ସତେକି କୁରୁଳି ଉଠିଲେ ସାନ୍ତାଆଣୀଙ୍କ ସ୍ନେହ ସ୍ପର୍ଶରେ । ସେମାନଙ୍କର ତ ପାଟି ନାହିଁ, ଥରେ ଅବା କହିଥାନ୍ତେ, ତମରି ପାଣିମୁନ୍ଦାକୁ ତ ଅନେଇ ରହିଥିଲୁ ନହେଲେ କିଏ ବୁଝୁଛି କି ଆଉ ଆମ କଥା ।

ଦେଠେଇ ମୋ ଆଡ଼କୁ ମୁହାଁଇଲେ । ମୁଁ ତାଙ୍କର ପାଦଧୂଳି ନେଲି । ଖୁସିରେ ଗଦ୍‌ଗଦେଇ ଅଭିମାନର ସ୍ପର୍ଶ ଦେଇ କହିଲେ, 'ଥାଉ ବାପା, ଆଜିକାଲି ଆଉ କ'ଣ ଏସବୁ ରୀତି ଅଛି ଯେ, ଠିଆଠିଆ ନମସ୍କାରଟିଏ ମିଳିବାକୁ ବି କଷ୍ଟ । ଆମ ବେଳ, ତମ ବେଳ ଭିତରେ ତ କେତେ ଅଲଗା ହେଇ ଯାଇଥିଲା, ଆଉ ଏବେକୁ ଆହୁରି ଅଲଗା । ଆମେମାନେ ପାଦଧୂଳି ଟିକିଏ ପାଇଲେ ଧନ୍ୟ ମଣୁଥିଲୁ ନିଜକୁ । ବଡ଼ଙ୍କର କଲ୍ୟାଣ ଭାଗ୍ୟରେ ଥିଲେ ମିଳେ । ଗୁରୁଜନ ଦେବତା ସମାନ । ଆଜିକାଲି ବୁଢ଼ାବୁଢ଼ୀଙ୍କର ଆଦର ନାହିଁ । ଅଲୋଡ଼ା ହୋଇଗଲୁଣି ଆମେସବୁ । ମୁଣିଆ ନ ମାରିଲେ ନିହାତି ଚଳିବନି ବୋଲି ମାରିଦେଉଛନ୍ତି । ଲୋକଦେଖାଣିଆକୁ ।

ମୋତେ ଟିକିଏ କେମିତି ଅଡୁଆ ଲାଗିଲା । କିଏ ବଦଳିଛନ୍ତି କି ନାହିଁ ଦେଠେଇ ଟିକିଏ ବଦଳି ଯାଇଛନ୍ତି ନିଶ୍ଚେ । ଏମିତି ଅଭିମାନ ରଖି ସେ କେବେ କଥା କହନ୍ତିନି- ଦେଖିଲା ସଙ୍ଗେସଙ୍ଗେ ସତେକି କୋଳେଇ କାଖେଇ ପକେଇବେ । କ'ଣ ଖାଇବାକୁ ବାଢ଼ିବେ ତର ସହୁ ନଥିବ । କେତେ ଉଦାର । ଜଣଜଣ କରି ସମସ୍ତଙ୍କ କଥା ପଚାରି ବସିବେ । ଅବଶ୍ୟ ସେଇ କର୍ମଚଞ୍ଚଳା ଦେଠେଇ ଆଉ ନାହାନ୍ତି । ବୟସର ଚାପ ତାଙ୍କୁ ସତରେ ବୁଢ଼ୀ କରିଦେଇଛି । କୌଣସି ଯୁକ୍ତି ନକରି ମୁଁ କଥାକୁ ସହଜ କରିବାକୁ ଯାଇ କହିଲି, "ସମୟ ପରା ବଦଳିଗଲାଣି ଦେଠେଇ.... ଟେଲିଭିଜନ, କମ୍ପ୍ୟୁଟର ଯୁଗରେ ଆସି ପହଞ୍ଚିଲୁଣି ଆମେ ।"

"ଯାହା କହିଲୁ, ସେ ଦିନ ଗାଁରୁ ଧନୀ ଜକେଇ ଆସିଥିଲେ, ଆମ ଧନେଶ୍ୱର ଚମ୍ପତିରାୟ ମ..." ଦେଠେଇ ମନେପକାଇ ଦେଲେ, 'ମନେ ପଡ଼ିଲା ତ ? ଅଜୁକୁ କହିଲି

ଟିକିଏ ପାଦଧୂଳି ନେ' କେଡ଼େବଡ଼ ମଣିଷ ଘରକୁ ଆସିଛନ୍ତି... ନ ଶୁଣିଲା ପରି ନମସ୍କାରଟେ ପକେଇଦେଲା । ଅବଶ୍ୟ ମିତା ଆସି ପାଦ ଛୁଇଁଲା, ହେଲେ ବାଧରେ ନା.... କ'ଣ ଅଛି, ଓଢ଼ଣା ଟିକେ ଦେବାକୁ ପଣତ ଅଛି ନା, ଶାଢ଼ି ଅଛି, ସେଥିରେ ସଣ୍ଢେଣା ଅଛି ନା ମାନ୍ୟତା ! ସବୁ ନାଁକୁ । ଛାଡ଼, ଏକାଥରକେ ଏତେକଥା କହିଦେଇ ହାଲିଆ ହୋଇଗଲେ ଦେଠେଇ, ଦମ୍ ନେଲେ ଟିକିଏ । ମୁହଁରେ ଏତେଟା ପ୍ରଫୁଲ୍ଲତା ନଥିଲା । ପଚାରିଲେ ଏଥର ମୋ କଥା, 'ବାପା, ତୋ କଥା କହ, କିମିତି ଅଛୁ ? ପିଲେ ଭଲ ଅଛନ୍ତିଟି ? ବଡ଼ ଝିଅଟାକୁ ତ ସତର ପଶିବଣିରେ ଦେବ,' ପାନବଟା ପାଖରେ ଲଥ୍ କରି ବସିପଡ଼ିଲେ ଦେଠେଇ ଗୋଡ଼ ଲମ୍ବେଇ.... । ଉଠାବସା କରିବାକୁ ବୋଧେ କଷ୍ଟ ହେଉଥିବ । ବାରମ୍ବାର ଲମ୍ବା ନିଃଶ୍ୱାସପ୍ରଶ୍ୱାସ ନେଉଥିଲେ । ଦେଠେଇ ଗୁଆକାତି ଧରି ଗୁଆ କାଟିବାକୁ ଲାଗିଲେ ଓ ପାନ ପତର ଚିରି ଚୂନ ଲଗେଇଲେ ତାଙ୍କ ଢଙ୍ଗରେ ।

'ଆରମାସକୁ ସତର ପୂରିବ ଦେଠେଇ, ସାନପୁଅ ତ ନବମକୁ ଗଲା ଏଇବର୍ଷ । ଭାରି ସଇତାନ । ସବୁକଥାରେ ପ୍ରଶ୍ନଟିଏ ।'

"ଆଉ ନିତା, ନିତା ଖବର କ'ଣ ? ତା' ଭଳିଆ ସୁନାବୋହୂ ଏ ଖଣ୍ଡମଣ୍ଡଳରେ ଅଛି ନା, ଶାଶୂ ଶ୍ୱଶୁରଙ୍କ ସେବାଯତ୍ନ, ରନ୍ଧାବଢ଼ା, ପିଲାଙ୍କ ପାଠପଢ଼ା, ଘରକରଣାରେ ତାକୁ ବାଛିବାକୁ ନାହିଁ । ତୋ ବୋଉର ଭାଗ୍ୟ । ଡାକେବାଟରେ ବାପଘର ଯେ, କଥାକଥାକୁ ଧାଆଁନ୍ତା, ହେଲେ ନାହିଁ । ତା'ର ଭଲ ବିଚାର । ଆମ ମିତାକୁ ଦେଖୁନୁ, ଏଇଠି ବାପଘର ବୋଲି ଦିନକୁ ଦି'ଥର ଯେ କୌଣସି ବାହାନା ଦେଖେଇ ବୁଲି ଆସିବ ନା, ଚାରିଆଡ଼କୁ ଅନେଇ ଟିକିଏ ନୀଚା ଗଳାରେ ଚୁପ୍‌ଚୁପ୍ କହିଲେ, 'ଯୁକ୍ତି ବି କିଛି କମ୍ ନୁହେଁ, ଆମେ ତ ବାପା ଶାଶୂ ଶ୍ୱଶୁରଙ୍କୁ ମୁହଁଟେକି ଚାହୁଁନଥିଲୁ । ଅବଶ୍ୟ ଗଲାବେଳେ କହିଦେଇ ଯାଉଛି, ଆମ ଘରଆଡ଼ୁ ଟିକିଏ ବୁଲିଆସୁଛି ମାଆ ।"

ମୋତେ ହସମାଡ଼ିଲା । ଦେଠେଇ ପୁରୁଣାବେଳର ଆଦବକାଇଦାକୁ ଏବେ ମନେପକଉଛନ୍ତି । ଭାବିଲି, ତାଙ୍କୁ ବୁଝେଇବି, ମନେ ପକେଇଦେବି ସେ କାଳର ଯେତକ ଅଇଗୁଣ, ପାଟିରୁ କଥା ବାହାରୁନଥିଲା ବୋଲି ତ କେତେ ଗଞ୍ଜଣା ସହୁଥିଲ, ତମରି ପାଟିରୁ ଆମେ ଶୁଣିଛୁ- ନା, ଇଚ୍ଛା ହେଲାନି, କାରଣ ଏଇଟା ଦେଠେଇଙ୍କ ନିଜ ଗୁଣ ନୁହେଁ, ନିଜ ବିଚାର ନୁହେଁ । ବୟସାଧିକ୍ୟ ହେତୁ ହିଁ ତାଙ୍କର ଏ ପରିବର୍ତ୍ତନ । ଅବଚେତନ ଭିତରେ ସାଇତି ସମାଦି ରଖିଥିବା ସେଇ ପୁରୁଣା ବିଚାରଗୁଡ଼ାକ ମୁକୁଳି ଆସୁଛନ୍ତି । ଏଥିରେ କିଛି କ୍ଷତି ନାହିଁ । ଟିକିଏ ସହିଗଲେ ହେଲା । ବୁଢ଼ୀ ମଣିଷ । କଥାର ଖିଅ ଧରି ପଚାରିଲି, 'ମିତା କୁଆଡ଼େ ଯାଇଛି କି ? ଦିଶୁନି ତ କାହିଁ, ଅଛିଟି ?'

'ହଁ ମ... ମୋତେ ପରା ଖାଇବାକୁ ଦେଇ ପୁଅକୁ ସ୍କୁଲ ଆଣିବ ବୋଲି ଗଲା ।

ବାଟରେ ତ ବାପଘର, ମୁହଁମାରିବା ନାଁରେ ଗପ ଯୋଡ଼ିଦେଉଥିବ ଭାଉଜମାନଙ୍କ ସହିତ । ପୁଅଟାକୁ ଭୋକ ଲାଗୁଥିବ.... ସେକଥା କ'ଣ ମନେଥିବ ?'

ଦେଠେଇଙ୍କର ସବୁ ଟିପ୍ପଣୀ ମିତା ଉଦ୍ଦେଶ୍ୟରେ ଥିଲା । ମୁଁ କେବଳ ଶୁଣିଯାଉଥିଲି । ମୋତେ ବୋଧେ ଦେଠେଇ ତାଙ୍କର ଏହି ସବୁ ଅଭିମାନିଆ କଥା ଶୁଣେଇବା ପାଇଁ ଡାକିଛନ୍ତି । ସହର ଜାଗା । କେହି ତ ନାହାନ୍ତି ପାଖରେ ତାଙ୍କ ସମାନ ଗପିବାକୁ । ମଣିଷ, ସିଏ ଯୋଉ ବୟସର ହେଉନା କାହିଁକି ଗପିବାକୁ ତ ସାଥୀଟିଏ ଲୋଡ଼ା । କାହା ପାଖରେ ମନ ଖୋଲିଦେଲେ ଟିକିଏ ହାଲୁକା ଲାଗେ । ସତରେ ଆଜିର ଜଞ୍ଜାଳଗ୍ରସ୍ତ ମଣିଷ ପାଖରେ ସେଇ ମାନସିକତା ନାହିଁ । ସମୟ ବି ନାହିଁ ସେମାନଙ୍କ ପାଖରେ ବସି ଘଣ୍ଟାଘଣ୍ଟା ଗପ ଶୁଣିବାକୁ । ସେଇଥିପାଇଁ ସେମାନେ ନିଃସଙ୍ଗ ବୋଧ କରୁଛନ୍ତି । ଅଭିଯୋଗ ବାଢ଼ୁଛନ୍ତି, ଅଭିମାନ କରୁଛନ୍ତି- ଅଲୋଡ଼ା ହେଇଗଲେ ବୋଲି । ତାଙ୍କ କଥାକୁ କୌଣସି ଗୁରୁତ୍ୱ ନ ଦେଇ ଭାବିଲି, ହଉ କୁହନ୍ତୁ ସେ ମନ ଖୋଲି କ'ଣ କହିବେ । ତାଙ୍କୁ ଉଶ୍ୱାସ ଲାଗୁ ।

ନହେଲେ ମୁଁ ଭଲ ଭାବେ ଜାଣେ, ଅଳୁ ଆଉ ମିତା ନିଜ ପାରୁପର୍ଯ୍ୟନ୍ତ ଚେଷ୍ଟା କରୁଛନ୍ତି ଦେଠେଇଙ୍କୁ ଖୁସିରେ ରଖିବା ପାଇଁ । ଯେତେ ସୁବିଧା ଦିଆଯାଇପାରେ । ଦି'ବର୍ଷ ହୋଇଗଲାଣି ଦେଠେଇଙ୍କୁ ଡାଇବେଟିସ୍ ହେଲାଣି । ଅଳୁ ପ୍ରଥମେ ପ୍ରଥମେ ଭାରି ବ୍ୟସ୍ତ ହୋଇ ପଡୁଥିଲା । ହେଲେ ମିତାଟାର ଭାରି ସାହସ । ଖିଆପିଆକୁ ଜଗିଛି । ଡରେଇ ଦଉଛି ରକ୍ତଚାପଟା ମଝିରେ ମଝିରେ । ହେଲେ ଦେଠେଇଙ୍କର ଅଭିଯୋଗ ଯେ ଜାଣିଶୁଣି ମିତା ଆଜିକାଲି ତାଙ୍କ ମନ ମୁତାବକ ଖାଇବାକୁ ବାଢ଼ୁନି । ମିଠା ଖାଇବାକୁ ସେ ଖୁବ୍ ଭଲ ପାଆନ୍ତି । ଘରକୁ ତ ଆସୁଛି ବରାବର୍ । ଦିଅନ୍ତା ନି ଗୋଟେ ଅଧେ, ନାଇଁ । ତା ବାପାବୋଉଙ୍କୁ ଏମିତି ବାଢ଼ିଦିଅନ୍ତା ପରିବା ସିଝେଇ ? ଦେଠେଇଙ୍କ ମୁହଁ ଫଣଫଣେଇ ଉଠିଲା ।

ମୁଁ ପାଖରେ ବସି ବୁଝେଇଲି, 'ତମର ପରା ଡାଇବେଟିସ୍ ବାହାରିଛି । ଡାକ୍ତର ତ ମନା କରିଥିବେ ମିଠା ଖାଇବାକୁ । ପୁଣି ବ୍ଲଡ୍‌ପ୍ରେସର । ସବୁକୁ ତ ଜଗିବା ଦେଠେଇ । ନ ହେଲେ ବିପଦ ଆସିଯିବ । ପରିବା ସିଝା ତ ତମ ସ୍ୱାସ୍ଥ୍ୟପାଇଁ ଏବେ ଖୁବ୍ ଭଲ ।'

' ମୁଁ କ'ଣ ଆଗରୁ ଖାଉ ନଥିଲି ! ନା, ଏବେ ମେଞ୍ଚାଏ ଲେଖାଁ ଖାଇ ପକେଇବି ? ମଣିଷ ଦିହରେ ରୋଗ ଥିବ, ଯା ବୋଲି କିଛି ଖାଇବନି ! ଆଉ କେତେଦିନ ବଞ୍ଚିବି କି ? ସିଝା ଖାଇ ଖାଇ ଜାଣ ମୋ ପାଟି ଅରୁଚି ଧରିଲାଗଲାଣି ।'

ସତକୁ ସତ ମୁଁ ଟିକିଏ ବ୍ୟସ୍ତ ହୋଇପଡ଼ିଲି । ଯଦିଓ ଜାଣୁଥିଲି ଦେଠେଇଙ୍କର ଏସବୁ ବୟସଗତ ଅଭିମାନ । ସେ ତ ବୁଝିଲା ଶୁଝିଲା ମଣିଷ । ସ୍ନେହ ବାଢ଼ି ପେଟ ପୂରେଇ ଦେବେ । ଛିତାମିତାକୁ ଝିଅଠୁଁ ବଳି ସ୍ନେହ କରନ୍ତି । କେହି କହିବେନି ସେ ଶାଶୂ ବୋଲି । ସେଇ ସମୟରେ ଶାଶୂ ଶବ୍ଦର ଭୟଙ୍କର ଧାରଣାକୁ ସେ ବଦଳେଇ ଦେଇଥିଲେ ନିଜ

ଆଚରଣରେ । ଅଥଚ ସେଇ ଦେଠେଈଙ୍କୁ ଏବେ ଲାଗୁଛି ସେ ଅବହେଳିତ । ତାଙ୍କଠାରୁ ଆବଶ୍ୟକତା ସରିଯାଇଛି । ପୁରୁଣା ଚିଠି ସିଏ । ଖାଲି ସନ୍ଦେହ, ଭ୍ରମ । ଅବଚେତନର ସଂଗୋପିତ ଯେତେକ ଭ୍ରାନ୍ତଧାରଣା ।

କଥା ଇହସରେ ଦେଠେଈ ଗୁଆକାଟି ଚାଲିଥିଲେ ଠ୍‌କଠକ୍ କରି । ବଳ ପାଉନଥିଲା ହାତରେ । ମୁଁ ମାଗିଲି, 'ଗୁଆକାତିଟା ମୋତେ ଦିଅ ଦେଠେଈ, ମୁଁ କାଟି ଦଉଛି ସରୁସରୁ କରି ।'

ଗୁଆକାତି ମୋ ହାତକୁ ବଢ଼େଇ ସେ ପାନରେ ଚୂନ ଲଗେଇଲେ । ଗୁଆ, ଗୁଣ୍ଡି ପକେଇ ପାନଭାଙ୍ଗି ବଟାରେ ଛେଚିଲେ । ଛେନାପାନକୁ ହାତ ପାପୁଲିରେ ଦେଇ ପାଟିରେ ପକେଇ ମୋତେ ଖଣ୍ଡେ ବଢ଼େଇଦେଇ କହିଲେ, 'ନେ, ଖା' ଖଣ୍ଡେ ।'

'ତମର ସବୁ ଦାନ୍ତ ପଡ଼ିଗଲାଣି ନା ଦେଠେଈ ?'

'ଦି' ଗଣ୍ଡା ଦଶୁଟା ଅଛି ଯେ, ଭାରି କଷ୍ଟ ହଉଛି ମଝିରେ ମଝିରେ । ଅକୁ କହୁଥିଲା ଉଠେଇବାକୁ । ମୁଁ ମନା କଲି । ଥାଉ, କ'ଣ ଟିକେ ଚୋବଉଚି ତ' ।

'ଆଉ ତମ ଆଣ୍ଠୁଗଣ୍ଠି ଦରଜ... ସକାଳୁ ଟିକିଏ ଚଲାବୁଲା କରୁଛ କି ନାହିଁ, ଯେତେ ଦିନ ଅଭ୍ୟାସ ରଖିଥିବ, ସେତେଦିନ ଯାଏ ଚଳପ୍ରଚଳ କରିବାରେ ଅସୁବିଧା ହେବନି ।' ସେଇକଥା ତ ଅକୁ, ମିତା ନିତି ଘୋଷୁଛନ୍ତି । କିଏ ବସେଇ ଖାଇବାକୁ ଦବକିରେ ବାପା ! ବସିଗଲେ ସଭିଙ୍କୁ କଷ୍ଟ । ଜାଣିଛି । ଆମବେଳେ ଅଲଗା କଥା । ଶାଶୂ ଶ୍ୱଶୁର, ବଡ଼ଯାଆ, ଦେଢ଼ଶୁରଙ୍କୁ କୁଟାଖଣ୍ଡକ ଦି'ଖଣ୍ଡ କରିବାକୁ ଦେଉନଥିଲୁ ।

'ଏତେ ସେବାଯତ୍ନ ସତ୍ତ୍ୱେ ସେମାନେ ତୁମ ଉପରେ କ'ଣ ସନ୍ତୁଷ୍ଟ ଥିଲେ ଦେଠେଈ ?' ମୁଁ କଥା ମଝିରୁ ହାପୁଡ଼େଇଲି ।

'ମୋଟେ ନୁହଁରେ ପୁଅ । ସୁଆଦ ଅସୁଆଦ ହେଲେ ତ ଗିନା ତାଟିଆ ଫୋପାଡ଼ି ଦେଉଥିଲେ ଉପରକୁ । ଏବେ ତ ସବୁ ଓଲଟା ହେଲାଣି ନା । କେମିତି ଗୋଡ଼ହାତ ଅଚଳ ନହେବ, ଆଗରୁ ସେଥିପାଇଁ ତାଗିଦା ପୁଅ ବୋହୂଙ୍କର । ତାଙ୍କୁ ଯେମିତି କଷ୍ଟ କରିବାକୁ ନପଡ଼େ ଆଗକୁ । ଛୋଟ ନିଃଶ୍ୱାସଟି ଛାଡ଼ି ଦେଠେଈ ଚିନ୍ତାକୁଳ ହୋଇପଡ଼ିଲେ, 'ଜାଣିନିରେ ପୁଅ କେମିତି ଜୀବନ ଯିବ, କେତେଦିନ ଆହୁରି ଭୋଗ ଅଛି !'

ଅଭିମାନ ଉତୁରି ପଡୁଛି ପିଲାଙ୍କ ଭଳି । କିଛି ଉଦେଶ୍ୟ ନାହିଁ ଅଥଚ ସବୁକଥାକୁ ସେ ଓଲଟା ପ୍ରୟୋଗ କରୁଛନ୍ତି । ଏଇ ବୟସରେ ସବୁ ମଣିଷ ଏମିତି ଭାବନ୍ତି । ଏଇବାଟ ଦେଇ ହିଁ ସମସ୍ତଙ୍କୁ ସ୍ୱର୍ଗଦ୍ୱାରକୁ ଯିବାକୁ ପଡ଼େ । କହିବାକୁ ଗଲେ ଆମ ପିଢ଼ି ପାଇଁ ଧୈର୍ଯ୍ୟର ଭଏ ପରୀକ୍ଷା । ଘଟଣାଚକ୍ରରେ ଆମ ଭଳି ଥୟଧରା ମଣିଷମାନେ ବି କଥାର ପ୍ରାସଙ୍ଗିକତା ଲକ୍ଷ୍ୟ କରିନପାରି ହଡ଼ବଡ଼େଇ ଯାଉଛୁ । ସେମାନେ ତ ଅବୋଧ ଶିଶୁ ସହିତ ସମାନ ।

ଅବୁଝା । ତଥାପି, ତାଙ୍କ ଧାରଣା ବଦଳେଇବାକୁ ମୁଁ କଥାକୁ ଭିନ୍ନବାଟରେ ପକେଇଲି, 'ଧତ ନୁହେଁ କି ଦେଠେଈ, ଗୋଡ଼ ହାତ ଅଚଳ ହେଲେ ସମସ୍ତଙ୍କୁ କଷ୍ଟ । ନିଜକୁ କ'ଣ କମ୍ କଷ୍ଟ ! ତା' ଛଡ଼ା ନିଜେ କଲେ, ଖାଇଲେ, ଚାଲିଲେ, ଦେଖିଲେ, ଯେମିତି ସନ୍ତୁଷ୍ଟ ଲାଗେ, ଆଉଜଣେ କରିଦେଲେ ସେମିତି ସନ୍ତୁଷ୍ଟ ଲାଗେ କି ? ସେଇଥିପାଇଁ ପରା ଆଜିକାଲି ଡାକ୍ତରମାନେ ସମସ୍ତଙ୍କୁ ପରାମର୍ଶ ଦେଉଛନ୍ତି ଏକଥା । ତା' ଛଡ଼ା ସ୍ୱାମୀଜୀମାନେ ମଧ୍ୟ ଯୋଗ କରିବାପାଇଁ ଶିକ୍ଷା ଦେଉଛନ୍ତି । ଆଗକାଳରେ ସେସବୁ ଥିଲା ବୋଲି ସେମାନେ ସୁସ୍ଥ ଥିଲେ ଓ ଦୀର୍ଘାୟୁ ହେଉଥିଲେ । ତମେ କ'ଣ ଦେଖୁନଥିବକି ସକାଳୁ ସକାଳୁ କେତେ ଲୋକ ଚାଲୁଛନ୍ତି ରାସ୍ତାରେ ? ତମେ ତ ଆଉ ବାହାରକୁ ଯାଇପାରିବନି । ଘରେ, ଏଇ ଅଗଣା ଭିତରେ ଚଲାବୁଲା କରିବ ବାଡ଼ିଧରି ।'

ପିଲାଙ୍କ ଭଳି ଅବୁଝା ଦେଠେଈ ଅବୋଧ ଆଖିରେ ମୋ ମୁହଁକୁ ଚାହିଁଲେ । ବୋଧେ ଭାବୁଥିଲେ, ଏଇଟା ବି କ'ଣ ସେଇମାନଙ୍କ ଭାଷା କହିଲାଣି ! ଭାବିଲେ ଭାବୁଥା'ନ୍ତୁ ସେ । ତାଙ୍କ ନିରାମୟ ଜୀବନ ପାଇଁ ଯାହା କରିବା କଥା କରୁଛନ୍ତି ଅଳ୍ପ, ମିତା । ସଚେତନ ଅଛନ୍ତି ସେମାନେ । ବରଂ ଦେଠେଈଙ୍କର ଏଇଟା ମନସ୍ତତ୍ତ୍ୱର କଥା । ତାଙ୍କ ସମୟର ବୋହୂପଣିଆ ତ ରୀତିମତ ର‌୍ୟାଗିଙ୍ଗ ଥିଲା । କିଛି କହିବାର କି କରିବାର ଯୁ ନଥିଲା । ସେଥିରେ ଅଭ୍ୟସ୍ତ ଜୀବନ । ଏଇ ବିଳୟମାନ ବୟସ, ଉତ୍ତରାଧିକାରୀମାନଙ୍କଠୁଁ ସେଇ ବ୍ୟବହାର ଆଶା କରୁଛି । ଅବଚେତନ ଭିତରେ ସ୍ଥିର ରୂପ ନେଇ ପଦ୍ମାସନା ପକେଇ ବସିଯାଇଥିବା ସେଇ ରକ୍ଷଣଶୀଳ ଧାରଣା ଏବେ ଆତ୍ମପ୍ରକାଶ କରୁଛି ବିଭିନ୍ନ ବାଟରେ । ବୟସ ଭାରରେ ନଇଁ ପଡ଼ିଥିବା ମତୀ ଦେଠେଈ ଅତି ଆପଣାର, ଯାହାକୁ ସେ ଜୀବନଠୁ ବେଶି ଭଲ ପାଆନ୍ତି, ସେଇ ପୁଅ ବୋହୂଙ୍କ ଉପରେ ହିଁ ଅଭିମାନ କରୁଛନ୍ତି, ଅଭିଯୋଗ ଆଣୁଛନ୍ତି, ସ୍ୱାଭାବିକ । ଏଇ ଅଭିଯୋଗ ଫର୍ଦ୍ଦଗୁଡ଼ିକୁ ମୋ' ଆଗରେ ଥୋଇବେ ବୋଲି, ଦେହ ଭଲ ରହୁନି, ଥରେ ଆସି ଦେଖିଯା'ର ବାହାନା କରି ଡାକି ଆଣିଛନ୍ତି ।

ହସିଲି ମନେମନେ । ଦେଠେଈଙ୍କ ପିଲାଳିଆ ଅଭିମାନରେ । କଥା ବୁଲେଇବାକୁ ପଚାରିଲି, 'ରିଙ୍କୁର ଏବେ କୋଉ କ୍ଲାସ୍ ହେଲାକି ?'

'କେଜାଣି, ଆଠବର୍ଷ ପଶିଲା ତାକୁ । ଇଂରେଜି ପାଠ ତ ପଢୁଛି । ତୁ ହିସାବ କର । ଏବେ ସବୁଦିନ ଅଳ୍ପ ତାକୁ ପହଁରା ଶିଖେଇବ ବୋଲି କୁଆଡ଼େ ନଉଛି । କ୍ଲବରେ କ'ଣ ପୋଖରୀ ଅଛି ।' ହସିଲେ ଦେଠେଈ ଗୋଟାଏ ଅପସନ୍ଦିଆ ହସ । ଆଞ୍ଜୁଳାଏ ଲେଖା ଟଙ୍କା ଗଣୁଛି ପହଁରା ଶିଖେଇବାକୁ । କେଡ଼େ ଅଭିଲା କଥା ! ଗୀତ ନାଚ ଶିଖେଇବାକୁ ସିନା ମାଷ୍ଟର ଲୋଡ଼ା, ହେଲେ ପହଁରା ପାଇଁ ? ଆମେ ଶିଖିଥିଲୁ ଜନ୍ମରୁ । ପୋଖରୀ ସହିତ ଆମର ସଂପର୍କ ବାପାମାଆଙ୍କ ସଂପର୍କ ଭଳି । ଏବେ ତ ଦୁଆରଲଗା କଳପାଣିରେ ସବୁ

ଗାଧୋଇଲେ, କୋଉ ପୋଖରୀ ଦେଖିଲେ ଯେ ଜାଣିବେ ପହଁରା କ'ଣ ! ହେଲେ ମୋର ଚିନ୍ତା ଅଲଗା । ରିଙ୍କୁଟାର ଥଣ୍ଡା ଦେହ, ଟିକିଏ ଥଣ୍ଡା ଲାଗିଲେ ନାକ, ଆଖିରୁ ପାଣି ନିଗିଡ଼ିବ । ଗଳା ଦରଜ ହେବ । ସେଥିରେ ଔଷଧ ପାଇଁ ଟଙ୍କା ଅଜାଡ଼ିବ । ଏଣେ ଖରାବର୍ଷା ଶୀତକାକର ନଦେଖି, ପହଁରା ନାଁରେ ପିଲାଟାକୁ ପାଣିରେ ବତୁରଉଛି । କେତେ କଷ୍ଟରେ ଷଠିଦୁଷେଇ ଦେଇଛି ବଙ୍କଟଙ୍କୁ । ଜଗିରଖି ସାଇତିଲେ ସିନା ନାଁ ରହିବ, ଆଲୁଅ ଜଳିବ । ଆଗ ଜୀବନ । ପହଁରା କୋଉ ବଡ଼କଥା ! ଅକ୍କୁ ତ ଅକ୍କୁ, ମିତା ତ ଖାଉଁକିନି ହେଲା । ମୋ କଥା କିଏ ଶୁଣୁଛି ଯେ ! ଘରେ ରହିଲେ କୁଆଡ଼େ ମାଇଚିଆ ହୋଇଯିବ, ସବୁକଥାକୁ ଡରିବ । ବାପା ମାଆ ମୁହଁକୁ ହିଁ ଚାହିଁବ । ସବୁ କଥା ତ ଓଲଟା ।'

'ସତକଥା ଦେଠେଇ, ଆଜିକାଲି ସ୍ୱାସ୍ଥ୍ୟରକ୍ଷାର ନିୟମସବୁ ବଦଳିଗଲାଣି । ପିଲାଟିଦିନରୁ ସେମାନଙ୍କ ଭିତରେ ସାହସ ବଢ଼େଇବା କଥା । ଅନ୍ଧାର ଭିତରେ ଭୂତ ଅଛି ନ କହି ବରଂ ଅନ୍ଧାର ଭିତରକୁ ଠେଲିଦେବା କଥା । ତା' ଭିତରକୁ ନ ପଶିଲେ ସେ କେମିତି ଜାଣିବ ଅନ୍ଧାର କ'ଣ, କିଭଳି ଜିନିଷ । ତେଣିକି ବଡ଼ ହେଲାବେଳକୁ ଆଉ କିଛି ଭୟ ନଥିବ । କାହା ହାତଧରି ଚାଲିବା ଦରକାର ପଡ଼ିବନି ।'

ଦେଠେଇ ମୋ ମୁହଁକୁ ଚାହିଁଲେ ବୁଝି ନବୁଝି ହେଲା ଭଳି । ମୁଁ କହିଲି, 'ସବୁ ବଦଳି ଗଲାଣି ଦେଠେଇ । ମଣିଷ ପରା ଚନ୍ଦ୍ର ଛାଡ଼ି ଗ୍ରହ ଗ୍ରହାନ୍ତରକୁ ଗଲାଣି ।'

'ହେଇଥିବରେ ପୁଅ । ମୋର ଆଉ କେତେ ସମୟ ଯେ ଦେଖିବି, ହେଇଥିବ ତୁ ଯେତେବେଳେ କହୁଛୁ ।'

ମଝିରେ ମଝିରେ କଥା କହୁକହୁ ଦେଠେଇ ଝରକା ବାଟେ ଚାହୁଁଛନ୍ତି ବ୍ୟସ୍ତ ହେଇ ।

'କିଏ ଆସିବ କି ଦେଠେଇ, ଅପେକ୍ଷା କରିଛ ? ଅକ୍କୁ ତ ଫେରୁଫେରୁ ରାତି ହେବ ନା ?'

"ସେଇ ମିତାକୁ । ଗଲାଣି କେତେବେଳୁ । ଫେରିବାକୁ ନାହିଁ ଏ ଯାଏ । ଶାଶୁବୁଢ଼ୀଟା ଘରେ ଅଛି । କିଏ ଆସିବକି ଯିବ ବିଚାର ଅଛି ? ତୁ ଆସି ଘଡ଼ିଏ ହେବ ବସିଲୁଣି, କୋଉ ସକାଳ ପହରୁ ବାହାରିଥିବୁ । ଭୋକ ଲାଗିବଣି । ଚା'ଟିକିଏ କି ଭାତମୁଠେ ବାଢ଼ି ଦେବାକୁ କ'ଣ ମୋର ବଳ ପାଉଛି ? ନୀତା କ'ଣ ଜଳଖିଆ ଦେଇଥିଲା ଆସିଲାବେଳେ ?"

"ତମେ ମୋତେ ବ୍ୟସ୍ତ ହୁଅନା ଦେଠେଇ । ଖାଇ ଆସିଛି ମୁଁ ବାଟରେ ଜଳଖିଆ । ଭୋକ ନାହିଁ ଏବେ । ମିତା ଆସିବନି କି । କାମ ଥିବ ବୋଲି ଅଟକି ଯାଇଥିବ ନା । ଏଇ ମାତ୍ର ବାରଟା ବାଜିଛି ।"

'କିଛି କାମ ନଥିବରେ, ଖାଲି ଗପୁଥିବ । ଭୋକ ଲାଗିବଣି ନା ତୋତେ ?'

"ମୋର ସତରେ ଭୋକ ନାହିଁ । କେତେ ଦିନରେ ଦେଖା । ଆମେ ବି ଗପସପ

ହେବା । ତମେ କୁହ, ମୁଁ ଶୁଣିବି । ଆମ ସ୍କୁଲ ପଢ଼ାଦିନରେ ତମେ କେତେ ଗପ କହୁଥିଲ । ଅନେକ ଗପ ସେଥିରୁ ମୋର ମନେ ଅଛି । ବେଳେବେଳେ ସିତୁନ୍, ଛାୟାକୁ ସେ ସବୁ ଗପ ମୁଁ କହେ ।"

"ଆଉ ତ ଏବେ କିଛି ମନେପଡୁନି । ଭୁଲାରୋଗ ଧରିଛି । ରିଙ୍କୁରବି ବେଳ ନାହିଁ ଶୁଣିବାକୁ । ଖାଲି ପାଠ ପାଠ... । ଖେଳିବାକୁ କ'ଣ ବେଳ ଅଛି ତାକୁ! ସଞ୍ଜ ହେଲେ ଶୋଇପଡୁଛି ହାଲିଆ ହୋଇ ?"

"ତମ ଆଖିର ଦୃଷ୍ଟିଶକ୍ତି କେମିତି ଏବେ ଅଛି ? ପଢ଼ିପାରୁଛ କିଛି ?"

"ଅନ୍ଧୁଣୀ ହୋଇନି ସତ, ହେଲେ କିଛି ଆଉ ସେମିତି ଭଲ ଦିଶୁନି । ବିଲ୍‌ବିଲା ଅକ୍ଷରସବୁ । ଧାଡ଼ି ଧରିପାରୁନି । ଦୂରକୁ କ'ଣ ମଣିଷ ଚିହ୍ନିପାରୁଚି ? ଭାଗବତ ଟିକିଏ ପଢୁଥିଲି ଆଗରୁ । ଏବେ ପାରୁନି । କାହାକୁ ବି ସମୟ ଅଛି ଯେ ପଢ଼ି ଶୁଣେଇବ ? ରଥ ପଣ୍ଡିତକୁ ଅକୁ କ'ଣ କହିଥିଲା, କେବେ କେମିତି ଆସୁଛନ୍ତି, ନିଧାର୍ଯ୍ୟ ନୁହେଁ । ତେବେ ପଢୁଛନ୍ତି ଅଧାଯେ ଅଧାଯେ ଯେ, ଜାଣିଲୁ ଦେବ, ପଢ଼ା ତାଙ୍କର ମୋ ମନକୁ ପାଉନି । ଅଧା ଗିଳିବେ, କଥା ସ୍ପଷ୍ଟ ନୁହେଁ । ଟିଭି ପାଖରେ ତ ସମସ୍ତେ, ଭାଗବତ ପୁରାଣକୁ କିଏ ପଚାରୁଚି ?"

ଟିକିଏ ଦମ୍ ନେଲେ ଦେଠେଇ । "ତୋ ବୋଉ ଭାଗ୍ୟ କରିଥିଲା ଚାଲିଗଲା । ମୁଁ ବସିଛି ପୁରୁଣା ସିନ୍ଦୁକ ଭଳି । ଏଇ ଝୁମୁରୀ, ଆମ ଜୟୀ ଝିଅମ.... ଏବର୍ଷ କଲେଜକୁ ଗଲା । ସେଇ କୁହେ, ମୁଁ କୁଆଡ଼େ ଗୋଟିଏ ଆଣ୍ଟିକ୍ ।" ହସିଲେ ଦେଠେଇ ନାତୁଣୀ କଥା କହୁକହୁ ଗର୍ବରେ । 'ତା' ଅର୍ଥ ଏଇ ପୁରୁଣା ଜିନିଷ ହେବ ତ ?

ମୁଁ କହିଲି, "ଖାଲି କ'ଣ ପୁରୁଣା, ଦାମୀ ମଧ । ଯାହାର ସ୍ୱତନ୍ତ୍ର ମୂଲ୍ୟ ଅଛି ।"

ଝୁମୁରି ଠିକ୍ କହିଛି । ଜେଜେମା'ଙ୍କୁ ଠିକ୍ ଚିହ୍ନିଛି । ସମସ୍ତଙ୍କ ଭିତରେ ବାରି ହୋଇଗଲା ଭଳି ତ ମୋ ଦେଠେଇ ନା !'

ଦେଠେଇ କିନ୍ତୁ ମୋ ଟିପ୍ପଣୀରେ ଖୁସି ହେଲେନି । ମୁହଁ ଶୁଖିଗଲା ଜାଣେନା କାହିଁକି । ସମସ୍ତେ ତ ଅଛନ୍ତି । ସବୁ ତ ଅଛି । ତଥାପି ଦେଠେଇ ଏକୁଟିଆ । ସମୟଟା ବି କେମିତି ନିର୍ଦ୍ଦୟ । ନିଜ ପାଇଁ ନିଜ ପାଖରେ ସମୟ ନାହିଁ । ମୋର ମନେହେଲା, ବାପା ବୋଉ ସିନା ନାହାନ୍ତି, ଥିଲେ ଏମିତି ଅଭିମାନ କରିଥା'ନ୍ତେ । ଆଉ ତୁମେମାନେ ବି ବୟସ ହେଲେ...

ଦାଣ୍ଡଦୁଆର ଖଡ଼ଖଡ଼ ହେଲା, ଦେଠେଇ ଚାହିଁଲେ, ମିତା ଆସିଲାଣି ବୋଧେ । ମିତା ଆସିଲା, ମୋତେ ଦେଖୁଦେଖୁ ଓଢ଼ଣାକୁ ଟାଣିନେଲା ମୁଣ୍ଡ ଉପରକୁ । ପାଦଛୁଇଁ ପ୍ରଣାମ କରୁକରୁ ପଚାରିଲା, "କେତେବେଳେ ଆସିଲ ଭାଇନା ? ଆଗରୁ ଖବର ପାଇଥିଲେ... ରିଙ୍କୁ, ପ୍ରଣାମ କର ଦଦେଇଙ୍କୁ ।" ପୁଅକୁ ନିର୍ଦ୍ଦେଶ ଦେଲା ମିତା ।

ରିକୁ ପ୍ରଣାମ କଲା । ତାକୁ ଆଦର କରୁକରୁ ମୁଁ କହିଲି, କିଛି ବି ଅସୁବିଧା ହେଉନି । ଇଚ୍ଛାହେଲା ଦେଠେଇଙ୍କୁ ଦେଖିବାକୁ ତ ବାସ୍, ଆସିଗଲି ସରପ୍ରାଇଜ୍ ଦେବିବୋଲି ।'

'ଟିକିଏ ଶୀଘ୍ର ଆସି ପାରିଥା'ନ୍ତି....' ସଙ୍କୁଚିତ ହୋଇ ମିତା କହିଲା, 'ଡାକ୍ତରଙ୍କ ପାଖକୁ ଚାଲିଗଲି ବୋଉଙ୍କ ବ୍ଲଡ ରିପୋର୍ଟ ଆଣିବା ପାଇଁ । ଗୋଡ଼ ହାତ ଧୁଅନ୍ତୁ, ମୁଁ ବାଢ଼ୁଛି ।'

ବ୍ଲଡ୍ ରିପୋର୍ଟ ସହିତ ଔଷଧ ପ୍ରେସକ୍ରିପ୍ସନ୍‌କୁ ଦେଠେଇଙ୍କ ତକିଆ ତଳେ ଥୋଇ ଦେଠେଇଙ୍କ ଉଦ୍ଦେଶ୍ୟରେ କହିଲା, 'ତମେ ଆଉ ପୁରୁଣା ଔଷଧ ଖାଇବନି ବୋଉ, ନୂଆ ଔଷଧ ଆଣିବା ।'

ମୁଁ ବ୍ୟାଗରୁ ନିତା ଦେଇଥିବା ଆରିସା ଓ କଦଳୀ ମିତା ହାତକୁ ବଢ଼େଇଦେଲି । ସେଥିରୁ ଦି'ଟା କଦଳୀ ଦେଠେଇଙ୍କ ହାତକୁ ବଢ଼େଇ ଦେଇ କହିଲା, 'ନିତାନାନୀ ଆରିସା ପିଠା ବି ଦେଇଛନ୍ତି । ହେଲେ, ତମର ବ୍ଲଡ୍‌ସୁଗାର ବହୁତ ବଢ଼ିଯାଇଛି ବୋଉ, ପରେ ଖାଇବ, ଟିକିଏ କମିଲେ ।'

'ବଢ଼ୁମ... ଦଉନୁ ଖଣ୍ଡେ ଚାଖିବି । ସିନିହରେ ପଠେଇଛି ମୋରି ପାଇଁ । ମୁଁ ଜାଣେ ପରା । ନିତା ପରି ମନ ଚିହ୍ନିବା ବୋହୂ ଭାଗ୍ୟରେ ଥିଲେ ମିଳେ । ଦେ... ମୋତେ ।' ପିଲାଙ୍କ ଭଳି ଅଳି କଲେ ।

ହଉ ହଉ ଦଉଛି କହି ହସିଦେଲା ମିତା ସରଳ ହସଟିଏ । କିଛି ମଳିଧୂଳି ନଥିଲା ସେଥିରେ । ଅଭିମାନ କି କାତରତା ନଥିଲା । ଥିଲା କେବଳ ଏକ ମା'ମନର ଆପଣାପଣ । ଅବୁଝା ସନ୍ତାନକୁ ମନେଇବାର ଭାବ, ତାଗିଦା କରିବାର ମିଛିମିଛିକା କଠୋରତା ।

ଭାବିଲି, କୁନିପୁଅ ରିକୁ ଦେଠେଇ ଭିତରେ କେତେ ଆଉ ତଫାତ୍ ! ମୁଁ ବି ହସିଦେଲି ମିତା ହସକୁ ସମର୍ଥନ କରି ।



# ନିର୍ବାଚନର ଚିତ୍ର

ଅଟା ଚକଟୁଚକଟୁ ସୁରେଖା କାନ୍ଥଘଣ୍ଟାକୁ ଚାହିଁଲେ । ନ'ଟା ବାଜିବ । ରାସ୍ତାରେ ଆଉ ଏତେଟା ହୋହଲ୍ଲା ନାହିଁ । ବୋଧେ ନିର୍ବାଚନ ଆଚାର ସଂହିତା ଲାଗୁ ହୋଇଯାଇଛି । ସନ୍ଧ୍ୟା ପାଞ୍ଚଟାରେ ତ ପ୍ରଚାର ବନ୍ଦ ହେବା କଥା । ହେଲେ ମାନୁଛି କିଏ, ସବୁ ଜାଣିଶୁଣି ବି ଅଜଣା ଭଳି ! ମଝିରେ ମଝିରେ ଜିନ୍ଦାବାଦ ଜିନ୍ଦାବାଦ ଡାକ ପକେଇଦେଲେ ଏବେ କୋଉ ମହାଭାରତଟା ଅଶୁଦ୍ଧ ହୋଇଯାଉଛି- ର ଭାବ ତ ସଭିଙ୍କ ମନରେ । ଶେଷ ମୁହୂର୍ତ୍ତର କଥା ନା । ଯା'ହେଉ ମଣିଷ ନିସ୍ତାର ପାଇଗଲା କାନଫଟା ଚିତ୍କାର ଭିତରୁ । ଓହୋ ! କି ଗର୍ଜନ ଏଇ ମାଇକ୍‌ଗୁଡ଼ାକର । କାନ ଅତଡ଼ା ପଡ଼ିଯାଉଥିଲା ଏଇ କିଛିଦିନ ହେଲା । ସକାଳରୁ ରାତିଯାଏ, 'ଆମର ଚିହ୍ନ କଲମ ଚିହ୍ନ' ନହେଲେ 'ଟଗର ଫୁଲକୁ ମନେରଖ' କିମ୍ବା 'ଡିବିରି ଚିହ୍ନରେ ଭୋଟ ଦିଅ' – ଶୁଣି ଶୁଣି ମୁଣ୍ଡବିନ୍ଧି ଯାଉଥିଲା । ଯିମିତି ପିଲାଏ ଜିଦ୍‌କରି ରା' ଧରି କାନ୍ଦନ୍ତି ଠିକ୍ ସେମିତି ବିରକ୍ତିକର । ଅବଶ୍ୟ ଆଜିକାଲି ଗୀତ ଷ୍ଟାଇଲରେ ତ କେତେବେଳେ ଜଣାଶୁଣା ଭଜନସ୍ୱର ମଧ୍ୟରେ ପ୍ରକ୍ରିୟା ଚାଲୁଛି ।

ସେ ଯାହାହେଉ ଘରକୁ ଫୋନ୍‌ଟିଏ ଆସିଲେ ଶୁଣିପାରୁଥିଲେ ନା, ଏ ପାଖରୁ କରିପାରୁଥିଲେ ଶାନ୍ତିରେ । ଟି.ଭି. ଦେଖିବା ତ ସମ୍ଭବ ହିଁ ହେଉ ନ ଥିଲା । ମନପସନ୍ଦର ସିରିଏଲ ଚାଲିଥିଲା ବେଳକୁ ପ୍ରଚାର ଗାଡ଼ି ଆସି ଠିଆହୋଇ ଯାଇଥିବ ଦାଣ୍ଡଦୁଆର ଛକ ଉପରେ । କେହି କ'ଣ ଶବ୍ଦର ଉପଦ୍ରବ କଥା ଚିନ୍ତା କରନ୍ତି ଟିକିଏ !

ଗୋଟିଏ ପରେ ଗୋଟିଏ ଗାଡ଼ି, ଧାଉଁଥିବେ ରାସ୍ତାରେ ସାଇଁସାଇଁ ହୋଇ ବାୟାବାତୁଳଙ୍କ ପରି । ମଣିଷ ନ ଥିବେ । ଶୁଭୁଥିବ ଶହେଜଣଙ୍କ ପାଟି ସବୁ ରେକର୍ଡେଡ ସ୍ଲୋଗାନ ଚିତ୍କାର ଶୁଭୁଥିବ । ଲୋକେ ଦୋହା ଧରୁଥିବେ । ଓହୋ ! ସତରେ ବିରକ୍ତିକର ।

ଆଜିକାଲି ପ୍ରଚାରର ଢାଞ୍ଚା ଅନେକ ବଦଳିଗଲାଣି । ବଦଳିଗଲାଣି ମଧ ଲୋକସମ୍ପର୍କର ଶୈଳୀ । ଇଲେକ୍‌ଟ୍ରୋନିକ୍ ମିଡ଼ିଆର ଅବଦାନ ପ୍ରଚାର ଦିଗଟାକୁ ସହଜ କରିଦେଇଛି । ବାରମ୍ବାର ଘରଘର ବୁଲି ଭୋଟରଙ୍କ ପାଖକୁ ଯିବା ଆବଶ୍ୟକ ନାହିଁ । ପ୍ରାର୍ଥୀଙ୍କୁ ଚିହ୍ନିବା ପାଇଁ ତ କାର୍ଡ ଅଛି । ଧରେଇଦିଅ ହାତରେ, ବାସ୍ । ନିର୍ବାଚନ ପୂର୍ବରୁ ଦିନେ କେବେ ଗାଡ଼ି ମୋଟର ବସ୍‌ରେ ଲୋକଙ୍କୁ ବୁହାଇ ଆଣି, ଭୋଜିଖିଆ, ଦିଅଁ ଦର୍ଶନ, କି ସହରବୁଲା ନାଁରେ ବେଶ୍ ଯାକ୍‌ଯମକିଆ, ଶୋଭାଯାତ୍ରାଟିଏ ବାହାର କରିଦେଲେ ଲୋକଙ୍କ ଆଖି ଖୋସି ହୋଇଯିବ । ପ୍ରାର୍ଥୀର ଥାଟବାଟ, ପଟିଆରା ଶକ୍ତି ପ୍ରଦର୍ଶନ ସହିତ ପ୍ରାୟୋଜିତ ମଞ୍ଚ ଉପରେ ଅଧ ଘଣ୍ଟିଆ ଓଜସ୍ୱିନୀ ଭାଷଣ- ଲୋକଙ୍କ ମନ କିଣିନେବାକୁ ଯଥେଷ୍ଟ, ଯାହା କହିବା କଥା, ଯାହା ମାଗିବା କଥା, ସେଇଠି ମାଗିନେବେ । ତା' ଛଡ଼ା ବାକି ସବୁ ପ୍ରତିଶ୍ରୁତି ତ ରହିଛି । ସେ ସବୁ ଲମ୍ବାଧାଡ଼ିର ହିସାବ ନାହିଁ ।

ଏଇ ଚିତ୍ର ଓ ଫର୍ମୁଲା ଭୋଟରଙ୍କ ଚେତନ ଜଗତରେ ଆପେ ଆପେ ହୋଇ ରହିଯିବ ଭୋଟ ଦେଲା ପର୍ଯ୍ୟନ୍ତ । ଏଠି ତ ଆଉ ଯୋଗ୍ୟ ଅଯୋଗ୍ୟ, ସମର୍ଥ ଅସମର୍ଥର କିଛି କଥା ନାହିଁ- ଏଇୟା ହିଁ ଚଳୁଛି ଆଜିକାଲି ।

ଏସବୁ ତାଙ୍କୁ କୁନାଳ କହୁଥିଲା । ନହେଲେ ସେ ତ ଘର ଭିତରର ମଣିଷ ଏତେକଥା କୋଉଠୁ ଜାଣନ୍ତେ ! ଆହୁରି ବି ସେ କହୁଥିଲା, ବୁଝିଲ ଜେଜେମା', ଏଇସବୁ ଯୋଉଁ ଶୋଭାଯାତ୍ରା, ମିଟିଂର ବ୍ୟବସ୍ଥା ଦେଖୁଛନା, ଏସବୁ ଭଦ୍ରଲୋକଙ୍କ ପାଇଁ । ଯା ବ୍ୟତୀତ ଆହୁରି ଅନେକ ବାଟ ଅଛି ଭୋଟ ମାଗିବା ପାଇଁ । ରାତିର ଅନ୍ଧାର ଭିତରେ କେତେ କ'ଣ ଦେଣନେଣ ହୁଏ । ସମସ୍ତେ ସବୁକଥା ଦେଖନ୍ତିନି କି ଜାଣନ୍ତି ନାହିଁ, କାମ ହୁଏ କିନ୍ତୁ । ଆଉ ସିଧାସଳଖ କିଛି ଲୋକହିତକର ପ୍ରସ୍ତାବ ଥାଏ, ନିର୍ବାଚନ ପୂର୍ବରୁ ସେ ସବୁକୁ କାର୍ଯ୍ୟକାରୀ କରାଯାଏ । ଅବଶ୍ୟ ଏସବୁ ଶାସକ ଦଳର କାମ । ତମେ ତ ଶୁଣିଥିବ ସାଇକେଲ, କମ୍ପ୍ୟୁଟର, ମୋବାଇଲଠୁ ଆରମ୍ଭ କରି ଆହୁରି କେତେ କ'ଣ ଗାଁକୁ, ଗାଁ ଭଳିଆ - ସହରୀଙ୍କୁ, ସହର ଭଳିଆ.... ଆଜି କାଲି ସବୁକିଛିର ଫର୍ମାଟ୍ ବଦଳି ଗଲାଣି । ଯେ କୌଣସି ପ୍ରକାରେ ଲୋକଙ୍କୁ ନିଜପକ୍ଷରେ ବାନ୍ଧି ରଖିବା କଥା । ସବୁ ସାମୟିକ । ଦଳଦଳ ଭିତରେ ପ୍ରତିଯୋଗିତା, ପାର୍ଟିପାର୍ଟି ଭିତରେ ସଲାସୁତୁରା.... ତମକୁ ଆଶ୍ଚର୍ଯ୍ୟ ଲାଗୁଥିବ, ଖାଉ ଖାଉ କୁନାଳ ଜେଜେମା'ଙ୍କୁ ରାଜନୀତି ପାଠ ପଢ଼ାଏ । ସେ ହାଁ କରି ଅନେଇଥା'ନ୍ତି ଟୋକାଟା କେତେ କଥା ଜାଣିଛି । ମନରେ ଖଟକା ବି ଲାଗେ, ପାଠଫାଠ ପଢୁଛି ନା, ଏଇ ଚଗଲା ମଣିଷଙ୍କ ସହିତ ପଡ଼ି ଆଜେବାଜେ କଥା ଶିଖୁଛି । କଅଁଳ ବୟସ ହାତକୁ ଏମିତି ଟଙ୍କା ପଇସା ସହଜରେ ଆସିଲେ ତ, ଭାସିଯିବ । ମନ ଅଥୟ ହୁଏ ଭାବୁଭାବୁ । ନିଶିଥ ତାଙ୍କ ପାଖରେ ପୁଅକୁ ଛାଡ଼ି ନିଶ୍ଚିତ ଯେ, ସେ ଏଠି ସୁରକ୍ଷିତ ରହିବ ଓ ପାଠପଢ଼ି ମଣିଷ ହେବ- ଏଇ

ଭରସାରେ । ଥରେ ଥରେ ନାତିକୁ ପଚାରନ୍ତି ଆଦର କରି- ତୋ' ପାଖରେ ଏତେସବୁ କଥା କିମିତି ପହଞ୍ଚୁଛି କିରେ ?

କୁନାଳ ହସେ- ଜେଜେମା'ର ନିର୍ବୋଧ ଆଶଙ୍କାରେ । କୁହେ, କି ଆଶ୍ଚର୍ଯ୍ୟ । ଆମ କଲେଜମାନଙ୍କରେ ବି ତ ନିର୍ବାଚନ ହୁଏ । ଠିକ୍ ସେମିତି, ଏଇ ଢଙ୍ଗରେ । ବେଶ୍ ବଡ଼ ଆକାରରେ ଦେଶର ନିର୍ବାଚନ, କଲେଜରେ ସାନ ଆକାରରେ । କହିବାକୁ ଗଲେ ପାର୍ଟିମାନେ ହିଁ ପ୍ରାର୍ଥୀମାନଙ୍କୁ ଠିଆ କରାନ୍ତି । ଟଙ୍କା ବି ସେମିତି ଖର୍ଚ୍ଚ ହୁଏ । ଅବଶ୍ୟ ଆଜିକାଲି କିଛି ନିୟମ ଲାଗୁ କରାଯାଇଛି ଏଇ ଖର୍ଚ୍ଚକୁ ନେଇ, ନହେଲେ ଆଉସବୁ ଏକ ପ୍ରକାରର । ଖାଇବାରେ ହିଁ ଖର୍ଚ୍ଚ ହୁଏ ଟଙ୍କା । ଦଳର ଶକ୍ତି ସମର୍ଥନର ନମୁନା କଲେଜ ନିର୍ବାଚନରୁ ଆଗୁଆ ମିଳିଥାଏ । ଏଥର ବୁଝିଲ ଜେଜେମା' ତମ ଅମଳର ଦେଶସେବା ଆଉ ସେବେକାର ଫର୍ମାଟ୍‌ଟା ପୁରୁଣା ହେଇ ରଦ୍ଦି କାଗଜ ଭିତରେ ପଶିଗଲାଣି । ଯେତେବେଳେ ଗାନ୍ଧୀ, ଗୋପବନ୍ଧୁ ଛବି ହୋଇ ବହି ପୃଷ୍ଠାରେ ରହିଗଲେଣି, ଆଉ ସବୁ କଥା ବି ସେମିତି । ଏଣିକି ନୂଆଁ, ସବୁ ଆଚାର ବିଚାର କାର୍ଯ୍ୟପ୍ରଣାଳୀ ସବୁ ନୂଆ, ନିୟମ ବି ନୂଆ ।

ସବୁ ଶୁଣି ସେ କହିଥିଲେ, "ଠିକ୍ ଅଛି ସବୁ ନୂଆ ହେଉ କିଛି କଥା ନାହିଁ । ମୂଳ କଥା ହେଲା, ସବୁକଥା ସୁରୁଖୁରୁରେ, ଶାନ୍ତିରେ ଯଦି ହୋଇଯାଇଥା'ନ୍ତା ତା'ହେଲେ ବିଶେଷ ଅସୁବିଧା ହୁଅନ୍ତାନି । ସବୁ ଠିକ୍‌ଠାକ୍ ଚାଲନ୍ତା । କାମ ବାଟେ କାମ ହୁଅନ୍ତା, ତା' ହେଉନିରେ ପୁଅ । କାନକୁ କିଛି ଭଲ କଥା ଶୁଭୁନି । ହାଣମାରକାଟ, ଗୁଳିଗୋଳା ବନ୍ଧୁକ ବ୍ୟବହାର ହେଉଛି ବୋଲି ଖବରକାଗଜ ଲେଖୁଛି । କାହିଁ ତୋ' ବାପା, କକାଙ୍କ ଅମଳରେ ତ ଏସବୁ ନଥିଲା, ଭୟ ଲାଗୁନଥିଲା । ସତ କହିବି ବାପ, ତୁ ଯେତେବେଳ ଯାଏ ବାହାରେ ରହୁଛୁ ନା, ମୋ ମନ ଖାଲି ଛଟପଟ କରୁଛି, ଆଶଙ୍କାରେ ଛାତି ଧଡ଼ପଡ଼ ହେଉଛି । କ'ଣ ହେଉନଥିଲା ନିର୍ବାଚନ, ହେଉଥିଲା ତ । ସେତେବେଳେବି ଲୋକେ ଦେଶକଥା ଭାବୁଥିଲେ । ଯୋଉମାନେ ଦେଶପାଇଁ ଜେଲ ଯାଉଥିଲେ, ପ୍ରାଣବଳୀ ଦେଉଥିଲେ, ସେମାନଙ୍କୁ ମନେପକାଇ ଆମେ ଗର୍ବ କରୁଥିଲୁ, ଦୁଃଖ ଲାଗିଲେ ବି, ଏବେ ତ ଖାଲି ଭୟ ଆଉ ଭୟ, ଯା ନାଁ କ'ଣ ଦେଶସେବା ? ହିଂସା, ହତ୍ୟା, ରକ୍ତପାତ, ଗୁଣ୍ଡାଗିରିକୁ କିଏ ଭୟ ନ କରିବ ଯେ-"

କୁନାଳ ଜେଜେମା'ର ଭୟାତୁର ମୁହଁକୁ ଦେଖି ବୁଝିପାରେ । କୁହେ ତମେ ମୋ ପାଇଁ ଏତେ ଚିନ୍ତା କରନି ତ । ମୁଁ କ'ଣ ସେସବୁ ଝମେଲା ଭିତରେ ଅଛି କି ? ତମେ ନିଶ୍ଚିନ୍ତ ରୁହ, ମୋର କିଛି ହେବନି ।

"କିମିତି ନିଶ୍ଚିନ୍ତ ଲାଗିବ କହ । ମୁଁ ତ ପୁରୁଣା ବିଚାରର ମଣିଷ । ତୋ' ଜେଜେ ଥିଲାବେଳର କଥା- ଆମ ଚିନ୍ତାଚେତନା ଭିତରେ ଗାନ୍ଧୀ, ତ୍ରିରଂଗା, ଚରଖାର ଚିତ୍ର ଆଜି ହେଇ ରହିଯାଇଛି । ଏଇ ସ୍ୱାଧୀନତା ଲଢ଼େଇରେ କେତେ ଜୀବନ ବଳି ପଡ଼ିଛି । ସେବକାର

ଦେଶପ୍ରେମ, ଦେଶସେବକଙ୍କ କଥାସବୁ ଶୁଣିଛି, ତୋ' ଜେଜେଙ୍କଠୁଁ । ଗାନ୍ଧିଙ୍କୁ ତ ଦେଖିନଥିଲି, ଗୋପବନ୍ଧୁ ଆମରି ରାଇଜର ମଣିଷ । ସେମାନେ ଦେବତା ଥିଲେ ଆମପାଇଁ । ଏବେ କ'ଣ ସେଭଳି ଦେବତା ଅଛନ୍ତି ? ମୋ ମା', ଜେଜେମା' ଯେତେବେଳେ ଭୋଟ ଦେଉଥିଲେ, ଆଖିବୁଜି ଦେଇ ଦେଉଥିଲେ । ଏତେ ଦଳ, ଏତେ ଚିହ୍ନ ଏତେ ବିଚାର କାହୁଁଅ ଫୋପଡ଼ା ଫୋପଡ଼ି ନଥିଲା । ନଥିଲା ମଧ ବାଦବିବାଦ, ହିଂସା କପଟ, ଷଡ଼ଯନ୍ତ ଗୋଡ଼ଟଣା ସ୍ୱଭାବ । ଉଦ୍ଦେଶ୍ୟ ସିଧାସଳଖ- ଆମ ଦେଶମଣିଷଙ୍କର କେମିତି ଉପକାର ହେବ । ଭଲମଣିଷଟିକୁ ବାଛିବା ପାଇଁ ଏତେ ଧନ୍ଦି ହେବାକୁ ପଡୁନଥିଲାରେ ପୁଅ । କିଏ ଉପକାରୀ, କିଏ କାମିକା, ମଣିଷର ସୁଖଦୁଃଖର ବନ୍ଧୁ କିଏ ଆମେ ଚିହ୍ନିଥିଲୁ । କାରଣ ସେମାନେ ସିଧାସଳଖ ଲୋକ ସମ୍ପର୍କରେ ଆସୁଥିଲେ । ଏବେତ ଆଉ ସେକଥା ନାହିଁ । କିଏ କାହାକୁ ବ୍ୟକ୍ତିଗତ ଭାବେ ଚିହ୍ନୁଛି କି ? ଇଏ ତ ଛୋଟ ପୌର ନିର୍ବାଚନ କଥା, ସାଧାରଣ ନିର୍ବାଚନରେ ବି ସେଇକଥା- କିଏ କାହାକୁ ଚିହ୍ନୁନି । ସେଇ ଚିହ୍ନ । ଚିହ୍ନକୁ ହିଁ ଚିହ୍ନିବା କଥା । ସେଥିରେ ଏଇ ବାଛିବାଟା କେତେ ଠିକ୍ ହେବ ? ଦଳର ବିଚାର ଆମ ଭଳି ଘର ଭିତର ମଣିଷ କ'ଣ ବୁଝିବ, ଶୁଣାକଥାରେ କେତେ ଠିକ୍ ହେବ, କିଏ କହିବ ? ଡାକବାଜି ଯନ୍ତରେ ଚିତ୍କାର କରି କହିବା କଥା "ହେ ଭୋଟର ଭାଇ ଅମୁକଟା ମୋ ଚିହ୍ନ । ଚିହ୍ନକୁ ଦେଖି ମୋତେ ଚିହ୍ନ ଆଉ ଭୋଟଦିଅ ଏଇୟା ତ..... ସୁରେଖା ନିଜ ବିଚାର ଥୋଇବାକୁ ଯାଇ ମୁହଁ ଆମ୍ପିଳା କରି ଉଠିଗଲେ... ।"

କୁନାଳ ବୁଝିଲା, ଜେଜେମା' ମୂଲ୍ୟବୋଧର ମଣିଷ । ବଦଳେଇ ହେବନି ତାଙ୍କ ଚିନ୍ତାଧାରା । ସେଇଥିପାଇଁ ତ ସେ ବିଗତ ନିର୍ବାଚନମାନଙ୍କରେ ଭୋଟ ଦେବାକୁ ଯାଉନଥିଲେ । ପଚାରିଲେ କହୁଥିଲେ ଯିଏ ଆସୁଛି ଆସୁ ପରିସ୍ଥିତି ତ ବଦଳିବାର ନାହିଁ କି ବଦଳିନି । ଗାଁ ହେଉକି ସହର, ଯେମିତି ଥିଲା ସିମିତି ଅଛି । ନାଁ ଦୁଆର ମୁହଁରୁ ଅଳିଆ ସଫା ହେଉଛି ନା ମଣିଷ ମନରୁ ଆବର୍ଜନା ସଫା ହେଉଛି । ମୁଁ କାହାକୁ ଚିହ୍ନିନି, କାହା କାମ ପରିଖିନି । ଚିହ୍ନ କ'ଣ ମୋ ନିତିଦିନର ଦୁଃଖ ଦୁର୍ଦ୍ଦଶା ଘୁଞ୍ଚେଇ ଦେବ ଯେ, ଭୋଟ ଦେବାକୁ ଯିବି ?"

ସେ ନିଜେ ଏଇଥର ବୁଝେଇ ଖୁସାମତ କରିଛି । ଜାଣି ପଲିଟିକ୍ସ କ୍ଲାସ୍ ନେଇଛି । ମୌଳିକ ଅଧିକାର ବିଷୟରେ ବୁଝେଇ କହିଛି । କ'ଣ ବୁଝିଛନ୍ତି କେଜାଣି, ରାଜି ହେଇଛନ୍ତି ଭୋଟ ଦେବାକୁ ଯିବେ ବୋଲି । ତା'ଛଡ଼ା ସେ ଜେଜେମା'ର 'ପ୍ରାଣ' । ତା'କଥାକୁ ସେ କାଟି ପାରିବେନି । ତଥାପି ତା'ର ବିଶ୍ୱାସ ହେଉନି-ଶେଷ ମୁହୂର୍ତ୍ତରେ ଯିବେନି ବୋଲି ମନା କରିଦେଇ ପାରନ୍ତି । ତା'ର ଆଉ କ'ଣ ଚାରା ଅଛି । ବାରମ୍ବାର ବି କହିଛି "ଗୋଟାଏ ଭୋଟର ଓଜନ କିଛି କମ୍ ନୁହେଁ ବୋଲି । ଆମ ସାଧାରଣ ଲୋକଙ୍କ ଭୋଟ୍‌ରେ ହିଁ ସରକାର ଗଢ଼ା ହୁଏ । ଆମେ ଯେମିତି ଲୋକ ବାଛିବା ସେମିତି ଫଳ ପାଇବା, ଦେଶର ବିକାଶ

ପରୋକ୍ଷରେ ଆମରି ଦ୍ୱାରା -ବୁଝେଇଛି ଏକଥା । ହେଲେ ସୁରେଖାଙ୍କର ସେଇ ଏକା ପ୍ରଶ୍ନ-ଚିହ୍ନକୁ ନେଇଁ ମଣିଷକୁ କେମିତି ଚିହ୍ନିହେବ ?"

ସୁରେଖାଙ୍କ ଭାବନାରେ ବ୍ୟାଘାତ ଘଟାଇ ବାହାରେ କଲିଂବେଲ୍‌ଟା ବାଜି ଉଠିଲା ଅଥୟ ହୋଇ । ଏତିକିବେଳକୁ କିଏ ଆସିଲା ଯେ, ମନକୁମନ କହି ଚୁଲି ଉପରୁ ତାୱାଟା ଓହ୍ଲେଇ ସେ ଦୁଆର ଖୋଲିବାକୁ ତଳକୁ ଓହ୍ଲେଇଗଲେ । କଲିଂବେଲଟା କିନ୍ତୁ ଥରକୁଥର ବାଜି ଉଠୁଥିଲା । କିଏ ଏଇ ଅଥୟ ମଣିଷ ଚିପି ଚାଲିଛି ବେଲ୍‌ଟାକୁ । ଆଚ୍ଛା କଥା ତ.... ତରବର ହୋଇ ସେ ପହଞ୍ଚିଗଲେ ଗ୍ରୀଲ୍ ଗେଟ୍ ପାଖରେ ।

ଶୁଣିଲେ, କିଏ ଜଣେ କହୁଛି ଗ୍ରୀଲ୍‌ଗେଟ୍ ସେପାଖରୁ, ସ୍ତ୍ରୀଲୋକର କଣ୍ଠସ୍ୱର "ଓହୋ, ଶୀଘ୍ର ଆସୁନ କିଏ ଆସୁଛ । ଏତେ ଡେରି କଲେ ଠିଆ ହେଇଥିବୁ କି ଆମେ ତମ ଦୁଆରେ, ଆହୁରି ଶହେ ଘର ଅଛିନା... ।"

ମଲା ତୁ କିଏମ ଏମିତି, ସମୁଦ୍ର ମାଡ଼ି ଆସୁଛି ନା, ଘରେ ନିଆଁ ଲାଗିଯାଉଛି ଯେ ଏତେ ଅଥୟ ତର ସହୁନି । ଆସୁଛି ତ.... ମନପବନ କଠଉ ପନ୍ଧିଛି କି, ତୁ ଭାବିଲା ମାତ୍ରେ ଉଭା ହୋଇଯିବି । ସ୍ୱଗତୋକ୍ତି କରୁକରୁ ଗେଟ୍ ଖୋଲିଲେ ସୁରେଖା ।

ଚାରି ଛ' ସ୍ତ୍ରୀଲୋକ, ମାନେ ଭଦ୍ରମହିଳା ଆଗପଛ ହୋଇ ଠିଆ ହୋଇଛନ୍ତି ସବୁ ଅଚିହ୍ନା ମୁହଁ । ମନେପଡୁନି କୋଉଠି ଦେଖିଲା ଭଳି । ପ୍ରଶ୍ନିକ ଆଖିରେ ସେ ଚାହିଁଲେ...

ତାଙ୍କୁ ସାମ୍ନାରେ ଦେଖି, ଜଣେ ଭଦ୍ରମହିଳା, ବେଶ୍ ଚିକିମିକିଆ ଶାଢ଼ୀ ପିନ୍ଧି, ମୁଣ୍ଡରେ ଓଢ଼ଣା ଟାଣି ଆଗେଇ ଆସି ତାଙ୍କ ପାଦ ଛୁଇଁ ପ୍ରଣାମ କରୁକରୁ କହିଲା "ମୁଁ ସବିତା । ଏଇ ସାତନମ୍ବର ୱାର୍ଡ଼ ପାଇଁ ଠିଆ ହୋଇଛି ଜାଣିଥିବେ ତ; ଏଇଟା ସଂରକ୍ଷିତ ଆସନ ୱିମେନ କ୍ୟାଣ୍ଡିଡ଼େଟ୍ ପାଇଁ । ମୁଁ ଏହି ରାଉତସାହି ଶିବ ଦଳେଇଙ୍କ ବୋହୂ । ଶାସକଦଳ ତରଫରୁ ଠିଆ ହୋଇଛି ପ୍ରଥମଥର ପାଇଁ । ମୋ ଚିହ୍ନ ହେଲା 'କଲମ' । ମୁହଁରେ ଜହ୍ନଫୁଲିଆ ହସ ଫୁଟେଇ କହିଲା ଦଳେଇଘର ବୋହୂ 'ସବିତା' । ଏବଂ ଆଉ ଜଣେ ମହିଳା ସାଙ୍ଗେ ସାଙ୍ଗେ କାର୍ଡ଼ ଖଣ୍ଡିଏ ବଢ଼େଇ ଦେଲା ହାତକୁ ତା' ସହିତ 'କଲମ'ଟିଏ ମଧ୍ୟ । କହିଲା, ଆପଣ ତ ଶିକ୍ଷିତ ପରିବାରର, ମନେ ରହିବ ଯିମିତି ଆମର କଥା । ଆମ ଚିହ୍ନ 'କଲମ' ।"

ସବୁ ଅଟୋମେଟିକ୍ ସୁଇଚ ଟିପିଲା ଭଳି ତା'ପଛକୁ ତା' ପଛ ମେସିନ୍ ଯେମିତି ଅଥବା ଚାବିଦିଆ କଣ୍ଢେଇ । ସୁରେଖା ଚାହିଁଥିଲେ ଅବାକ୍ ହେଇ ପଚିଶ ତିରିଶ ବର୍ଷର ଥୁକୁଲ ଥାକୁଲ ବୋହୂଟିକୁ । କିଛି କହିବା କି ପଚାରିବା ଆଗରୁ ପୁଣିଥରେ ପ୍ରଣାମ କରି ତଳକୁ ଓହ୍ଲେଇଗଲା । ସବିତା ଓରଫ 'କଲମ ଚିହ୍ନ'- ସାତ ନମ୍ବର ୱାର୍ଡ଼ର ପ୍ରାର୍ଥିନୀ ଶିବଦଳେଇଙ୍କ ବୋହୂ ।

ତାଙ୍କ ପାଟିରୁ ପଦୁଟିଏ ଶବ୍ଦ ଉଚ୍ଚାରିତ ହେଲାନି । କେବଳ ଚାହିଁ ରହିଲେ ରାସ୍ତାକୁ

ଓହ୍ଲେଇଯିବା ପୂର୍ବରୁ ଛ'ଟି କଣ୍ଠସ୍ୱର କୋରସ ଗାଇଲା ଭଳି ଏକାଠି କହି ଉଠିଲେ "ମନେରହିଲା ତ ମାଉସୀ ଆମ ଚିହ୍ନ 'କଲମ' ଚିହ୍ନ ।"

ଜରିଧଡ଼ିଆ, ଗୋଲାପୀ ଶାଢ଼ୀ ପିନ୍ଧା ବୋହୂଟି, ଯିଏ ଏଇ ସାଂଗେ ସାଂଗେ ତା' ପରିଚୟ ଶିବଦଲେଇଙ୍କ ବୋହୂ ବୋଲି ଦେଇଗଲା ତାକୁହିଁ ସେ ଚାହିଁଥିଲେ ତଟସ୍ଥ ହୋଇ ଏବଂ ତର୍ଜମା କରୁଥିଲେ ନିଜ ଭିତରେ ସଦ୍ୟ ଶୁଣିଥିବା ତା'ର ଆନ୍ତରିକତାହୀନ, ସମର୍ପଣ ଭାବ ରହିତ, ଦେଶପ୍ରୀତିର ଉଚ୍ଚାରିତ ସହଜ ସଂଳାପଗୁଡ଼ିକୁ । ମାପୁଥିଲେ ତା' କଥାର ଗଭୀରତାକୁ । ଗେଟ୍ ବନ୍ଦକରି ଘର ଭିତରକୁ ଯାଉଯାଉ ଭାବିଲେ ଏମାନେ କୁଆଡ଼େ ଦେଶସେବୀ ଗାନ୍ଧୀ ଗୋପବନ୍ଧୁ, ଦେଶର ଉତ୍ତରାଧିକାରୀ । ଏମାନଙ୍କ ହାତରେ ଦେଶ ମାତୃକାର ଭାଗ୍ୟ ନିର୍ଭର କରୁଛି । କଥା ଭିତରେ 'ସେବା' ଶବ୍ଦର ବାରମ୍ବାର ଉଚ୍ଚାରଣ ତ କରୁଛନ୍ତି, ହେଲେ ସେଇକଥାରେ କେତେ ସମର୍ପିତ ଭାବ ଅଛି ସେକଥା ପରମେଶ୍ୱର ହିଁ ଜାଣନ୍ତି । ଦେଶର ଗତି ପ୍ରଗତିକୁ ଆଗକୁନେବେ ବୋଲି ଝିଅପିଲାଏ ରାଜନୀତି ଭିତରକୁ ଓହ୍ଲେଇଲେଣି କିନ୍ତୁ ଦେଖାଯାଉ ଦେଶ କୁଆଡ଼କୁ ଯାଉଛି ।

ବିଶ୍ୱାସ ଅବିଶ୍ୱାସର କୁହେଳି ଭିତରେ ସୁରେଖାଙ୍କ ବୋଧଶକ୍ତି ବାଟବଣା ହେଇଯାଉଥିଲା ତଥାପି ସେ କାଲି ସକାଳୁ ଭୋଟ ଦେବାକୁ ଯିବେ । କୁନାଙ୍କୁ କଥା ଦେଇଛନ୍ତି ଯେତେବେଳେ ନଯାଇ ଉପାୟ ନାହିଁ ।

ଦଶମିନିଟ୍ ବି ଯାଇନି, ପୁଣି ବାଜିଲା କଲିଂବେଲ୍ । ଟିକିଏ ବିରକ୍ତ ଭାବ ନେଇ ସୁରେଖା ଓହ୍ଲେଇଲେ ତଳକୁ ଗେଟ୍ ଖୋଲିବାକୁ । ଏଥର ଯୁବକ ଦୁହେଁ । ଚିହ୍ନା ଚିହ୍ନା ମନେହେଲା ମୁହଁଟା । ଯିମିତି କେବେ କୋଉଠି ଦେଖିଛନ୍ତି । ଯୁବକ ଦୁହେଁ ନମସ୍କାର ହେଲେ । ଆଜ୍ଞା, ମୁଁ ସନ୍ତୋଷ ଛୋଟରାୟ ଗତଥର ଏଇ ୱାର୍ଡ଼ର କର୍ପୋରେଟର ଥିଲି ଜାଣିଛନ୍ତି । ମୋତେ ଓ ମୋ କାମକୁ ପରଖିଛନ୍ତି ନିଶ୍ଚୟ ।

ମନେପଡ଼ିଲା ସୁରେଖାଙ୍କର, ଏଇ ରାସ୍ତାର ଡ୍ରେନ୍ ତିଆରିବେଳେ ଥରେ ଅଧେ ଦେଖିଛନ୍ତି । ହସିଦେଲେ ଟିକିଏ, କ'ଣ ହେଲା ଯେ...

"ଆଜ୍ଞା ଏଥର କିନ୍ତୁ ଏଇ ଆସନଟା ସଂରକ୍ଷିତ ହୋଇଯାଇଛି ମହିଳାଙ୍କ ପାଇଁ, ମୁଁ ସେଇକଥା କହିବାକୁ ଆସିଥିଲି । ମୋ ଭଉଣୀ ନିବେଦିତା ଠିଆ ହୋଇଛି ଏଇ ୱାର୍ଡ଼ର ସ୍ୱାଧୀନ ପ୍ରାର୍ଥୀ ଭାବେ । ତାର ଚିହ୍ନ 'ଟଗରଫୁଲ' । ନମସ୍କାର ମୁଦ୍ରାରେ ଯୁବକଟି ସୁନ୍ଦର କାର୍ଡ ଖଣ୍ଡେ ବଢ଼େଇ ଦେଲା ହାତକୁ, କାର୍ଡରେ ଭଉଣୀ ନିବେଦିତାର ନମ୍ର ନିବେଦନାତ୍ମକ ଉଜ୍ଜ୍ୱଳ ଛବି ।"

ସୁରେଖା ହାତରେ ଧରି ଚାହିଁଲେ ମୁହୂର୍ତ୍ତେ ଛବିଟିକୁ । ଗୋଛାଏ ଟଗରଫୁଲର ସ୍ତବକ ଭିତରେ ନିବେଦିତାର ହସ ହସ ମୁହଁ । ଫେରିଲାବେଳେ ସନ୍ତୋଷ ଛୋଟରାୟ,

ଶେଷନିବେଦନ କରିଗଲା, ଆଜ୍ଞା ଆପଣଙ୍କୁ ଆଉ କ'ଣ କହିବି ? ନିଜ ବିଚାର ପ୍ରୟୋଗ କରି ଯାହା ଠିକ୍ ମନେ କରିବେ, ତା'ପାଇଁ ନିଜ ମତାଧିକାର ସାବ୍ୟସ୍ତ କରିବେ । ନମସ୍କାର ।

ଏଠିବି ସେ କିଛି ନକହି ହସିଦେଲେ ପ୍ରତ୍ୟୁତ୍ତରରେ । ଇଏବି ଗୋଟାଏ ଚିତ୍ର ଗଣତନ୍ତ୍ର ଦେଶର । ସତରେ କେତେ ଚେହେରା କେତେ ରୂପକୁ ସେ ଦେଖିଲେଣି ଯା'ଭିତରେ ।

ନିର୍ବାଚନ ଦିନର ସକାଳ ।

ଆଜି ସକାଳର ଚେହେରାଟା ଟିକିଏ ଅଲଗା ଜଣା ପଡୁଥିଲା ।

ଯଦିଓ ନିତିଦିନ ଭଳି ସୂର୍ଯ୍ୟ ଉଇଁଥିଲା । ପକ୍ଷୀ ଡାକିଥିଲା । ମନ୍ଦିର ଭିତରୁ ଘଣ୍ଟିଘଣ୍ଟା ଶୁଭୁଥିଲା । ରାସ୍ତାରେ ରିକ୍ସା, ମୋଟର, ସାଇକେଲ, ବୁଲାବିକାଳୀଙ୍କ ପରିଚିତ ଡାକ ଶୁଭୁଥିଲା । ତଥାପି ପରିବେଶଟା କେମିତି ଅଲଗା ଅଲଗା ଜଣା ପଡୁଥିଲା । ଟିକିଏ ଗମ୍ଭୀର ।

ଅଫିସ୍ ସ୍କୁଲ ସବୁ ଛୁଟି ଘୋଷିତ ହୋଇଥିବାରୁ ରାସ୍ତାଘାଟ ଶୁନ୍‌ଶାନ୍ ନିଧଡ଼କ ରହିଥିଲା । ଆଖପାଖର କୋଚିଂ ସେଣ୍ଟର, ଟ୍ୟୁସନ୍ ପେଣ୍ଡରେ ପିଲାଏ ନଥିଲେ । ସବୁଠି ନିର୍ବାଚନର ଛିଟା; ହେଲେ ସୁରେଖାଙ୍କର ଘର ଭିତରର ଚେହେରା କିଛି ବଦଳିନଥିଲା କି କୌଣସି କାମ ଅଟକି ନଥିଲା କିମ୍ବା ଅଧିକା ବି ହୋଇନଥିଲା ନିତିଦିନର କାମ ସେ କରି ଚାଲିଥିଲେ । ହେଲେ ତାଙ୍କର କୌତୂହଳୀ ଆଖି କାନ ବାଡ଼ିପଟ, ଦାଣ୍ଡପଟ ଆଡ଼କୁ ଠିକ୍ ନଜର ରଖିଥିଲା । ଘଟଣା କ'ଣ ଆଉ କୁଆଡ଼ିକି ଯାଉଛି ।

ସେ ଲକ୍ଷ୍ୟ କରୁଥିଲେ ରାସ୍ତାର ଚାପା ଗହଳିକୁ । ସାହିର ଯୁବକ, ପୌଢ଼, ବୃଦ୍ଧ ସଭିଙ୍କ ମୁହଁରେ ଗୋଟାଏ ପ୍ରକାରର ବ୍ୟଗ୍ରତା ବାସ୍ତବତାର ଛାଇ, ସତେଯେମିତି ପୁଅ-ଝିଅ, ଝିଆରି-ପୁତୁରାଙ୍କ କାର୍ଯ୍ୟ ନିମିତ୍ତ । ଯେମିତିକି, ଏଇ ଆସି ବରଯାତ୍ରୀ ପହଞ୍ଚିଯିବେ, କି ଭାରଥୋର ନେଇ ବୋହୂ ଆସି ପହଞ୍ଚିବାର ମାହୋଲ ।

ଧଳା କାଗଜରେ ବୁନ୍ଦାବୁନ୍ଦା ସ୍ୟାହି ପଡ଼ିଲା ଭଳି, ଖୋଲା ରାସ୍ତାରେ, ଦି ଚାରି ଜଣିଆ, କି ଛ' ଆଠ ଜଣିଆ ହେଇ ଛକେ ଛକେ ଯୁବକ ଠିଆହୋଇ ଚୁପ୍‌ଚାପ୍ ମୁହଁ ଚାହାଁଚୁହିଁ ହେଉଛନ୍ତି, ବେଶି କଥା ଶୁଭୁନି, ତୁନିତାନି ସବୁ । ସେ ଘରୁ ବାହାରକୁ, ବାହାରୁ ଭିତରକୁ ହେଇ ତରବରିଆ ଟିକେ ଘରକାମ ସାରିବାକୁ ଚାହିଁଲେ । କୁନାଙ୍କଟା କୁଆଡ଼େ ଯାଇଛି- ଗଲାବେଳେ କହିଯାଇଛି, କାମ ସାରି ଦେଇଥିବ ଶୀଘ୍ର । ମୁଁ ଆସିଲେ ଯିବା ବୁଥ୍ ତ ବେଶି କିଛି ଦୂର ନୁହେଁ । କେବଳ ଏତିକି ଯେ ଡେରିକଲେ ଭିଡ଼ ହୋଇଯିବ ।

ଦିନ ଦଶଟା ବାଜିଲା ।

ବାଡ଼ିପଟେ ରହୁଥିବା ପାର୍ଟିର କର୍ମୀମାନେ ଏବଂ କିଛି ସ୍ୱେଚ୍ଛାସେବୀ, ନିଜ ନିଜ ଭିତରେ ଡକାଡକି ହେଇ ସାଇ ପଡ଼ିଶାଙ୍କୁ ତରବର କରୁଥିଲେ ଏକାଠି ସାଙ୍ଗ ହେଇ ବୁଥ୍‌କୁ ଯିବାପାଇଁ । ସତେଯେମିତି ଭୋଜି ଖାଇବାକୁ ଯିବେ ଅଥବା ମେଳା ଦେଖିବାକୁ । ପେଡ଼ିଲୁଗାମାନ ପିନ୍ଧି ସାଜିସୁଜି ହୋଇଯିବାକୁ ତ ପୁଣି କିଛି ସମୟ ଲାଗିବ ।

ସବୁଠୁ ବେଶି ପାଟି ଶୁଭୁଥିଲା ଶାସକ ଦଳର ଓ୍ୱିମ୍ୟାନ ଓ୍ୱରକର ଏସ୍‌ଏଚ୍‌ଜିର ସକ୍ରିୟ ସଭ୍ୟା ନର୍ମଦାର । ସାହିର ଏ ମୁଣ୍ଡରୁ ସେମୁଣ୍ଡ ଟହଲମାରି କଥାରେ କଥାରେ କମ୍ପଉଥିଲା ନର୍ମଦା । ଏକଜୁଟ କରୁଥିଲା ସାଇମାଇପିଙ୍କୁ । ମନେପକାଇ ଦେଉଥିଲା କୋଉ ଚିହ୍ନରେ କିମିତି ଭୋଟ ମେସିନର ବଟନ୍ ଚିପିବ । ସତେଯେମିତି ସେ ଜଣେ ଏକ୍ସପର୍ଟ, ସବଜାନତା । କୁହାଳିଆ ସ୍ତ୍ରୀଲୋକଟା । ସବୁଠି ତା'ର ପ୍ରବେଶ । ବୟସ ଚାଳିଶ ପଇଁଚାଳିଶ ହେବ । ଝିଅଟିଏ, ନୂଆ ନୂଆ ତ କଲେଜ ଯାଉଛି । ସିଏବି କିଛି କମ୍ ନୁହେଁ । ଏକାରହେ ଝିଅକୁ ନେଇ । ଆଗରୁ ଛୋଟମୋଟିଆ ଚାଳଛପର ଘର ଥିଲା ତା'ର । ଏଇମାତ୍ର ତିନିଚାରି ବର୍ଷ ହେଲା ଚାଳଘର ଭାଙ୍ଗି କୋଠାଘର କରିଛି । ବିଚିତ୍ର ସ୍ୱଭାବ ।

ପାଞ୍ଚଜଣ ପାଞ୍ଚକଥା କୁହନ୍ତି ତା' ସ୍ୱଭାବ ନେଇ । ଆମ ଲୋକଙ୍କ ସ୍ୱଭାବ ବି କୋଉ କମ୍ କି । ସଜମାଛରେ ପୋକ ପକାଇବାକୁ ପଛେଇବେନି । ତେବେ ପଛପଟ ସାହିର ମାହୋଲ ହିଁ ସେମିତି । ସବୁ ଖଟିଖିଆ ମଜୁରିଆ ଶ୍ରେଣୀର ଅଥବା ପିଅନ, ମିସ୍ତ୍ରୀ କିମ୍ବା ଓ୍ୱାଚ୍‌ମ୍ୟାନ୍ ଶ୍ରେଣୀର । କିଏ ଗ୍ୟାରେଜ୍‌ରେ କାମ କରେ ତ କିଏ ଦୋକାନରେ । ସେମାନଙ୍କପାଇଁ ଜୀବନ ଜିଇଁବାଟା ହିଁ ସବୁଠୁ ବଡ଼ କଥା । ଆଉ ସବୁ ପଛ । ଭଲ ମନ୍ଦ ସୁନ୍ଦର ଅସୁନ୍ଦର ଉଚିତ ଅନୁଚିତର ମାନେ ନଥାଏ ତାଙ୍କ ପାଖରେ । ସେଇ ଭିତରୁ ଜଣେ ନର୍ମଦା । ତା'ର ସ୍ୱାମୀ ତାକୁ ଛାଡ଼ି ଅନ୍ୟ ସ୍ତ୍ରୀ ପାଖରେ ରହୁଛି । କାହିଁକି, କ'ଣ ସେ ବିଷୟରେ ସୁରେଖା ଅବଶ୍ୟ କିଛି ଜାଣନ୍ତିନି କି ଜାଣିବାକୁ ତାଙ୍କର ଇଚ୍ଛା ନାହିଁ । ଯେତିକି ଆଖିରେ ପଡ଼େ, କାନକୁ ଶୁଭେ ସେଇଥିରୁ ଯାହା ଅନୁମାନ କରିବା କଥା ।

ରାତି ପାହିଲାଠୁ ରାତି ପର୍ଯ୍ୟନ୍ତ ତା'ପାଟି ଶୁଭୁଥାଏ । ସେ ଓ ତା'ଘର ସିଧା ସଳଖ ତାଙ୍କ ଘରକୁ ଦିଶେ । ଯଦିଓ ସେଇ ପଛପଟ ସାହି ସହିତ ତାଙ୍କର କୌଣସି ସମ୍ପର୍କ କି ଯୋଗାଯୋଗ ନାହିଁ, ତେବେ କୌତୂହଳବଶତଃ କେବେକେବେ ସେ ନିଘା କରନ୍ତି । ତା' ସ୍ୱଭାବ ଆଉ କାରବାର ତାଙ୍କୁ ଭଲ ଲାଗେନି ସତ । ହେଲେ ନିରୋଳା ସମୟରେ ନର୍ମଦା ଓ ତା'ଝିଅ ତାଙ୍କ ମନଅଗଣା ଭିତରକୁ ପଶିଆସନ୍ତି । ଭାବିଲେ ଦୟାଆସେ । ଅସହାୟ ସ୍ତ୍ରୀ ଲୋକଟିଏ । ଭରା ବୟସ । ତା' ସହିତ ଝିଅର ଦାୟିତ୍ୱ । ଦି'ଦିଟା ପେଟ ପୋଷିହେବ କିମିତି । ଗୁଣବତୀ କି ବିଦ୍ୟାବତୀ ନୁହେଁ କି ଧନସମ୍ପଦରେ ବି ଭାସୁନି; ଦାୟିତ୍ୱ ନେବାକୁ ବି ହୁଏତ କିଏ ନଥିବେ । ଅଥଚ ନିଜେ ବଞ୍ଚି ଝିଅକୁ ମଣିଷ କରିବାର ଦାୟିତ୍ୱ ତା'ର କାରଣ ସେ ମା' ଜନ୍ମଦେଇଛି । ଆଡ଼େଇ ତ ପାରିବନି, ପୁରୁଷ ଜାତିଟା ସବୁବେଳେ ନିହାତି ସ୍ୱାର୍ଥପର । କ'ଣ ଅଛି ବି ଅଧିକା ତା'ର ସମ୍ପତ୍ତି ବୋଲି ନିଜ ଦେହଟାକୁ ଛାଡ଼ିଦେଲେ । ହାତଗୋଡ଼କୁ କାମରେ ଲଗାଇ ଘରର ଖଟି ଚାରପାଇଟି କରି ତାଙ୍କ କାମବାଲୀ ସୁନାମଣୀ ଭଳି ପରିବାର ଚଳେଇଥିଲେ ହେଇଥା'ନ୍ତା । ସେ ତ ଆତ୍ମମର୍ଯ୍ୟାଦା ଆଉ ସ୍ୱାଭିମାନର

କଥା । ତେବେ ସମସ୍ତେ ତ ସେଭଳି ହେବେ ବୋଲି କିଛି ମାନେ ନାହିଁ । ନର୍ମଦା କିନ୍ତୁ ସହଜ ବାଟଟିକୁ ଆପଣେଇଥିଲା ବୋଲି ଲୋକେ କୁହାକୁହି ହୁଅନ୍ତି । ହେଇଥିବ ବି ହେଇନଥିବ ବି । ତା' ଦେହମନର ମାଲିକ ସିଏ । କିଏ କାହିଁକି ସେଥିରେ ମୁଣ୍ଡ ଖେଳେଇବ । ତେବେ ତା'ଘରେ କିଛିଟା ଗହଳି ଲାଗିଥାଏ ।

ଭଲକଥା ଆଜିକାଲି ଅନେକଙ୍କୁ ସ୍ୱାଦ ଲାଗେନା, ତା'ଛଡ଼ା ଯା'ହାତଧରି ଘର କରିବ ବୋଲି ନର୍ମଦା ଆସିଥିଲା, ସେ ଯଦି ନିଜ ସୁଖ ଦେଖି କରଛଡ଼ା ଦେଲା, ସେ କାହିଁକି ତାକୁ ଭକ୍ତି ହେଇ ସତୀ ସାବିତ୍ରୀ ସାଜିବ ଯେ ? ସାଜିଲେ ଯଦି ତା ପେଟ ପୂରିଯାଉଥା'ନ୍ତା କି ଝିଅ ପାଠଶାଠ ପଢ଼ି ମଣିଷ ହୋଇଥା'ନ୍ତା ଅଥବା ଯୋଉ ସଂସାରୀମାନେ ତା' ଚରିତ୍ର ଉପରେ ଟୀକା ଟିପ୍ପଣୀ କରି ସୁଖ ପାଉଛନ୍ତି କି ଫାଇଦା ନେଉଛନ୍ତି ସେମାନେ ସତୀ ଶିରୋମଣୀ ଧାଡ଼ିରେ ଠିଆ କରେଇ ବାହାବା ଦିଅନ୍ତେ- ତା'ହେଲେ କେଜାଣି ସେ ଯୋଗିନୀ ସନ୍ନ୍ୟାସିନୀ ସାଜନ୍ତା । ତା'ତ ନୁହେଁ ନା । ଦିନେ ଦିନେ ନର୍ମଦା ମୁଣ୍ଡକୁ ପାଗ ଚଢ଼ିଲେ କିମ୍ବା କାହା କାହାର ଅଭିଲାକଥା କାନରେ ବାଜିଲେ, ଏମିତି ପାଟିତୁଣ୍ଡ କରି ରବେଇ ଖବେଇ ହୁଏ କିଛି ସମୟ ପାଇଁ । ବାଡ଼ି ଦୁଆର ସାମ୍ନା ଘରଟା ତା'ର । ତାଙ୍କ କାନରେ ବାଜେ ସବୁକଥା । ମନଟା ନରମି ଯାଏ ସୁରେଖାଙ୍କର । ନାରୀ, ସତେଯେମିତି ତା'ର ଦୁର୍ଭାଗ୍ୟ ପାଇଁ ପୁରୁଷ ନୁହେଁ, ସେ ନିଜେ ଦାୟୀ । ସମାଜକୁ ଉତ୍ତରଦାୟୀ ବି ସେ । ଅପଦାର୍ଥ ପୁରୁଷର ହାତଧରି ନର୍ମଦାକୁ ବାରକଥା ସେମିତି ଶୁଣିବାକୁ ପଡୁଛି । ବିଚାରବୁଦ୍ଧି ବି ସେମିତି ପରିପକ୍ୱ ନୁହେଁ । ସୁବିଧାବାଦୀମାନେ ତାକୁ ନିଜନିଜ କାମରେ ଉପଯୋଗ କରୁଛନ୍ତି । ଜୀବନଧାରଣର ଏଇ ସହଜ ଉପାୟକୁ ସେ ରୋଜଗାରର ପନ୍ଥା ବୋଲି ଗ୍ରହଣ କରିନେଇଛି । କେହି ତାକୁ ଭଲବାଟଟିକୁ ଦେଖାଇବାର ପ୍ରଚେଷ୍ଟା ହୁଏତ କରିନାହାନ୍ତି । ଏଇସବୁ କଥା ଭାବିଲାବେଳକୁ ସୁରେଖାଙ୍କୁ ଉଦାସ ଲାଗେ । ଆମମାନଙ୍କର ସାମାଜିକ ଦାୟିତ୍ୱବୋଧ ଉପରେ ପ୍ରଶ୍ନବାଚୀ ଲାଗିଯାଏ । ଭାବୁଭାବୁ ସୁରେଖା ସଚେତନ ହୋଇ ହୋଇଯା'ନ୍ତି । ଛାଡ଼, କଥାର କୋଉ ଖିଅ ଭାବନା ଭିତରେ ପଶି ଭିନ୍ନବାଟ ଧରିଲାଣି । ମଣିଷର ତ ସ୍ୱଭାବ ଏଇମିତି । ଜଙ୍ଗଲି ଲଟା ଭଳି ମାଡ଼ିଯିବ ବାଟ ଅବାଟ ନମାନି ।

ସେଇ ନର୍ମଦା ଆଉ ତା'ଝିଅ ସାଇମାଇପାକୁ ଏକାଠି କରୁଛନ୍ତି କଥାର ପାଣିରେ ସର ପକେଇ । ଆମ ଗାଡ଼ି ଆସିବ, ଅଟୋରିକ୍ସା ବି ଅପେକ୍ଷା କରିଛି ସାଇମୁଣ୍ଡରେ । ଚାଲିଚାଲି ଯିବା କାହିଁକି ଏଇ ଖରାରେ ? ଚିରିକୁଟି ଧରିଛଟି.... ନହେଲେ ବି କିଛି ଅସୁବିଧା ନାହିଁ ବୁଥ୍ ପାଖରେ ଆମ ୱରକର୍‌ମାନେ ଅଛନ୍ତି ସବୁ ସୁବିଧା କରିଦେବେ ।

ଆମ ସାହିର ଆମେ ହେଲୁ ଚାଳିଶ ଜଣ । ଚାଳିଶଟି ଭୋଟ ଯିମିତି ଏକା ଚିହ୍ନରେ ପଡ଼ିବ । ମୁଁ ପରା କଥା ଦେଇଛି ଆମର ଗୋଟିଏ ଦଳ । ଠିଆଠିଆ ନର୍ମଦା ଅନର୍ଗଳ କହି

ଚାଲିଛି ଭାଷଣ ଦେଲାଭଳି । ବିଚାରୀ ଏଇତକ ଘୋଷିବା ପାଇଁ ହଜାରେ ଦି'ହଜାରେ ପାଉଥିବ, ନ କହିବ କେମିତି ।

ହସ ଲାଗିଲା ସୁରେଖାଙ୍କୁ । ଭାବିଲେ, ଆମ ଦେଶରେ ମଣିଷମାନେ ବୋକା, କାରଣ ଅଧିକାଂଶ ଅଶିକ୍ଷିତ, ଗରିବ ବି । ଭୋକ ଯୋଉଠି ବଡ଼ କଥା ସେଠି ଗଣତନ୍ତ୍ର ମୌଳିକ ଅଧିକାର, ଦେଶର ପ୍ରଗତି, ରାଜନୀତିର ଛକାପଞ୍ଝା ଭିତରେ ଭୋଟର ଗୁରୁତ୍ୱ ସମ୍ପର୍କରେ ଗଭୀର ଭାବେ ଚିନ୍ତା କରିବେ ବା କାହିଁକି ? ସତକଥା, କୁନାଳ ଠିକ୍ କୁହେ । ଯଦି ଦି'ପଇସା କିଏ ଦେଲା କିମ୍ବା ସୁବିଧା କରିନେଇ ପ୍ରତିଶ୍ରୁତି ବାଣ୍ଟିଲା, ତା'ଆଡ଼କୁ ଅଭାବୀ ମଣିଷ ଢଳିଯିବା ସ୍ୱାଭାବିକ । ଦେଶକଥା ଚୁଲିକି ଯାଉ । ମନେ ପଡ଼ିଗଲା ସୁରେଖାଙ୍କର, ଏଇ ଚାରିଦିନ ତଳେ, ଦାଣ୍ଡଦୁଆରେ ବର୍ଷା ହେଉଛି ବୋଲି ଭିକାରୁଣୀଟିଏ ସାରାରାତି ତାର ତିନି ପିଲାଙ୍କୁ ନେଇ ବାରଣ୍ଡାରେ ଆଶ୍ରା ନେଇଥିଲା । କୋଳରେ କଅଁଳା ପିଲାଟିଏ ବର୍ଷା ଛିଟାରେ ଥୁରୁଥୁରୁ କମ୍ପିଯାଉଥିଲା । ଦୁଆର ସାରା ଅସନା କରିଥିଲେ ବୋଲି ତାଙ୍କୁ ବିରକ୍ତ ଲାଗିଥିଲେ ମଧ ହେଲେ କିଛି କହି ପାରିନଥିଲେ ମଣିଷ ତ, ଖରା ବର୍ଷା ଶୀତକାକରରେ ଆଶ୍ରାଟିକିଏ ଖୋଜିବେ । ଭିକାରୁଣୀଟି କହିଥିଲା, ନିଜର ତ ଆଶ୍ରା ବୋଲି କିଛି ନାହିଁ । ମୁଣ୍ଡ ଉପରର ପଲିଥିନଟି ଉଡ଼ିଯାଇଛି ବଡ଼ ପବନରେ । ବାବୁମାନେ ଗଲା ଭୋଟବେଳେ କହିଥିଲେ ତାଙ୍କ ଚିହ୍ନରେ ଭୋଟ ଦେଲୁ । କାମ ସରିଲା ତାଙ୍କର, ଆମକଥା ଭୁଲିଗଲେ । ତମେମାନେ ତ ମା, ବଡ଼ବଡ଼ଲୋକ ଆମେ ତ ମାଗିଯାଚି ଚଳିବା ଲୋକ । କିଏ ଶୁଣିବ ଆମ କଥା ? ଆମ ବସ୍ତିବାଲାଙ୍କୁ ସେତେବେଳେ ଶହେ ଟଙ୍କା ଆଉ ଲୁଗା ଖଣ୍ଡେ କରି ଦେଇଥିଲେ, ସେତିକି ଆଉ କିଛି ନାହିଁ । ଆମେ ଯୋଉଠିକୁ ସେଇଠି । ସେ ଚକିତ ହୋଇ ଶୁଣୁଥିଲେ । ମା' କିଛି ମନେ କରିବନି ମୋ ପିଲାଏ ଅସନା କରି ଦେଇଛନ୍ତି ଦୁଆର, ପାଣି ବାଲ୍‌ଟିଏ ପକେଇ ଦିଅକି, ମୁଁ ସଫା କରିଦେବି । ଆମ ଜୀବନ ତ ଏମିତି ଚାଲିଛି ମରିମରି ବଞ୍ଚିବା କଥା, ମାଁ ପାଣି ଦିଅ..... ।"

ଦୟା ଲାଗିଥିଲା ତା'ପାଇଁ । ଗରିବ ମୂର୍ଖଲୋକ, କ'ଣ ଆଉ କରିବ ? ଉନ୍ନତ ଚିନ୍ତା ଆସିବ କୁଆଡୁ ? ଗୋଚର ଘାସ ବଢ଼େଇଲା ଭଳି ଏମାନଙ୍କୁ ବି ସେମିତି ଏଇ ଅବସ୍ଥାରେ ଜମିରେ ଘାସ ବଢ଼େଇଲା ଭଳି ପୋଷି ରଖାଯାଇଛି ଭୋଟ୍ ବ୍ୟାଙ୍କ୍ କରି । ଯାରି ନାଁ ପ୍ରଗତି, ବିକାଶ । ଆଉ କିଛି ପଚାରିବାକୁ ନଥିଲା ପିଲା ତିନିଟାଙ୍କୁ ସଂସାରକୁ କାହିଁକି ଆଣିଛି ସେ, ତାର ଉତ୍ତର ସେ କ'ଣବା ଦେଇଥା'ନ୍ତା । ତାକୁ କ'ଣ ଅଜଣା କି ? ବାହାରେ କିଏ ଡାକ ପକେଇଲା "ଆଜ୍ଞା, ଆସନ୍ତୁ, ଯିବା ପରା".... ଗେଟ୍ ଖୋଲି ଦେଖନ୍ତିତ ଅଟୋବାଲା ଠିଆ ହୋଇଛି ଅଟୋ ରିକ୍ସା ନେଇ । "ଆଜ୍ଞା ଯିବା ପରା ବୁଥ୍‌କୁ, ଭୋଟ୍ ଦେବାକୁ ଯିବେନି ? ହସି ହସି ପାନପିକ ପକେଇ ଡାକିଲା ।"

ସେ ପଚାରିଲେ, "କିଏ ତୁମକୁ ପଠେଇଚି କହିଲ ? ଆମର ତ ଗାଡ଼ି ଦରକାର ନାହିଁ । ମୋ ନାତି ଆସିଲେ ମୁଁ ତା' ସାଙ୍ଗରେ ଯିବି ବୋଲି କଥାଥିଲା ।" ସେ କହିଲା, ଆମେ ଆଜ୍ଞା ପାର୍ଟି ତରଫରୁ ଆଜି ଦିନକ ପାଇଁ କାମ ପାଇଛୁ ଆପଣମାନଙ୍କୁ ସୁବିଧାରେ ନେଇଯିବୁ, ଆସନ୍ତୁ ନା..... ।

ସେ ଆଉ ପଚାରିଲେନି ତମେ କୋଉ ପାର୍ଟିର କୋଉ ଚିହ୍ନ ପାଇଁ କାମ କରୁଛ । ଭଲ ଲାଗିଲାନି । ଅବଶ୍ୟ ସେ ସିନା ମନାକଲେ, ହେଲେ ଆଉ କିଏ ସବୁ ବସି ଚାଲିଗଲେ ବୁଥ୍‌କୁ । ଅଟୋବାଲା କିନ୍ତୁ ଖୁସି ଥିଲା, ନିଶ୍ଚୟ ଦି'ପଇସା ପାଇଥିବ । ପାଉ ବିଚରା ବଡ଼ସାନ, କୁଜି ନେତାଏ କେତେ କ'ଣ ପାଉଛନ୍ତି, ତାଙ୍କ ଭାଗରୁ ଚିମୁଟାଏ ଏମାନଙ୍କ ଭାଗରେ ପଡ଼ିଛି । ପଡୁ, ସେଇଥିପାଇଁ ତ ଲୋକଟା ଫୁର୍ତ୍ତି ଅଛି । ଠିକ୍ ସେଇମିତି ଉଷତ ଅଛି ବାଡ଼ିପଟର ଓ୍ୱରକର ନର୍ମଦା ଆଉ ତା'ର କିଶୋରୀ ଝିଅ । ହୁଏତ ବିଗତ ରାତିମାନଙ୍କରେ ସ୍ୱପ୍ନ ବି ଦେଖିଥିବେ.... ସ୍ୱପ୍ନ ଦେଖିଥିବ ନର୍ମଦା ଝିଅ, ମା' ପାଇଥିବା ଟଙ୍କାରେ ଆସୁଥିବା କୁଆଁର ପୁନେଇଁ ପାଇଁ ଖଣ୍ଡେ ଭଲ ଡ୍ରେସ୍ କି ମ୍ୟାକ୍ସିଟିଏ ନିଶ୍ଚୟ କିଣିବ ।

ଏମିତିଆ ଅଚାନକ କିଛି ପଇସା ଅଯାଚିତ ଭାବେ ହାତକୁ ଆସିଗଲେ ହିଁ ଏଇ ବର୍ଗର ମଣିଷମାନେ ଛୋଟ ମୋଟିଆ ସ୍ୱପ୍ନ ଦେଖନ୍ତି ଭଲକରି ମୁଠିଏ ଖାଇବାର, ନହେଲେ ଖଣ୍ଡେ ପିନ୍ଧିବାର ସ୍ୱପ୍ନ । (ଜମି, କୋଠା, ବ୍ୟାଙ୍କ୍‌ବାଲାନସ୍ କି ସୁନା ଇଟାର ସ୍ୱପ୍ନ ଏମାନଙ୍କ ପାଇଁ ସ୍ୱପ୍ନ ହିଁ) ତେଣୁ ଏସବୁର ସ୍ୱପ୍ନ ଦେଖନ୍ତିନି । ସୁରେଖା ଭାବିଲେ, ଏହାକୁ ସ୍ୱପ୍ନ ହିଁ କୁହାଯାଇପାରେ । ଯଦିଓ ଏସବୁ ଜରୁରୀ ଆବଶ୍ୟକତା ଭିତରେ ଯାଏ । ନହେଲେ ସେମାନଙ୍କ ପାଇଁ ଅଧିକ ସ୍ୱପ୍ନ କାହିଁ ?

ସନ୍ଧ୍ୟା ପର୍ଯ୍ୟନ୍ତ ସେଦିନ ଆହୁରି ଦି'ତିନିଟା ଅଟୋବାଲା ଆସି ପଚାରିଦେଇ ଯାଇଥିଲେ । କିଛି ସମୟ ପରେ କୁନାଳ ଆସିଲା । ଏଗାରଟା ବାଜିନଥିଲା, ସେ ବାହାରିଲେ ବିନା ବାକ୍ୟବ୍ୟୟରେ ଭୋଟ ଦେବାପାଇଁ ତା' ସାଙ୍ଗରେ । ପାଖ ହାଇସ୍କୁଲରେ ବୁଥ୍ ଥିଲା । ଦି' ଦି'ଟା ନିର୍ବାଚନ ଗଲାଣି ନାଗରିକର କର୍ତ୍ତବ୍ୟ କଥା ବାରମ୍ବାର ମନେପକାଇ ଦେଇ ତାଙ୍କୁ ବାଧ କରିଥିଲା, ତା' କଥା ଭାଙ୍ଗିବା ସମ୍ଭବ ନଥିଲା । ।

ବୁଥ୍ ପାଖରେ ପହଞ୍ଚିବାବେଳକୁ ସ୍କୁଲ ସାମ୍‌ନାଟା ବେଶ୍ ଗହଳି ହେଇ ଯାଇଥିଲା । କର୍ମୀମାନେ ଭୋଟର ଲିଷ୍ଟ୍ ଧରି ଲଟରପଟର ହେଉଥିଲେ । ଆଉ କେହିକେହି ପ୍ରାର୍ଥୀମାନଙ୍କ ତରଫରୁ ଭୋଟରମାନଙ୍କୁ ପାଛୋଟି ନଉଥିଲେ ନିର୍ଦ୍ଧାରିତ ବୁଥ୍ ପାଖକୁ । ଭାରି ସମ୍ମାନ ଆଉ ମିଠାକଥା ଝରିପଡୁଥିଲା ସେମାନଙ୍କ କଥାରେ । କିଏ କିଏ ଚା'କପ୍, କିଏ ଜଳଖିଆ ପ୍ଲେଟ୍, କିଏ ସିଙ୍ଗଡ଼ା ହାତରେ ଧରି ତତ୍ପର ଜଣା ପଡୁଥିଲେ ।

ସୁରେଖାଙ୍କୁ ଚକିତ ଲାଗୁଥିଲା, ସେମାନଙ୍କ ବ୍ୟବହାରର ଠାଣି ଦେଖି । ସବୁଠି

ସବୁକ୍ଷେତ୍ରରେ ସ୍ୱାର୍ଥର ଆଢ଼େଣୀ । ଯଦି ତାଙ୍କ ପ୍ରାର୍ଥୀ ଆସିଗଲା ତ କଚେ ପୁଅ ବାର । ତେଣିକି ସେମାନେ ହୋଇଯିବେ 'ଶିବଙ୍କ ସାପ' । ଗରୁଡ଼ ବି ଖାତିରକୁ ଆସିବନି । ଯାହା ଚାହିଁବେ ତାହା ପାଇବେ । ଖାତିର ବଢ଼ିଯିବ ନିଜର, ଅନ୍ୟମାନଙ୍କ ପାଖରେ ସେଇଥିପାଇଁ ଆଗରୁ ରାସ୍ତା ତିଆରି କରିବା କଥା । ଆଖିରେ ଆଖି ମିଶିଗଲେ, ମୁଠାଏ ହସର ପାଖୁଡ଼ା ଝରେଇ ଦେଉଛନ୍ତି ସ୍ୱାଗତମ୍ ଠାଣିରେ । ସତେକି ଅନେକ ଜନ୍ମର ଚିହ୍ନା । ଅଥବା ପାଖକୁ ଆସି ନମସ୍କାର ପୂର୍ବକ ପାଦରେ ପାଦ ମିଶେଇ ଚାଲି ଆଠପାଦ ଆଗେଇ ଯାଉ ଯାଉ କାନପାଖରେ ଚୁପ୍‌କରି ମନେପକେଇ ଦେଉଥିଲେ ନିଜନିଜ ଦଳର ଚିହ୍ନକୁ । ଅଥଚ ଏଇମାନେ ସମସ୍ତେ ଚିହ୍ନା ନୁହଁନ୍ତି । କିଛି ଅଛନ୍ତି ଅବଶ୍ୟ । ରାସ୍ତାରେ କେବେ କେବେ ଭେଟିଥିବା ମଣିଷ ଯୋଉମାନେ କେବେ ବି ହସିଦେଇ ଭଲମନ୍ଦ କି ସୁବିଧାରେ କେବେ କୌଣସି ସାହାଯ୍ୟର ହାତ ବଢ଼େଇଛନ୍ତି ବୋଲି ମନେ ପଡୁ ନଥିଲା । ଆଜି କିନ୍ତୁ ସମସ୍ତେ ନିଜର ମନେ ହେଉଛନ୍ତି । ବୁଥ୍ ପାଖ ହେଲା ।

ସ୍କୁଲ ବାରଣ୍ଡା ଲମ୍ବା କରିଡ଼ୋର ମଝିରେ ମଝିରେ ଖମ୍ବମାନ ରହିଛି । ଏଇ ୱାର୍ଡ଼ରେ ତ୍ରିମୁଖୀ ପ୍ରତିଯୋଗିତା । ସେଥିପାଇଁ ତିନି ଦଳର ପ୍ରାର୍ଥିନୀମାନେ ସମଦୂରତା ବଜାୟ ରଖି ଠିଆ ହୋଇଛନ୍ତି ଓଡ଼ିଶୀମୁଦ୍ରାରେ ଶିଳାକନ୍ୟା ଭଳି । ମୁହଁରେ ହସ, ଆଖିର ତାରାରେ ସମ୍ଭାବନାର ଉଜ୍ଜ୍ୱଳ ଆଲୁଅ ଚିକ୍‌ମିକ୍ କରୁଛି । ଆଗରେ ଚାଲୁଥିବା କିଛି ଜଞ୍ଜାଳିଆ କୁହାଳିଆ ଯୁବ ଭୋଟର ପରସ୍ପର ଭିତରେ ଟିପ୍ପଣୀ କଲେ । ଭାଇ, ଚାହିଁଲୁ ତିନି କଣ୍ଡେଇଙ୍କ ମୁହଁରେ ତିନି ପ୍ରକାର ଆଭା ଦପ୍‌ଦପଉଛି ଲିଚୁ ବଲ୍‌ବ ଭଳି ହଁ ନାହିଁ ହଁ ନାହିଁ । ଆଉ ଗୋଟିକ ଏକାବେଳକେ ମଉଳାଫୁଲ ମୁରୁଝେଇ ପଡ଼ିଛି ସତେକି । ଅନ୍ୟମାନେ ହସିଲେ ତା' ମନ୍ତବ୍ୟରେ । ସୁରେଖା ଚାଲିକୁ ଧିମେଇ ଦେଇ ସେମାନଙ୍କ ପଛେପଛେ ଯାଉଥିଲେ ଟିପ୍ପଣୀଟି କାନରେ ପଡ଼ିଲା । ଭାବିଲେ, ସମୟ କିମିତି ବଦଳିଯାଉଛି । ତା' ସହିତ ବଦଳିଯାଉଛି ମଣିଷର ଚିନ୍ତାଧାରା । ସମସ୍ତେ ନିଜନିଜ ବାଟରେ । କେତେଜଣଙ୍କ ଭିତରେ ଅଛି ଏଇ ଦେଶପ୍ରୀତିର ଭାବନା ? କେତେଜଣ ଗୁରୁତ୍ୱ ଦେଇ ଦେଶ ପାଇଁ ଭାବୁଥିବେ ? ସତରେ ଭାବୁଥିବେ ? ତାଙ୍କର କିମିତି ସନ୍ଦେହ ହେଲା ନିଜକଥା, ନିଜ ସ୍ୱାର୍ଥ କଥା ହିଁ ଭାବୁଥିବେ । ଭାବନା ସ୍ଥିର ହେଲା ସୁରେଖାଙ୍କର ।

"ଆମେ ବୁଥ ପାଖରେ ପହଞ୍ଚିଗଲେ ଢେଙ୍କେମା', କହିଲା କୁନାଳ । ଲମ୍ବଧାଡ଼ି ଲାଗିଯାଇଥିଲା ଭୋଟରଙ୍କ । ଆଗରେ ପ୍ରିଜାଇଡିଂ ଅଫିସର ଓ ତାଙ୍କର ସହଯୋଗୀମାନେ ନିଜନିଜ ଟେବୁଲରେ ବସିଛନ୍ତି ।"

ସେ ନିଜ ପରିଚୟ ପତ୍ର ବଢ଼େଇ ଦେଇ ଅପେକ୍ଷା କଲେ.... ।



# ଚକାଜହ୍ନ, ଅଦିତି ଓ ଅବିର

କାଲି ଥିଲା ଦୋଳ ପୂର୍ଣ୍ଣମୀ । ଆଜି ହୋଲି । ଆଜିବି ସଞ୍ଜବେଳକୁ ଚକାଜହ୍ନ ଉଠିବ ଆକାଶରେ । ଚକାଜହ୍ନ ସହିତ ଅଦିତିର ସମ୍ପର୍କ ଅତି ନିବିଡ଼ ପିଲାଦିନରୁ । ଅତି ଆପଣାର ଯେମିତି ବାପା, ବୋଉ, ଭାଇ, ମାମୁ କି ମାଉସୀ । ଆଜି କିନ୍ତୁ ରଙ୍ଗର ନିଶା ଲାଗିଛି ସବୁଠି, ମାଟିରୁ ଆକାଶ । ସମସ୍ତେ ମାତିଛନ୍ତି ଏ ନିଶାରେ ।

ଖୁବ୍ ସକାଳୁ ଅଦିତିର ନିଦ ଭାଙ୍ଗି ଯାଇଥିଲା । ଏବଂ ସବୁଦିନ ଭଳି ଛାତ ଉପରକୁ ଉଠିଗଲା । ଗୋଟାଏ ନିଶାରେ । ସକାଳୁଆ ନାଲି ଅବିରବୋଳା ଆକାଶ ଦେଖିବାକୁ ତାକୁ ଭାରି ଭଲ ଲାଗେ । ସବୁ କାମ ପଛରେ ପକାଇ ସେଇଥିପାଇଁ ସେ ଧାଇଁଆସେ ଛାତ ଉପରକୁ, କେବଳ ଉଦୟ ସୂର୍ଯ୍ୟର ବର୍ଣ୍ଣୋତ୍ସବ ଦେଖିବାକୁ । ଆଜିବି ଆସିଥିଲା ।

ଆଜି କିନ୍ତୁ ଆକାଶରେ ରଙ୍ଗର ଖେଳ । ଅଳତା ଢାଳି, ଫଗୁ ବିଛି ଉଦୟସୂର୍ଯ୍ୟ ପ୍ରାଚୀ କନ୍ୟାର ହାତ ଧରି ଆକାଶର ଅଗଣାକୁ ଓହ୍ଲେଇ ସାରିଥିଲେ । ଫଗୁରେ ହୋଇଯାଇଥିଲା ସାରା ଅଗଣା । ରଙ୍ଗରେ ଜୁଡୁବୁଡୁ ପ୍ରାଚୀ କନ୍ୟା । ସତେ ଯେମିତି ଲାଜରେ ନାଲି ପଡ଼ିଯାଇଛି ମୁହଁ । ଦିଶୁଛି ଠିକ୍ ମାନି ଭାଉଜଙ୍କ ରଙ୍ଗବୋଳା ମୁହଁ ଭଳି । ମାନି ଭାଉଜଙ୍କ ଚହଟଚମ୍ପା ମୁହଁ ନାଲି ପଡ଼ିଗଲେ ଭାରି ସୁନ୍ଦର ଦିଶେ ।

ସେ କେମିତି ଏକ ସ୍ୱପ୍ନିଳ ଅନୁଭବ । କେତେ ପ୍ରକାର, କେତେ ରଙ୍ଗ, କେତେ ଭଙ୍ଗୀର ଉଡ଼ନ୍ତା ମେଘମାନେ ଆପଣା ଆପଣା ଦେହମୁହଁରେ ରଙ୍ଗ ବୋଳି ହୋଇ ଧାଉଁଛନ୍ତି ଏଣେତେଣେ ଅବୋଧ ପିଲାଙ୍କ ଭଳି । ରଙ୍ଗ ସାଲୁବାଲୁ ଆକାଶର ଅଗଣାଟା ଦିଶୁଛି ସତେଯେମିତି ଜଣେ ଖିଆଲୀ ଚିତ୍ରକରର ବର୍ଣ୍ଣିଳ ଅସ୍ତବ୍ୟସ୍ତ କାନ୍‌ଭାସ୍ ଭଳି । ଅବୋଧ ସେଇ ଶିଶୁ ମେଘମାନଙ୍କୁ ଅନିଷା କରୁକରୁ ଅଦିତିର ଗୋଟାଏ ଅଦ୍ଭୁତ ଖିଆଲ ହେଲା, ମନ ହେଲା ସେମାନଙ୍କ ହାତ ଧରି ଧାଇଁବାକୁ ଏବଂ ଅଦିତି ଧାଇଁଲା ମଧ୍ୟ, ଆଗକୁ ନୁହେଁ,

ପଛକୁ । ପଛୁଆ ହୋଇ ଧାଇଁଲା । ଧାଉଁଧାଉଁ ତା'ର ବୟସ୍କ ମନ ପାହାଡ଼ ପର୍ବତ, ନଦୀନାଳ, ଗାଁଗଣ୍ଡା, ତୋଟାପାଟ ପାରି ହୋଇ ଏକା ନିଃଶ୍ୱାସକେ ଯାଇ ଠିଆ ହୋଇଗଲା ପିଲାଦିନର ସେଇ ଗାଁ ଅଗଣାରେ ।

ଅଗଣା ଡେଇଁଲେ ପାଚେରି, ପାଚେରି ସେପାଖେ ମଦନମୋହନଙ୍କ ପଥର ଦେଉଳ । ପାଞ୍ଚ ପୁରୁଷ ହେବ । ଦେଉଳବେଢ଼ାରେ ଚାନ୍ଦିନୀ ଚଉତରା । ମାଟିରେ ତୁଳସୀ ଚଉରା, ବୃନ୍ଦାବତୀଙ୍କ ଆବକ୍ଷ ମୂର୍ତ୍ତି । କଡ଼କୁ ବଉଳ ଗଛ । ଆରକଡ଼ରେ ମାଳତୀ ଲଟେଇଛି । ଠିଆ ହୋଇଛି ତରାଟ ଗଛ । ଘଣ୍ଟଘଣ୍ଟା, କାହାଳୀ, ତୂରୀମହୁରି, ଢୋଲ ମର୍ଦ୍ଦଳର ମିଶାମିଶି ଧ୍ୱନିର ତରଙ୍ଗ ଭିତରେ ମଦନମୋହନଙ୍କ ସକାଳ ମାଜଣା ଚାଲିଛି । କର୍ପୂର ଚନ୍ଦନର ମହମହ ବାସ୍ନାରେ ମହକି ଉଠୁଛି ଚାରିଆଡ଼ । ଏତେଦିନ ଧରି ପାଲିଙ୍କି ଚଢ଼ି ମଦନମୋହନ ଚାଚେରୀ ଖାଇ ବୁଲୁଥିଲେ । ଆଜି ରଙ୍ଗ ଖେଳିବେ ଅବିର ଫଗୁରେ, ରଙ୍ଗ ଅତରରେ । ଫୁଲ ଚନ୍ଦନର ମହକରେ ମହକି ଉଠୁଛି ମନ୍ଦିର ବେଢ଼ା । ଟିକକ ପରେ ସେଇ ମହକ ମାଡ଼ି ଆସିବ ଗାଁ ଦାଣ୍ଡକୁ ପବନର ପାଲିଙ୍କି ଚଢ଼ି । ଉଚ୍ଛନ୍ନ କରିବ ସଭିଙ୍କୁ । ସତେଯେମିତି ବ୍ରଜଦାଣ୍ଡ, ଗୋପ-ଗୋପୀର ଅନୁଭବ ।

ବିନି ମାଉସୀ, ଭାନୁ ଖୁଡ଼ୀ, ମାନି ଭାଉଜ, ସୁମି ନାନୀ, ବିନ୍ଦୁ ପିଉସୀ ପରସ୍ପର ଅବିର ବୋଳାବୋଳି ହୋଇ ଥଟ୍ଟା ପରିହାସର ଫଗୁ ଉଡ଼ାଉଛନ୍ତି । ନଜର ନାହିଁ କୁଆଡ଼ିକୁ । କେତେବେଳୁ କେଜାଣି କିଶୋରୀ ଅଦିତି ବଉଳଗଛକୁ ଆଉଜି ନିଦ ମଳମଳ ଆଖିରେ ମଜା ଦେଖୁଛି । ମାନି ଭାଉଜଙ୍କ ଚହଟଚିକଣ ଚମ୍ପାଫୁଲ ବେଶ ନାଲି ଟହଟହ ଦିଶୁଛି, ଦେଇଛି ତ ସୁମି ନାନୀ ରଙ୍ଗ ବୋଳି । ହସଉତୁରା ଭାଉଜ ଆଖିଦି'ଟା ତଥାପି ଲାଗୁଛି କାହାକୁ ଯେମିତି ଖୋଜୁଛି । କାହାକୁ? ମଦନଭାଇଙ୍କୁ? ମଦନଭାଇ ସହରରେ ଚାକିରି କରନ୍ତି । ଆସନ୍ତି ଛୁଟି ହେଲେ, ଆଜି ତ ଛୁଟି । ଖୋଜୁଥିବେ ନିଶ୍ଚେ । ସୁମି ନାନୀ ଚିଡଉଛି । ଅଦିତି ମଗଜରେ ଅବଶ୍ୟ ସେସବୁ ରହସ୍ୟ କିଛି ପଶୁନଥିଲା ତା'ର ସମ୍ପର୍କ ଚକାଜହ୍ନ ଆଉ ଫଗୁ ଅବିରରେ । ବର୍ତ୍ତମାନ କେବଳ ସେ ଏକା । ଏକାଲୟରେ ରଙ୍ଗର ଫୁଆରା, ଅବିରର ଇନ୍ଦ୍ରଧନୁକୁ ଚାହିଁଥିଲା ।

ହଠାତ୍ ଥଣ୍ଡା ଲାଗିଲା ପିଠି ପାଖଟା... ଆରେ... । ବୁଲି ଚାହିଁଲା ଅଦିତି । ହସକୁ କଜେଇ ଦାନ୍ତଚିପି ଠିଆ ହୋଇଛନ୍ତି କୁନ୍ତୁ, ବୁଲୁ, ଦୀପୁ ଆଉ ସୁଣି । ଓଃ... ତମେମାନେ । ଗମ୍ଭୀର ହୋଇ କହିଲା ଅଦିତି । ଠିକ୍ ଅଛି । ହେଲେ ବୁଲୁ, କାହିଁକି ମୋର ଭଲ ଜାମାଟାକୁ ନଷ୍ଟ କରିଦେଲୁ କହ ତ ? ଭାବିଛୁ କି ମୋ ହାତରେ ରଙ୍ଗ ନାହିଁ.... ହଉ ହେଲା, କହୁ କହୁ ଆଖିପିଛୁଡ଼ାକେ ମୁଠାଏ ଅବିର ଛଡ଼େଇ ଆଣି ବୁଲୁ ମୁହଁରେ ବୋଳି ପକେଇଲା । ତେଣିକି ଖେଳ, ଗୋଡ଼ିଆ ଗୋଡ଼େଇର । କିଏ କେତେ ରଙ୍ଗ ପକେଇ ପାରିବ, ଅବିର ବୋଳିପାରିବ । କିଛି ବାଛବିଚାର ନାହିଁ, ପରଅପର ନାହିଁ, ରଙ୍ଗ ପାଖରେ ସମସ୍ତେ ସମାନ ।

ସଞ୍ଜବେଳକୁ... ଚକାଜହ୍ନ ତଳେ ଖୋଲା ଅଗଣାରେ ବସି ନନ୍ଦୂକାକାଙ୍କ ଆଗରେ ଗୋଟାଏ ହିସାବ କିତାବର ଲମ୍ବାଫର୍ଦ୍ଦ ଥୁଆ ହବ, ବାଜି ମରାମରି ହୋହଲ୍ଲା । ଯିଏ ଯେତେ ପାରିଲା ବାହାଦୁରି ଦେଖେଇ ପାଟିକଲା । ଓହୋ ! !

କାନରେ ହାତ ଦେଲା ଅଦିତି । ଦୀପୁଟା ସତରେ କେତେ ପାଟି କରୁଛି । ନଡ଼ିଆଗଛର ତିଖ ଛୁଇଁଲାଣି ତା'ପାଟି । ଦିପୁ.... ଏଇ ଦୀପୁ.... ଚିଲେଇଲା ଅଦିତି, "ଭଲା ଟିକେ ଚୁପ୍‌ରହି ପାରୁନୁ ?"

ସତକୁସତ ଚମକି ପଡ଼ିଲା ଅଦିତି ନିଜ ଭିତରେ । କେଡ଼େ ବୋକାମ ସିଏ । କେତେବେଳୁ କେଜାଣି କାନରେ ହାତଦେଇ ଅନ୍ୟମନସ୍କ ଭାବେ ଚାହିଁ ରହିଛି ଆକାଶକୁ । ଲାଜ ଲାଗିଲା, ଚାହିଁ ଦେଖିଲା ଚାରିଆଡ଼କୁ । ଯା'ହଉ କେହି କୁଆଡ଼େ ନାହାନ୍ତି । ନହେଲେ....

ଏଥର ପଛୁଆଳି ମନଟା ଚୁପ୍‌ଚାପ୍ ସେଠୁ ଖସିଆସି ଠିଆ ହେଇଗଲା ଏକୁଟିଆ ଛାତ ଉପରେ । କେହି କୁଆଡ଼େ ନାହିଁ । ନିଛାଟିଆ ଲାଗିଲା । ଛାତି ଭିତରଟା ବି ଖାଲି ଖାଲି । ଘର ଅଗଣା ସବୁ ଖାଲି । କିଲ୍‌ବିଲ୍ ହେଇ ଛାତି ଭିତରୁ ଛୁଟି ଆସିଲା ଦୀର୍ଘଶ୍ୱାସଟିଏ । ଭାବିଲା କି ସୁନ୍ଦର ଥିଲା ସେଇ ଦିନଗୁଡ଼ାକ । କେତେ କୋଳାହଳମୟ, ପ୍ରାଣବନ୍ତ ରଙ୍ଗିନ୍ । ଠିକ୍ ଏଇ ବର୍ଣ୍ଣିଳ ଆକାଶ ଭଳି ।

ଅଦିତି ମନରେ କେମିତି ଅକୁହା ବିଷାଦର ଛାଇ ଭାସି ଉଠିଲା ଅଦିନିଆ ମେଘ ଭଳି । କେତେବର୍ଷ ହେଲାଣି କେଜାଣି ! ଅନେକ ବର୍ଷ ହେଇଯିବଣି ବୋଧେ । ସେ ଆଉ ରଙ୍ଗ ଖେଳିନି କିମ୍ବା ତା' ପଣତରେ ରଙ୍ଗ ଟୋପାଏ ବି ଲାଗିନି । ଫି ବର୍ଷ ଦୋଳ ପୂନେଇଁ ଆସିଛି । ଆକାଶରେ ଚକାଜହ୍ନ ଉଠି ରୁପା ଆଲୁଅ ବିଞ୍ଚି ଦେଇଛି ମାଟି ଉପରେ । ଫଗୁ ଅତରର ବାସ୍ନା ଲେସି ହେଇଯାଇଛି ବସୁଧା ଦେହରେ । କିଏ କେତେ ଅନୁଭବର କାହାଣୀ ଗୋଟେଇ ଧରି ରଖିଛନ୍ତି । ହେଲେ ତା' ପାଇଁ କିଛି ସେମିତି ନୂଆ ଅନୁଭବକୁ ଆଣି ପୂନେଇ ଆସିଛି ବୋଲି ମନେପଡୁନି ତ । ନିତିଦିନର ସୂର୍ଯ୍ୟଉଠା ସକାଳ ଓ ତାରାଫୁଟା ରାତି ଭଳି ଏଇଦିନ ବି ହଜିଯାଇଛି ସମୟ ରେଣୁରେ । ବରଂ ବେଳେବେଳେ ଈର୍ଷା ଲାଗିଛି । ରଙ୍ଗ ମାଖିହେଇ, ଅବିରବୋଳା, ଫଗୁ ବିଞ୍ଚି ରାସ୍ତାରେ ଚାଲୁଥିବା ମଣିଷଙ୍କୁ ଦେଖି । ସାଇପଡ଼ିଶାର ପୁଅ ଝିଅଙ୍କ ରଙ୍ଗ ଖେଳ ଭିତରେ ସେ ପିଲାଦିନର ସ୍ମୃତିକୁ ସାଉଁଟି କୁରୁଳି ଉଠିଛି ମନକୁ ମନ । ଲାଗିଛି, କେଡ଼େ ଭାଗ୍ୟବାନ୍ ଏମାନେ ସତରେ । ସ୍ନେହ ପ୍ରୀତିର ଗାଢ଼ ରଙ୍ଗରେ ପ୍ରତ୍ୟେକେ ସାଉଁଟି ଧରିଛନ୍ତି ପୃଥିବୀକୁ ଆପଣା ଆପଣା ଗରିମା ଭିତରେ । ସାନବଡ଼, ପରଅପର ବୋଲି କିଛି ନାହିଁ । ରଙ୍ଗବୋଳା ମୁହଁର ତ କିଛି ସ୍ୱତନ୍ତ୍ର ପରିଚୟ ନାହିଁ । ସବୁ ସମାନ । ଲାଗୁଛି, ଭାବ ଉଚ୍ଛୁଳା, ପ୍ରେମ ପଖଳା ନିରୁତା ମନମାନେ ସତେକି ରୂପ ପରିଗ୍ରହ କରି ଖେଳୁଛନ୍ତି ପ୍ରାଣଭରି । ଅବଶ୍ୟ ତାକୁ ଏମିତି ଲାଗେ । ସେ ଏମିତି ଭାବେ କେବଳ ।

ଦିନେ କେବେ ମାଟି ଉପରକୁ ଓହ୍ଲେଇ ଆସି କେମିତି ଲାଗେ ପରୀକ୍ଷା କରି ଦେଖିନି । କେବଳ କଳ୍ପନାର ଅନୁଭବରେ ଖୁସି ହେଉଛି । ଭାବିଛି, ତା'ପାଇଁ ବି ଦୁନିଆଟା ନିକଟେଇ ଆସନ୍ତା କି ? ତାକୁ ଆଉ ଏମିତି ଏକୁଟିଆ ଲାଗନ୍ତାନି ।

ଅଥଚ ସେ କେତେ ଏକୁଟିଆ । ଅଥଚ ତା'ର ପଦମର୍ଯ୍ୟାଦା, ପାହ୍ୟା ଓ ପତିଆରାର ଆଟୋପ କିଛି କମ୍ ନୁହେଁ । କେତେ ମଣିଷ, କେତେ ଚାଟୁକାର, ସେବାକାରୀ, ତା' ଚାରିପାଖେ ସମ୍ଭାବ୍ୟ ଦୂରତା ରଖି ଅନବରତ ଘୂରି ବୁଲୁଛନ୍ତି । ଟିକିଏ ଇଙ୍ଗିତ ପାଇଲେ ଆକାଶରୁ ଚନ୍ଦ୍ର ତାରା ତୋଳି ଆଣି ଥୋଇଦେବେ ହାତ ପାପୁଲିରେ । ରଙ୍ଗ ଅବିର ତ ଛାର କଥା ।

ହେଲେ କାହିଁ ? ସେ କ'ଣ ସମସ୍ତଙ୍କ ଭଳି ହେଇପାରୁଛି ? ଖେଳିପାରୁଛି ନା ମିଳାମିଶା କରିପାରୁଛି କାହା ସହିତ । ଗୋଟାଏ ତୁଚ୍ଛା ମିଛର ପ୍ରତୀୟମାନ ହେଉଥିବା ଭୟର ଗାମ୍ଭୀର୍ଯ୍ୟ ଘେରା ବଳୟ ଭିତରେ ସେ ଯେମିତି ବନ୍ଦୀ ହେଇଯାଇଛି । ବନ୍ଦୀ ନୁହଁ, ନଜରବନ୍ଦୀ ।

ସେ କିଛି କରିପାରିବନି ନିଜ ଇଚ୍ଛାରେ । ଅନ୍ୟମାନଙ୍କର ସନ୍ଦେହୀ ଆଖି ସହଜରେ ଭରସି ପାରିବନି ତାକୁ ଛୁଇଁବାକୁ । କେବଳ ଦୂରରେ ଥାଇ ଦେଖୁଥିବ, ପରଖୁଥିବ, ଭାବୁଥିବ ଆହା ! କେଡ଼େ ଏକୁଟିଆ ମଣିଷଟା, ଏତେବଡ଼ ପୃଥିବୀ, ଏତେ ହସ ଖେଳ ଅଥଚ ଏଇ ସୁଖମଜାରେ ତା'ର କିଛି ଭାଗ ନାହିଁ । ଆହାରେ । ବିଚାରୀ, କେହି କ'ଣ ତା'ର ନାହାନ୍ତି । ଅସୁମାରି ପ୍ରଶ୍ନର ଲମ୍ଫାଧାଡ଼ି ଭିତରେ 'ଆହା' ଶବ୍ଦଟା ତୁଣ୍ଡରୁ ତୁଣ୍ଡ ହେଇ ଖେଳ ଖେଳୁଥିବ କେବେ ଭାବୁଥିବେ ହୁଏତ ଛୁଇଁ ଦେବା କି ଆଉ ତା' ଏକଲାପଣକୁ । ଝାଙ୍କି ଦେବା କି ତା'ର ନିଛାଟିଆ ଇଲାକାକୁ । ଚହଲିଯିବ ତା'ର ମନମରାପଣ । ଭରଭରେଇ ଉଠିବ ପୁଣି ।

ହେଲେ ସାହସ ହେଉନଥିବ । ଅଜଣା ଭୟ । କିଏ ଡେଇଁବ ଏଇ ବଳୟ ଘେରା ତାରବାଡ଼କୁ । କିଏ ଜବାବ ଦେବ ଯେ ! ସରକାରଙ୍କ ଜଣେ ପଦସ୍ଥ ଅଫିସର ଅଦିତି ଶ୍ରୀଚନ୍ଦନ, ନିଜ ପଦମର୍ଯ୍ୟାଦାର ପଦକ ପିନ୍ଧି ଅଖଣ୍ଡ ପ୍ରତିପତ୍ତିର ବଳୟ ଭିତରେ ଥାଇ, ଆକାଶର ଅବିର ଖେଳ ଦେଖୁଦେଖୁ ଅଥବା ଚକାଜହ୍ନ କଥା ଭାବୁଭାବୁ, ଭାବୁଥିଲା ବଳୟ ସେପାଖ ମଣିଷମାନଙ୍କ କଥା ।

କେତେ ଅଲଗା ସେ ସେମାନଙ୍କଠୁଁ । ସବୁ ଥାଇ ମଧ୍ୟ କେଡ଼େ କାକୁସ୍ଥ ତା'ର ନାରୀପଣ । କେଡ଼େ ନିଛାଟିଆ । ବଳୟ ସେପାଖ ମଣିଷଙ୍କ ଆଖିରେ ସେ କେବଳ ଆହାପଣର ଦରଦଭରା ମୂର୍ଚ୍ଛନାଟିଏ ।

ଏକଥା ଭାବିଲାବେଳକୁ ଛଟପଟେଇ ଗଲା ଅଦିତି ନାମକ ପ୍ରୌଢ଼ା ନାରୀ ଜଣକ । ତା'ର ସବୁ ଦମ୍ଭ, ସବୁ ଗରିମା ଅବିର ଭଳି ଉଡ଼ିଯାଉଥିଲା ଶୂନ୍ୟରେ । ଯାଉ, ଉଡ଼ିଯାଉ । ସେ କ'ଣ ଆଉ ଧରି ରଖିବାକୁ ଚାହୁଁଛି କି ! ଚାହୁଁନି ତ !

ହେଲେ ତା’ ଖୋଳଟା ? ଯାହା ତା’ ଦେହରେ ସାପଭଳି ଗୁଡ଼େଇହେଇ ରହିଛି... ଦରକାର ବେଳେ ଫଣାକାଢ଼ି ଦେଖଉଛି ! !

ତାକୁ କ’ଣ ସହଜରେ ଛାଡ଼ିପାରୁଥିଲା ନା ଉଡ଼େଇପାରୁଥିଲା ପବନରେ । ପାରୁଥିଲେ ଆଜି କାହିଁକି ସେ ଛଟପଟଉ ଥିବା ଆହାପଣର ବିକଳ ସ୍ୱର ଭିତରେ ପରିବେଶକୁ ଆବେଗପ୍ରବଣ କରିପକଉଥା’ନ୍ତା ।

ତା’ହେଲେ, ତା’ହେଲେ ସେ କ’ଣ ଚାହିଥିଲା, କ’ଣ ଚାହୁଁଛି ? ତା’ରି ଭିତରୁ କିଏ ଜଣେ ମୁଣ୍ଡ ଟେକି ପ୍ରଶ୍ନ କଲା ଅଦିତିକୁ, କ’ଣ ଚାହୁଁଥିଲୁ ଯେ ଆଉ ?

ବଡ଼ ଅଦ୍ଭୁତ ପ୍ରଶ୍ନ । ସମ୍ବେଦନଶୀଳ । ଏମିତି ପ୍ରଶ୍ନ କ’ଣ କେବେ ପଚାରେ କିଏ ? ଯା’ର ଉତ୍ତର ବି କ’ଣ ସହଜରେ କିଏ ଦେଇପାରିବ ? “କାହିଁକି ଦେଇ ପାରିବନି ? ଯାହା ଚାହିଁଥିଲୁ ସବୁ ତ ପାଇଲୁ । ଆଉ ପୁଣି ଦୁଃଖ କ’ଣ ?”

ଏଥର ଅଦିତି ସ୍ୱପ୍ନ ଆଡ଼େଇ ବାସ୍ତବତାର ମାଟି ଉପରକୁ ଆସି ଠିଆ ହେଲା, ବରଂ ଭାବିଲା, ଆପଣାର ମଣିଷମାନେ କାହିଁ କୁଆଡ଼େ ହଜିଗଲେଣି । ଆଉ ଯୋଉମାନେ ନିଜର ବୋଲି ଦାବି କରନ୍ତି, ସେମାନେ ସବୁ ଦୂରରେ । ବେଳ ନାହିଁ କାହାକୁ ଖୋଜି ଲୋଡ଼ିବାକୁ । ଦୈବାତ ଯଦି କେବେ ଦେଖା ହେଇଗଲା କାହା ସାଙ୍ଗରେ ତ ସୃଷ୍ଟି ହେବ ଗୋଟାଏ ନାଟକୀୟ ପରିବେଶ । ତମକୁ ଚମକେଇ ଦେଇ ପଚାରି ବସିବେ ‘ଆରେ ଅଦିତି, କେତେଦିନ ପରେ ଦେଖାହେଲା କହିଲୁ ? କ’ଣ ଟୁର୍‌ରେ ଆସିଥିଲୁ.... ଭଲ ଅଛୁ ତ ? ତା’ପରେ ଦୀର୍ଘଶ୍ୱାସ । କପାଳ ଉପରେ ଜକେଇ ଆସୁଥିବା ଝାଳ ପୋଛିବା ବାହାନାରେ ସଫେଇ ଦେବେ, “ଦେଖୁଛୁ ତ ମା’, ଜମା ସମୟ ନାହିଁ ନାକ ପୋଛିବାକୁ । ତା’ପରେ ଗୋଟାଏ ଲମ୍ବା ତାଲିକା ସମୟ ଅଭାବ ସମ୍ପର୍କରେ । ବ୍ୟସ୍ତ ହେଇ ଉପସଂହାରରେ ଅଦିତି ଉପରେ ଦୋଷ ଲଦିବାକୁ ଯାଇ କହିବେ, “ଆମେ ସିନା ପିଲା କବିଲାଙ୍କ ଜଞ୍ଜାଳ ଭିତରେ ନାକେଦମ୍, ପୁଣି ଅଫିସ୍ ଅଛି.... ଅଫିସର୍‌ଙ୍କ ତାଗିଦା ଅଛି । ହେଲେ ତୋର କ’ଣ ଅସୁବିଧା ଯେ, ମାସେ କି ପନ୍ଦର ଦିନରେ ଥରେ ଅଧେ ଫୋନ୍‌ଟିଏ କରି ପାରନ୍ତୁନି- ଯେଡ଼େବଡ଼ ଅଫିସର୍ ତୁ ହୁଅ - ଆମ ପାଇଁ ତ ତୁ ଝିଅ ନା’, ମନେପଡ଼ିଲେ ମନ ଛଟପଟ କରୁଛି ।”

ଏକାବେଳକେ ଆପଣେଇଚି ।

ଭାବୁଭାବୁ ସେ ହସିଦିଏ ସେମାନଙ୍କ କଥାରେ । ସେ ଜାଣେ, ବାହାନାର ଅନ୍ତ ନାହିଁ । କେବଳ ଉତ୍ତର ଦେବା ପାଇଁ କୁହେ - “ଭଲ ତ ଅଛି । କହିବିନି ଆବଶ୍ୟକ ହେଲେ ? ତେବେ କଥା କ’ଣ କି... ମୁଁ କହୁଥିବି ଅଥଚ ତମକୁ ଶୁଣିବା ପାଇଁ ବେଳ ନଥିବ । ବ୍ୟସ୍ତ ମଣିଷ ତମେସବୁ । ମୋତେ ଭାରି ଦୁଃଖ ଦେବ ସେ କଥା । ବରଂ ଏଇ ଭଲ । ଭାବୁଥିବି, ତମେ ସବୁ ଅଛ ମୋର ହେଇ, ମୋ ଭଲ ମନ୍ଦ ବେଳକୁ ହାତ ବଢ଼େଇବାକୁ-

ଏଇ ଆଶ୍ୱାସନାମୂଳକ ବିଶ୍ୱାସ ହିଁ ମୋ ପାଇଁ ଯଥେଷ୍ଟ । ମୁଁ କ'ଣ ଏତେ ଛୋଟ ପିଲା ହେଇଛି କି ଆଉ...

"ତା' ତ ସତ । ତୁ ସାହସୀ ଝିଅ । ଅନ୍ୟମାନଙ୍କଠୁଁ ଅନେକ ଅଲଗା । ନହେଲେ ଏତେବଡ଼ ନିଷ୍ପତ୍ତି ନେଇଥା'ନ୍ତୁ କିମିତି ?"

'ନିଷ୍ପତ୍ତି' । ହଁ, ସେ ହିଁ ନେଇଥିଲା । ପଛେଇ ପଛେଇ ଅଦିତି ତିରିଶ ବତିଶ ବର୍ଷ ତଳକୁ ଫେରିବାକୁ ଚାହିଁଲା ଏବଂ ଫେରିବା ବାଟରେ ଆଶ୍ଚର୍ଯ୍ୟ ହେଇ ଭାବିଲା, ସତରେ ସେଦିନ ବାପା, କାକା, ବୋଉ, ଖୁଡ଼ୀ ଏମିତିକି ଜେଜେ.... ସମସ୍ତଙ୍କ ଯୁକ୍ତିକୁ କାଟିକୁଟି ନିଜ ବିଚାରକୁ କି ଚମତ୍କାର ଭାବେ ଉପସ୍ଥାପିତ କରିନଥିଲା ସେ । ଚକିତ ହେଇଯାଇଥିଲେ ସମସ୍ତେ ।

ଅଠରବର୍ଷୀ ନହନହକା ଇହୁଣି ପିତୁଳା ଅଦିତି କେଡ଼େ ଦୃପ୍ତ ଆଉ ଅନମନୀୟ ଠାଣିରେ ଠିଆ ହେଇ ନିଜ ପାଇଁ ଯୁକ୍ତି ବାଢୁଛି । କହୁଛି, ମୁଁ ପାଠ ପଢ଼ିବି, ସ୍ୱାବଲମ୍ବୀ ହେବି ବାପା, ସ୍ୱାଧୀନ ଭାବେ ବଞ୍ଚିବି । ତମେ କ'ଣ ଚାହୁଁଛ ମୁଁ ବୋଉ, ଖୁଡ଼ୀ, ପିଉସୀଙ୍କ ଭଳି ଧୂଆଁ ଅନ୍ଧାର ଭିତରେ ଘୁଟୁପୁଟୁ ହେଇ ସନ୍ତୁଳି ମରିବି ? ତେଲ ଲୁଣ ସିଂଘାଣି ମୂତ ହିଁ ମୋ ଜୀବନର ଆଶୀର୍ବାଦ ହେବ ? ଦୁଃଖ ଯନ୍ତ୍ରଣାର ଭଉଁରି ଭିତରେ ଉବୁଟୁବୁ ହେଇ ମୁଁ କାହିଁକି କୂଅ ପୋଖରୀ କି କନିଅର ମଞ୍ଜି ଖୋଜିବି ? ବାପା ! ପୁଅଟିଏ ହେଇଥିଲେ ତମେ ତ ଏକଥା କହିନଥାନ୍ତ ନା ? ତେବେ.... ମୋ ବେଳକୁ କାହିଁକି ଏ ଲକ୍ଷ୍ମଣରେଖା ? ଅନ୍ଧବିଶ୍ୱାସ ନା ନାକ ନିଶ ତଳେ ପଡ଼ିଯିବାର ଭୟ ?

କେତେବଡ଼ ସ୍ପଷ୍ଟ କଥା । ବୁଲାଣି ନାହିଁ, ସିଧା । ସମସ୍ତେ ସ୍ଥାଣୁ ପାଲଟି ଯାଇଥିଲେ । ସେ ଲକ୍ଷ୍ୟ କରିଥିଲା, ବାପା କିନ୍ତୁ ମୁଗ୍ଧ ହୋଇଯାଇଥିଲେ ବାହାରକୁ ନିଜ ଭାବନା ପ୍ରକାଶ ନକରି । ବୋଉ ମୁହଁରେ ତ ପାଣି ଟୋପାଏ ନଥିଲା "ଏ ଝିଅ ମୋରି ପେଟରେ ଜନ୍ମି ଥିଲାଟି !" ସମସ୍ତଙ୍କ ଅଲକ୍ଷ୍ୟରେ ଚୁପ୍‌କିନି ଆସି ମୁଣ୍ଡରେ ହାତ ବୁଲେଇଦେଇ କହିଥିଲା, "ପାଗଳୀଟା, ଏଡ଼େ ଜିଦ୍‌ଖୋର... ହେଲେ ଚଳିବ ମା' ? ଇଚ୍ଛା ଅଛି ତ ପଢ଼ିବୁ । ପଛେ ଭାବିବା ତୋ ବାହାଘର କଥା ।" ବୋଉ ମୁହଁରେ ସେଦିନ ପ୍ରସନ୍ନତାର ଆଭା ଝଲସି ଉଠିଥିଲା । ଯେମିତି ତା'ର ଅନେକ ଦିନର ଆଶା ପୂରଣ ହେଇଛି ।

ପ୍ରସ୍ତାବମାନ ଫେରିଯାଇଥିଲେ । ସେ ପାଠ ପଢ଼ିବାକୁ ସହର ଆସିଥିଲା । ତା'ପରେ ସମସ୍ୟା, ପାଠରେ । କେହି କେବେ ବାହାଘର କଥା ଉଠେଇ ନାହାନ୍ତି ମଝି ବାଟରେ । ଶେଷରେ ସିଦ୍ଧି, ଓଡ଼ିଶା ସରକାରଙ୍କ ପ୍ରଶାସନିକ ସେବାରେ ଯୋଗଦାନ । ଆକର୍ଷଣୀୟ କର୍ମମୟ ଜୀବନ । ଅନେକ ସମ୍ଭାବନା ଆଖି ଆଗରେ । ଆଗକୁ ଯିବାପାଇଁ ଅନେକ ବାଟ ।

ପଛକେ ବାହାଘର କଥା ଭାବିବା ପାଇଁ ବାପା ବୋଉ ଆଉ ନଥିଲେ । ଜଣେଜଣେ ହୋଇ ଅଧାବାଟରୁ ବାଟଭାଙ୍ଗି ଚାଲିଯାଇଥିଲେ ।

ଚାକିରି ନିଶା ଆଉ 'କୌଣସି ଗୁଣରେ ମୁଁ କମ୍ ନୁହେଁ'ର ଉତ୍ସାହରେ ଅଦିତି ଏକା ଲହସରେ ଏତେବାଟ ମାଡ଼ି ଆସିଲାଣି ବୋଲି ତା'ର ହୋସ୍ ହିଁ ନଥିଲା । ମନେ ପକେଇବା ମଣିଷମାନେ ଯେତେବେଳେ ନାହାନ୍ତି, କିଏ ଆଉ ମନେ ପକେଇଥାନ୍ତା !

ଗଲାକାଲିର ଚକାଚକ୍ର କାହିଁକି କେଜାଣି ତାକୁ ପଛକଥା ସବୁ ମନେପକେଇ କେମିତି ଦୁର୍ବଳ ଆଉ ବିଷଣ୍ଣ କରିପକେଇଲା ଏବଂ ଅଭ୍ୟାସର ନିଶାରେ ହିଁ ସେ ଛୁଟି ଆସିଛି ଛାତ ଉପରକୁ ଅକାଶର ଉଦଯୋସବ ଦେଖିବ ବୋଲି । ଅଥଚ ମେଘ ଫାଙ୍କରେ ଆକାଶ ଦିଶିଲା ଭଳି, ଅତୀତ ଦିଶିଯାଉଥିଲା ରହିରହି । ଭାବନାକୁ ପୋଛିପାଛି ମୁକ୍ତ ହେବାର ଇଚ୍ଛାରେ ବର୍ଣ୍ଣାଳୀ ଆକାଶର ଛଟା ଦେଖିବାକୁ ଆସିଥିବା ଅଦିତି ଭାବନାର ଜାଲରୁ ମୁକୁଳେଇ ପାରୁନଥିଲା ନିଜକୁ । ନିଜ ତିଆରି ଜାଲ ଭିତରେ ଛନ୍ଦି ହୋଇ ସେ ଆହୁରି ତଳେଇ ଭାବିବାକୁ ଲାଗିଲା ।

ସମସ୍ତେ କହୁଛନ୍ତି, ସେ ମୁକ୍ତ । ତା'ର କିଛି ଝଞ୍ଜାଳ ନାହିଁ । କାରଣ ତା'ର ସଂସାର ନାହିଁ - ସ୍ୱାମୀ, ପୁଅ-ଝିଅ, ଶାଶୂଶ୍ୱଶୁରଙ୍କର ଚିରାଚରିତ ସଂସାର ଏବଂ ସଂସାର ଯାବତୀୟ କଟକଣା । କେହି ନାହିଁ ତା' ପାଇଁ ଲକ୍ଷ୍ମଣରେଖା କାଟିବାକୁ । କି ଲକ୍ଷ୍ମଣରେଖାକୁ ଘୁଞ୍ଚାଘୁଞ୍ଚି କରିବା ନେଇ କୌଣସି ନିତିଦିନିଆ ଝିଂଝଟ ନାହିଁ ତା'ର ସଂସାରରେ । ସେ ବଞ୍ଚିଛି ସ୍ୱାଧୀନ ଭାବରେ । ତା'ର ବି ତ ସେଇ ଧାରଣା ଥିଲା ଆଜିଯାଏ- ସେ ମୁକ୍ତ ।

ଅଥଚ ଆଜିକାଲି ତା'ର ସେଇ ନିଶ୍ଚିତ ଧାରଣାଟା କିମିତି କେଜାଣି କଡ଼ ଲେଉଟଉଛି । ଖୁଣ୍ଟମୁଣ୍ଡ ହେଉଛି । ଭାବୁଛି ସେ ଆଉ କେତେବେଳେ ସ୍ୱାଧୀନ ହେଲା, ମୁକ୍ତ ହେଲା ଯେ ?

କାହିଁ ସେ ତ ମନଖୁସିରେ ହସିପାରୁନି, ରୁଷିପାରୁନି, ପାଞ୍ଚଜଣଙ୍କ ସହିତ ମିଶି ସୁଖଦୁଃଖ ବାଣ୍ଟିପାରୁନି । ନିର୍ଦ୍ଦିଷ୍ଟ ଗୋଟାଏ ମାପଚୁପର ନିୟମ ଭିତରେ ତା' ଜୀବନଚର୍ଯ୍ୟା ବନ୍ଦୀ ହୋଇ ରହିଛି । ସକାଳରୁ ସନ୍ଧ୍ୟା ନିତି ଅଫିସ୍ ଧାଉଁଚି । ଫାଇଲ୍, ଆପତ୍ତି, ଅଭିଯୋଗ ମନ୍ତବ୍ୟ, ଟିପ୍ପଣୀ, ଡିକ୍ଟେସନ, ଉପରିସ୍ଥଙ୍କ ଆଦେଶ ନିର୍ଦ୍ଦେଶ, ଟୁର୍, ମିଟିଙ୍ଗ, ଆଉ ଶେଷରେ ଅମାପ କ୍ଲାନ୍ତି । ଅଣନିଃଶ୍ୱାସୀ ହେଇପଡୁଛି ତା'ର ମୁକ୍ତିକାମୀ ମନ । ଚିଟା ଧରିଯାଉଛି । ପାନରୁ ଚୂନ ଖସିବନିର- ଜୀବନଚର୍ଯ୍ୟା । ହଜାରେ ଆଖି ତା' ଉପରେ । ରୁଟିନ ବନ୍ଧା ଘସରା ଜୀବନ, ଥ୍ରୀଲ୍ ନାହିଁ । ସମୟ ସୁଯୋଗ ଦିଏନା କେବେ ମୁହୂର୍ତ୍ତେ ନିରୋଳାରେ ବସି ଭାବିବାକୁ, ମଣିଷ ମିଳେନା ଦି'ପଦ ମନଖୋଲି କଥା କହିଦେବାକୁ, କହିଦେଇ ହାଲୁକା ହୋଇଯିବାକୁ । ଅଫିସ୍ ଫେରନ୍ତା ରାସ୍ତା ମୁକୁଳା ପବନ ଭଳି ଉଡ଼ି ବୁଲୁଥିବା ମଣିଷମାନଙ୍କୁ ଦେଖିଲେ ଭାରି ଈର୍ଷା ହୁଏ ତାର । ବିକଳ ଲାଗେ, ଗାଡ଼ି ଭିତରୁ ଓହ୍ଲେଇ ଆସି ସେମାନଙ୍କ କାନ୍ଧରେ ହାତ ପକେଇ ରାସ୍ତା କଡ଼ରେ ଠିଆ ହୋଇ ଗପ ଯୋଡ଼ିବାକୁ, ଦୁଃଖସୁଖ ହେବାକୁ ମନ ଡାକେ । ସରବତ ପିଇବାକୁ ମନହୁଏ । ସାଙ୍ଗସାଥି ମେଳରେ ଠେଲାଗାଡ଼ିରୁ ଗୁପ୍‌ଚୁପ୍ ଖାଇ ସମୁଦ୍ରବେଳାରେ ମନଇଚ୍ଛା ଧାଇଁବାକୁ ଇଚ୍ଛା ହୁଏ । ଏମିତି ଅନେକ କିଛି ହେଲେବି

ସେ ପାରେନା । ତା' ପରିଚୟ, ପାହ୍ୟା ଓ ପଦମର୍ଯ୍ୟାଦା ପାଦରେ ବେଡ଼ି ପିନ୍ଧେଇ ଦିଏ । ମାପିମାପି ବାଟ ଚାଲିବାକୁ ଶିଖାଏ । ଭାବିଚିନ୍ତି କଥା କହିବାକୁ କୁହେ- ସବୁଆଡୁ ସେ ବାନ୍ଧି ହେଇଯାଏ । ଅଥଚ ସମସ୍ତେ କୁହନ୍ତି ସେ ମୁକ୍ତ, ସେ ସ୍ୱାଧୀନ ।

ଇଏ କି ପ୍ରକାର ମୁକ୍ତି ? କି ସ୍ୱାଧୀନତା ଏଇଟା ? ସେ କ'ଣ ଏଇୟା ଚାହିଁଥିଲା ?

ଆକାଶରେ ମେଘମାନେ ଉଲ୍ଲାସରେ ଧାଉଁଥିଲେ ।

ତା' ପ୍ରଶ୍ନ ସବୁ ହୁଏତ ତାଙ୍କ କାନରେ ବାଜୁନଥିଲା । ସେମାନେ ତ ମୁକ୍ତ ବନ୍ଧନହୀନ ! ଆକାଶ ଆଉ ମେଘ ଉପରୁ ଆଖି ଫେରେଇ ସେ ଚାହିଁଲା ରସ୍ତା ଉପରକୁ । ଅସୁମାରି ମଣିଷଙ୍କ ଭିଡ଼ର ଏଇ ରାସ୍ତା । ଆଜି କିନ୍ତୁ ଶୂନଶାନ୍, କେତେବେଳେ କେମିତି ଜଣେ ଅଧେ ମଣିଷ ଭିଣାତୁଳାର ମେଘ ଭଳି ଚାଲିଯାଉଛନ୍ତି । ବୋଧେ ହୋଲି ବୋଲି, ନହେଲେ କାଲି ତ ପ୍ରଭୁଙ୍କ ସଙ୍ଗେ ରଙ୍ଗ ଖେଳିବାକୁ ମଣିଷର ଧାଡ଼ି ଲାଗିଥିଲା । ଆଖି ପାଇବାଯାଏ ପହଁଚିଗଲା ଦୃଷ୍ଟି ବଡ଼ଦାଣ୍ଡର ବିସ୍ତୃତି ଉପରେ ।

ଅନେକ ଦୂରରେ କିଛି ଲୋକ ବୋଧହୁଏ ରଙ୍ଗ ଖେଳୁଛନ୍ତି । ଅବିର ଉଡୁଛି । ମନଟା ଗୋଳେଇଘାଣ୍ଟି ହେଇଗଲା । କାନ୍ଦୁଣୁମାନ୍ଦୁଣୁ ଲାଗିଲା । ଆହା ! କାହିଁକି ସେ ଏମିତି ଏକୁଟିଆ ହେଇଗଲା ଯେ । ସମସ୍ତଙ୍କଠାରୁ ବିଚ୍ଛିନ୍ନ । ଆଜିଭଳି ଦିନଟାରେ ବି ରଙ୍ଗ ଟିକିଏ ଖେଳିପାରିବନି । ଖେଳିବ ଯଦି ସାବଧାନରେ । ସମସ୍ତଙ୍କ ସାଙ୍ଗରେ ତ ଖେଳିପାରିବନି । ତା'ପାଇଁ ବି ନିର୍ଦ୍ଦିଷ୍ଟ ନିୟମ ଅଛି । ବଛାବଛା ଉଚ୍ଚ ଦରର, ପାହ୍ୟା ଦେଖି ଖେଳିବାକୁ ହେବ । ଏମିତି କ'ଣ ଖେଳାଯାଏ ନା, ଖେଳହୁଏ ! ସେଥିରେ ବି ଦଶଜଣଙ୍କ ଆଖି ଖୋସି ହୋଇଯିବ । ମୁହଁ ଚୁହାଁଚୁହିଁ, ମୁରୁକି ହସ ଲୁଚାଲୁଚି ଆଲୋଚନା ଭିତରେ ଅବିରର ରଙ୍ଗ ଫିକା ପଡ଼ିଯିବ- ମନ ମଉଳିଯିବ । କଥା ଉଡ଼ିବ ପବନରେ, ତିଳକୁ ତାଳ, 'ଦେଖ ହୋ...' । ଇଏ କି ପ୍ରକାର ଜୀବନ ! ଯାରି ନାଁ ସ୍ୱାଧୀନତା ?

ଅବଶ୍ୟ ଆର୍ଥିକ ଦୃଷ୍ଟିରୁ ସେ ସ୍ୱାଧୀନ, ସ୍ୱାବଲମ୍ବୀ । ପାଦତଳର ମାଟି ତା'ର ଦମ୍ଭ । ଏହାହିଁ କ'ଣ ଜୀବନର ଶେଷ ଲକ୍ଷ୍ୟ । ଯାକୁ ହିଁ ମଣିଷ ଚାହୁଁଛି ପାଗଳ ଭଳି । ଆଉ, ସେ ଚାହିଁଥିଲା ?

ଦୁନିଆ ଆଖିରେ ସେ ତ ଅଖଣ୍ଡ କ୍ଷମତାର ଅଧିକାରିଣୀ । ଅଥଚ ତାକୁ ଏତେ ଦୁର୍ବଳ ଲାଗୁଛି କାହିଁକି ? ତା' ଭିତରେ କୋଉଠି ଗୋଟାଏ ଏକାକୀପଣ ରହିରହି କେନ୍ଦେରା ବଜଉଛି । ନିଛାଟିଆ ଅଗଣାର ମଲାଗଛ ଥୁଣ୍ଟା ହୋଇ ବସିଥିବା ନିଃସଙ୍ଗ କଜଳପାତିର ଅହରହ ଡାକ ଭିତରେ ହଜିଯାଇ କିଛି ଗୋଟାଏ ଯିମିତି ଖୋଜିବୁଲୁଛି ।

ତା'ର ମନେପଡ଼ିଲା ଜେଜେମା'ର ପାନଖିଆ ଗୋରା ଟକଟକ ମୁହଁ । ପରାଧୀନ ଜୀବନ ସମ୍ପର୍କରେ ସେ ଯେତେବେଳେ ଯୁକ୍ତି କରେ, ତାକୁ ବୁଝେଇବାକୁ ଯାଇ ଜେଜେମା'

କୁହେ- ବୁଝିଲୁ ମା', ଏଇ ଯୋଉ ମୁକ୍ତି କଥା ତୁ କହୁଛୁ, ସେଇଟା ଗୋଟାଏ ଅନୁଭବ, ନିଜ ଭିତରର । ମଣିଷକୁ କିଏ କେବେ ବାନ୍ଧେନା । ତୁ ଶୁଣିନୁ ଭାଗବତ କଥା, ଯଶୋଦା କ'ଣ ଇଚ୍ଛା କରି ଶ୍ରୀକୃଷ୍ଣଙ୍କୁ ବାନ୍ଧିଥିଲେ ? କୃଷ୍ଣ ଚାହିଁଲେ ବୋଲି ବାନ୍ଧିହେଲେ । ଏଇ ବନ୍ଧନ ବି ସେଇୟା । ନିଜ ଇଚ୍ଛାରେ ସେ ବାନ୍ଧି ହୁଏ, ମୁକୁଳେ ବି ସେମିତି ।

ସେ'ଦିନ ରକ୍ତର ଟାଣରେ ତା'କଥାର ଗୁରୁତ୍ୱ ବୁଝି ପାରିନଥିଲା । ଆଜି ବୁଝୁଛି ଟିକିଏ ଟିକିଏ । ମୂର୍ଖ, ଅପାଠୋଇ ଜେଜେମା' ସତରେ କେତେ ସତ କଥାଟିଏ କହିଥିଲା । ଅଦିତି ଭାବିଲା, ତା'ର ଏଇ ପରିଚୟର ଆଲଖାଲାଟାକୁ କାଢ଼ି ଫୋପାଡ଼ି ଦେଲେ କେମିତି ହୁଅନ୍ତା ! ପରିଚୟ ବୋଲି ତ କିଛି ରହନ୍ତା ନାହିଁ । ମାନେ କୌଣସି ପଦପଦବୀ ପୋଷାକ ଅଥବା ଅଳଙ୍କାର ପିନ୍ଧିଥିବା ସାଧାରଣ ମଣିଷଟିଏ – ଅଦିତି, କେବଳ ଅଦିତି ହିଁ ତା'ର ପରିଚୟ ହୁଅନ୍ତାନି ?

ପୁଣିଥରେ ଅଡୁଆରେ ପଡ଼ିଲା ସେ ଏମିତିକା ପ୍ରଶ୍ନଟିଏ ନିଜକୁ ପଚାରି । ଉତ୍ତର ଖୋଜୁଖୋଜୁ ହଠାତ୍ ତା'ର ମନେପଡ଼ିଗଲା ଅଧ୍ୟାପକ ଦାଶଙ୍କର କଥା । ଅନେକ ଦିନ ତଳେ ଥରେ ଶ୍ରୀମନ୍ଦିର ବେଢ଼ା ବାଇଶି ପାହାଚ ଉପରେ ଦେଖା ହୋଇଥିଲା ତାଙ୍କ ସହିତ ।

ନୂଆଁ ହୋଇ କଲେଜରେ ପାଦ ଦେଲାବେଳେ ଅଧ୍ୟାପକ ଦାଶ ତାଙ୍କର କ୍ଲାସ୍ ନେଉଥିଲେ । ଅନେକ ବର୍ଷ ହୋଇଗଲାଣି । ଏତେବର୍ଷ ପରେ ବି ସେ ତାକୁ ଚିହ୍ନିପାରି ଖୁସି ହୋଇଯାଇଥିଲେ । ପଚାରି ବୁଝିଥିଲେ ସବୁ କଥା । ଫେରିଲା ବାଟରେ କଥା ଛଳରେ ଅନୁରୋଧ ନହେଲେ ବି ସେଇ ସ୍ୱରରେ କହିଥିଲେ- ସମୟ କରି ଏଇମିତି ବେଳେବେଳେ ମନ୍ଦିରକୁ ଆସୁଥାଅ ଅଦିତି । ଭଲ ଲାଗିବ । କ୍ଳାନ୍ତି ମେଣ୍ଟିଯିବ । କାମ କରିବାକୁ ଉତ୍ସାହ ଆସିବ । ଏଇ ଯୋଉ ଚକାଡୋଳା, ତା' ଉପରେ ଦୃଷ୍ଟି ନିବଦ୍ଧ ରଖିଲେ, ଦେଖିବ କେତେ ହାଲୁକା ଲାଗୁଛି, ତମେ ଯେମିତି ତମେ ନୁହଁ... ।

ଭାବ ଗଦ୍‌ଗଦ୍ ସ୍ୱରରେ ଅଧ୍ୟାପକ ଦାଶ କହୁଥା'ନ୍ତି- ଗୋଟାଏ ପଟେ ଅନନ୍ତ ସମୁଦ୍ରର ଦିଗନ୍ତ ବିସ୍ତାରୀ ପରିପ୍ରକାଶ ଏବଂ ନୀଳ ଶିଖରର ଏଇ ଦୁଇ ଚକା ଆଖି... ଆଉ 'ପରିଚୟ'ର କ'ଣ ଆବଶ୍ୟକତା ଅଛି ?

ହସିଲା ଆଖି, ଉଜ୍ଜ୍ୱଳ କପାଳ, ଉତ୍ତୀର୍ଣ୍ଣ ବୟସର ମଣିଷ ଅଧ୍ୟାପକ ଦାଶ । ମୁହୂର୍ତ୍ତଟିଏ ପ୍ରଶ୍ନ କରିବା ଭଙ୍ଗୀରେ ଅଦିତି ମୁହଁକୁ ଚାହିଁ, ପୁଣି କହିଥିଲେ ସେଇ ପୁରୁଣା ପାଠ ପଢ଼େଇବା ଢଙ୍ଗରେ, "ଅବଶ୍ୟ ଜୀବନର ପ୍ରାରମ୍ଭରେ ମଣିଷ ନିଜ ପାଇଁ ଗୋଟିଏ ସ୍ୱତନ୍ତ୍ର ପରିଚୟ ଖୋଜେ । ଅନେକ ଆୟାସ ପ୍ରୟାସ ମଧ୍ୟରେ ଏଇ 'ପରିଚୟ' ଗଢ଼େ ଏବଂ ଯତ୍ନର ସହିତ ତାକୁ ସଜାଡ଼ି ରଖେ.... ଭେରି ଷ୍ଟ୍ରେଞ୍ଜ ! ଆଶ୍ଚର୍ଯ୍ୟ ନୁହେଁ କି ସତରେ ! କିନ୍ତୁ ଏଇଟା ସ୍ୱାଭାବିକ । ଇତିହାସ ଏ ସମ୍ପର୍କରେ ଅନେକ କଥା କହିଛି ।

ଅଦିତି କିଛି ନ କହି କେବଳ ଚାହିଁ ରହିଥିଲା ଅଧ୍ୟାପକ ଦାଶଙ୍କ ଭାବବିହ୍ୱଳ ମୁହଁକୁ । ତାଙ୍କର ଆଖି କ୍ରମଶଃ ନୀଳଚକ୍ର ଉପରେ ଲହଡ଼ି ଖେଳୁଥିବା ପତିତପାବନ ନେତ ଉପରେ ପହଁରି ଆସୁଆସୁ ସ୍ଥିର ହୋଇଗଲା ହଠାତ୍ ଏବଂ ସେ କହିବାକୁ ଲାଗିଲେ- "କିନ୍ତୁ ଅଦିତି ଦିନେ ସମୟ ଆସେ । ଏଇ ପରିଚୟଟା କାହିଁକି କେଜାଣି ଭାରି ଓଜନିଆ ଲାଗେ ତାକୁ । ଇଚ୍ଛାହୁଏ କାଢ଼ି ଫୋପାଡ଼ି ଦେବାକୁ, ହଜେଇ ଦେବାକୁ ପୂରାପୂରି । ହଜେଇଦିଏ ମଧ୍ୟ । ହଜେଇଦିଏ ଏଇ ଅସୁମାରି ମଣିଷର ପଟୁଆର ଭିତରେ ଏବଂ ଭାବେ ସିଏ ଭିନ୍ନ କିଏ ନୁହେଁ । ଏଇମାନଙ୍କ ଭିତରେ ସେ ଜଣେ । ଯା' ବ୍ୟତୀତ ତା'ର କିଛି ଅଲଗା ପରିଚୟ ନାହିଁ । ନା, କ'ଣ କହୁଛ ଅଦିତି, ଆମ୍ ଆଇ ରାଇଟ୍ । - ମୁଁ ଠିକ୍ କହୁଛି ନା ?"

ବାଧ୍ୟ ଛାତ୍ରଟିଏ ଭଳି ସେ ମୁଣ୍ଡ ହଲେଇ ସମର୍ଥନ କରିଥିଲା । ହେଲେ କଥାର ଗୁରୁତ୍ୱ ଠିକ୍ ଭାବରେ ସେଦିନ ମାପି ପାରିନଥିଲା । ଆଜି କିନ୍ତୁ ସେ ବୁଝିପାରିଛି, ସେଦିନ ଅଧ୍ୟାପକ ଦାଶ ଜୀବନର ଆଉ ଗୋଟିଏ ସତ୍ୟକୁ ଉଦ୍‌ଘାଟନ କରି ଦେଖେଇ ଦେଇଥିଲେ । ଏଇ ମୁହୂର୍ତ୍ତରେ ତା'ର ତାତ୍ପର୍ଯ୍ୟ ସେ ଅନୁଭବ କରିପାରୁଛି । ମନେମନେ ଅଧ୍ୟାପକ ଦାଶଙ୍କୁ ପ୍ରଣାମ କଲା ।

ଅଦିତି ଚାହିଁଲା ଆକାଶକୁ । ରଙ୍ଗ ବଦଳଉଛି ମେଘ । ଟିକକ ଆଗର ବର୍ଣ୍ଣିଳ ରୋମାଞ୍ଚ ଫିକା ପଡ଼ିଯାଇଛି । ଉଜ୍ଜ୍ୱଳ ଦିଶୁଛି ଆକାଶ । ଉଜ୍ଜ୍ୱଳି ଉଠିଥିଲା ତା'ର ଅନ୍ତଃଚେତନା । ସତେତ ! ଚମତ୍କାର ! ଯଦି ସେ ତା'ର ଏଇ ଓଜନିଆ ଅଥଚ ଦାମିକା 'ପରିଚୟଟା'କୁ କାଢ଼ି ଫୋପାଡ଼ି ଦେଇପାରନ୍ତା ଏବଂ ନିରୁତା ଅଦିତିଟିଏ ହୋଇ ରାସ୍ତାର ଏଇ ମଣିଷ ପଟୁଆର ଭିତରେ ନିଜକୁ ହଜେଇ ଦିଅନ୍ତା- କେମିତି ହୁଅନ୍ତା ? ?

ସତରେ, କେମିତି ହୁଅନ୍ତା ?



# ସୀତା ନବମୀ, ସାୟନ୍ତନୀ ଓ ସଂସ୍କୃତି ସୁରକ୍ଷା ମଞ୍ଚ

ଗଲା 'ସଂସ୍କୃତି ସୁରକ୍ଷା ମଞ୍ଚ'ର ସାମ୍ବତ୍ସରିକ ବୈଠକରେ ସର୍ବସମ୍ମତି କ୍ରମେ ସ୍ଥିର ହେଲା ଯେ, ଏଣିକି ଏଇ ଅନୁଷ୍ଠାନର ଦାୟିତ୍ୱ ସାୟନ୍ତନୀ ଦେବୀଙ୍କୁ ଅର୍ପଣ କରାଯିବ । ଏଇ ପ୍ରସ୍ତାବ ନିଜେ, ସଭାପତି ସୁରଥ ବାହିନୀପତିଏ ଦେଇଥିଲେ ।

ଅବଶ୍ୟ ଏଇ ପ୍ରସ୍ତାବ ମୁହୂର୍ତ୍ତକ ପାଇଁ ଅନୁଷ୍ଠାନର କର୍ମକର୍ତ୍ତା ଓ ସଭ୍ୟମାନଙ୍କୁ ସ୍ତମ୍ଭୀଭୂତ କରି ଦେଇଥିଲା । ବିସ୍ମିତ ହେଇ ଯାଇଥିଲେ ସମସ୍ତେ । ହଠାତ୍ କ'ଣ ଏମିତି ଅସୁବିଧା ହେଲା ଯେ.... ବାହିନୀପତିଏ ତ ଏମିତିସେମିତି ମଣିଷ ନୁହଁନ୍ତି । ସେ ସଭିଙ୍କର ପ୍ରିୟ.... ସମସ୍ତେ ତାଙ୍କର ପ୍ରିୟ । ଅଥଚ ଏଭଳି, ନିଷ୍ପତ୍ତି ନେବାର କାରଣଟା..., କାହାର ସାହସ ନଥିଲା ପଚାରିବାକୁ ।

ଏତେବର୍ଷ ଧରି ଏଇ ଅନୁଷ୍ଠାନର ଦାୟିତ୍ୱକୁ ସେ ସୁଚାରୁରୂପେ ତୁଲେଇ ଆସିଛନ୍ତି । ଦାୟିତ୍ୱ କେବଳ ତୁଲେଇଛନ୍ତି, ତା' ନୁହେଁ, ଅନୁଷ୍ଠାନଟିକୁ ଏକ ବିଶିଷ୍ଟ ରୂପ ଦେଇ ଶୀର୍ଷ ସ୍ଥାନରେ ପହୁଞ୍ଚେଇଛନ୍ତି । ସେଥିପାଇଁ ମଧୁପୁରବାସୀ ତାଙ୍କ ନିକଟରେ କୃତଜ୍ଞ । କେତେ ବଡ଼ବଡ଼ ସାଂସ୍କୃତିକ କାର୍ଯ୍ୟକ୍ରମମାନ ତାଙ୍କ ସମୟରେ ଅନୁଷ୍ଠିତ ହୋଇଛି । ଭାଷା, ସାହିତ୍ୟ କି ନୃତ୍ୟ ସଂଗୀତ ନାଟକ କେବଳ ନୁହେଁ, ସଂସ୍କାରଧର୍ମୀ ବହୁ ସାମାଜିକ ଅନୁଷ୍ଠାନ ଅଥବା ଧର୍ମ ସମ୍ପର୍କୀତ ବିବିଧ ପର୍ବପର୍ବାଣି, ଯାହା ଲୋକଲୋଚନକୁ ଆସିପାରୁ ନଥିଲା ଯଥାର୍ଥ ଭାବେ- ସେ ସବୁକୁ ଏଇ ଅନୁଷ୍ଠାନ ସଫଳ ଭାବେ କାର୍ଯ୍ୟକାରୀ କରେଇଛି । ବହୁ ଶିଳ୍ପୀ, କଳାକାର, ନାଟ୍ୟକାର ମଧ ପ୍ରୋତ୍ସାହିତ ହୋଇଛନ୍ତି ।

କହିବାକୁ ଗଲେ, ଜନମାନସର ସାଂସ୍କୃତିକ ଚେତନାର ବାସ୍ତବ ପ୍ରତିଫଳନ ହେଉଛି ଏଇ 'ସଂସ୍କୃତି ସୁରକ୍ଷା ମଞ୍ଚ' । ଗ୍ରାମ ସଂସ୍କୃତି ଯେ ଏତେ ଉନ୍ନତ ହେଇପାରେ, ମଧୁପୁର

ତାର ପ୍ରମାଣ । ଯାର ଜନ୍ମ ପାଖାପାଖି ପଚାଶବର୍ଷ ତଳେ । ସୁବର୍ଣ୍ଣଜୟନ୍ତୀ ପାଳନ କରି ସାରିଛି ବି । ସେତେବେଳେ ସାଂସ୍କୃତିକ ସଙ୍କଟର ସନ୍ଧିକ୍ଷଣ । ପୁରୁଣା ବିଚାର, ପରମ୍ପରାକୁ ଆଡ଼େଇ ନୂଆକୁ ଡାକିବାର ବେଳ । ସ୍ୱାଧୀନତାକୁ ବେଶି ବୟସ ବି ହୋଇନଥିଲା ତ, ସବୁକିଛିକୁ ନୂଆ କରି ଗଢ଼ିବାର, ସଜାଡ଼ି ସାଇତିବାର ଉନ୍ମାଦନା ବି କମ୍ ନଥିଲା ଯୁବପ୍ରାଣରେ । ସେଇ ସମୟରେ, ସୁରଥ ବାହିନୀପତିଙ୍କ ବାପା, ଏକଦା ବନବିଦ୍ୟାଳୟର ଛାତ୍ର ଶଙ୍କର୍ଷଣ ବାହିନୀପତିଙ୍କ ପ୍ରସ୍ତାବନା କ୍ରମେ କିଛି ଆଦର୍ଶବାଦୀ ଉତ୍ସାହୀ ଯୁବକଙ୍କ ପ୍ରୟାସରେ ଜନ୍ମ ନେଇଥିଲା ଏଇ 'ସଂସ୍କୃତି ସୁରକ୍ଷା ମଞ୍ଚ' । ଉଦ୍ଦେଶ୍ୟ ମହତ୍ ଥିଲା । ସେମାନେ ଚାହିଥିଲେ, ଆମ ପାରମ୍ପରିକ ଜୀବନଧାରା ମାନ ବଢ଼େଇବାକୁ ହେଲେ, ଆମ ସାମାଜିକ, ସାଂସ୍କୃତିକ ଚେତନାର ପୁନଃବିନ୍ୟାସ କରିବାକୁ ପଡ଼ିବ । ବିଚାରକୁ ମାର୍ଜିତ କରିବାକୁ ହେବ ଏବଂ ଏଇ ମଞ୍ଚ, ସେ' ସବୁକୁ ଯଥାର୍ଥ ଭାବେ ରୂପାୟନ କରିବାର ଅଗ୍ରଣୀ ଭୂମିକା ଗ୍ରହଣ କରିବ । ସାଧ ମତେ କରିଆସିଛି ମଧ, ଏଥିରେ କୌଣସି ସନ୍ଦେହ ନାହିଁ ।

ପିଲାଟି ଦିନରୁ ସୁରଥ ବାହିନୀପତିଏ ବାପା ଦାଦାଙ୍କ କାମ କରିବାର ପଦ୍ଧତି, ଲୋକଙ୍କ ମନରେ ବିଶ୍ୱାସ ସୃଷ୍ଟି କରିବାରେ ଦକ୍ଷତା ଏବଂ ସାଙ୍ଗଠନିକ ପ୍ରଣାଳୀ ସହିତ ସିଧାସଳଖ ସଂପୃକ୍ତ ଥିଲେ । ଶିଖିଥିଲେ ସେମାନଙ୍କଠୁ । ତେଣୁ ଉପଯୁକ୍ତ ସମୟରେ, ସେମାନଙ୍କର ଅବର୍ତ୍ତମାନରେ ବି ଦାୟିତ୍ୱ କାନ୍ଧକୁ ନେଇଁ ତୁଲେଇ ଆସିଥିଲେ ଏତେ ବର୍ଷଧରି । ଲୋକସମ୍ପର୍କ ଭଲ ଥିଲା । ଅନୁଷ୍ଠାନ ଭିତରକୁ କୌଣସି ରାଜନୀତି ପଶି ପାରୁନଥିଲା । ନିର୍ବିଘ୍ନରେ ହିଁ ବାହିନୀପତିଏ, ଯୁବଗୋଷ୍ଠୀକୁ ଏକାଠି କରି ଆଖପାଖ ଗାଁମାନଙ୍କରେ ଶିକ୍ଷା, ସ୍ୱାସ୍ଥ୍ୟ ସମ୍ପର୍କିତ ସଚେତନତା ସୃଷ୍ଟି କରିବାରେ ସଫଳ ହୋଇଥିଲେ । ସେତେବେଳ ପର୍ଯ୍ୟନ୍ତ ବି ସତ୍ୟବାଦୀ ବନବିଦ୍ୟାଳୟର ଆଦର୍ଶ, ବିଚାରଧାରାର ଛିଟା କିଛି କିଛି ଥିଲା । କୃପାସିନ୍ଧୁ ହୋତାଙ୍କ ଭଳି ଆଦର୍ଶବାଦୀ ମଣିଷ ଥିଲେ ଦିଗ୍‌ଦର୍ଶନ ଦେବାକୁ । ସ୍ୱାଭିମାନର ପ୍ରତୀକ ନୀଳକଣ୍ଠ ଥିଲେ । ଏମାନେ ମଣିଷ ତିଆରି କରୁଥିଲେ ତ । ବାହିନୀପତିଙ୍କୁ ସହଜ ଲାଗୁଥିଲା ସବୁ । ମୁଣ୍ଡ ଉପରେ ସେମାନଙ୍କ ହାତ ଥିଲା । ସ୍ୱାଧୀନତାର ପ୍ରଥମ ଦୁଇତିନି ଦଶନ୍ଧି ପର୍ଯ୍ୟନ୍ତ- ଗଣତନ୍ତ୍ର ଦିବସ କି ସ୍ୱାଧୀନତା ଦିବସ ଆସିଲେ ମଧୁପୁରବାସୀଙ୍କ ଗୋଡ଼ ତଳେ ଲାଗୁନଥିଲା - କି ଅପୂର୍ବ ଉତ୍ସାହ ! ପିଲାଠାରୁ ବୁଢ଼ା ପର୍ଯ୍ୟନ୍ତ ସବୁରି ମନରେ ପ୍ରତିଟି ମଣିଷ ଭିତରେ ଜାତୀୟ ଚେତନାକୁ ଉଜ୍ଜୀବିତ ରଖିବାର ଅଭିପ୍ରାୟରେ ସଂସ୍କୃତି ସୁରକ୍ଷା ମଞ୍ଚ ସକାଳୁ ରାତି ପର୍ଯ୍ୟନ୍ତ ବିଭିନ୍ନ ପ୍ରକାର ପ୍ରତିଯୋଗିତା, ଆଲୋଚନା ଚକ୍ର, ଏମିତିକି ସଫେଇ କାର୍ଯ୍ୟକ୍ରମଠୁ ଆରମ୍ଭ କରି ଅରଟରେ ସୂତାକଟା ପର୍ଯ୍ୟନ୍ତ ବହୁ କାର୍ଯ୍ୟକ୍ରମକୁ ହାତକୁ ନେଉଥିଲା । ଜ୍ଞାନୀ, ଗୁଣୀ, ସ୍ୱାଧୀନତା ସଂଗ୍ରାମୀଙ୍କୁ ଆମନ୍ତ୍ରଣ କରି ସେମାନଙ୍କଠୁ ସେମାନଙ୍କ ଅଭିଜ୍ଞତା, ଦୃଷ୍ଟିକୋଣ ମାଧ୍ୟମରେ ପୁରାତନ କୁସଂସ୍କାର ଓ ରକ୍ଷଣଶୀଳତାକୁ ମାର୍ଜିତ ବି କରାଯାଉଥିଲା । ବିଶେଷ

କରି ଆମ ରକ୍ଷଣଶୀଳ ପରିବାରରେ ନାରୀକୁ ବାହାରର ଆଲୁଅ ଏବଂ ଚେତନା ସହିତ ପରିଚିତ କରେଇବାର ଉପଯୁକ୍ତ ସୁଯୋଗ ସୃଷ୍ଟି କରିବାରେ ସାହାଯ୍ୟ କରୁଥିଲା ଏଇ ମଞ୍ଚ ତା' ସାଧ ମତେ ।

ସବୁକିଛି ଏଇ ଆଦର୍ଶ ସ୍ଥାନୀୟ ମଣିଷମାନଙ୍କ ଦିଗ୍‌ଦର୍ଶନ ଏବଂ ପରାମର୍ଶରେ କାର୍ଯ୍ୟକାରୀ କରୁଥିଲେ ବାହିନୀପତିଏ ତାଙ୍କର ଦକ୍ଷ ଯୁବସେନାଙ୍କୁ ନେଇଁ । କେବଳ ସେତିକି ନୁହେଁ, ବିଭିନ୍ନ ପୂଜାପର୍ବ, ଓଷାବ୍ରତ, ଜନ୍ମାଷ୍ଟମୀ, ରାମନବମୀ ଇତ୍ୟାଦି ଆମ ସଂସ୍କୃତିର ଗୋଟାଏ ଗୋଟାଏ ଅଙ୍ଗ କହିଲେ ଅତ୍ୟୁକ୍ତି ହେବ ନାହିଁ । ଅତଏବ ଏସବୁ ପାଳନ କରିବା ପଛରେ କିଛି ନା କିଛି ଉଦ୍ଦେଶ୍ୟ ଥାଏ, ଶିକ୍ଷା ଥାଏ, ଯାହା ସାଧାରଣ ମଣିଷର ନୈତିକ ମୂଲ୍ୟବୋଧକୁ ଜାଗ୍ରତ କରେ, ମାର୍ଜିତ କରେ, ବିକଶିତ କରେ । ସେମାନେ କହୁଥିଲେ, ଏଇସବୁ ଉତ୍ସବ, ଜୀବନକୁ ଉତ୍ସବମୁଖର କେବଳ କରାଏନି, ଜାତୀୟ ଚେତନାକୁ ଉଜ୍ଜୀବିତ ମଧ୍ୟ କରେ । ଭାଇଚାରା ବଢ଼ାଏ । ମଣିଷକୁ ମଣିଷ ସହିତ ବାନ୍ଧି ରଖେ । ଗ୍ରାମ ସଂସ୍କୃତି ମାର୍ଜିତ ହୁଏ । ବାହିନୀପତିଏ, ଏସବୁ ପର୍ବପର୍ବାଣି ଓ ଉପାସନାକୁ ସାମୂହିକ ଭାବେ ପାଳନ କରି, ତା' ଭିତରେ ଲୁଚି ରହିଥିବା ମୂଳ ଉଦ୍ଦେଶ୍ୟକୁ ଲୋକଙ୍କ ଭିତରେ ବାଣ୍ଟୁଥିଲେ ବର୍ଷ ବର୍ଷ ଧରି ।

ଅତଏବ 'ମଧୁପୁର ସଂସ୍କୃତି ସୁରକ୍ଷା ମଞ୍ଚ' ଆଖପାଖ ଅଞ୍ଚଳରେ ନିଜର ସ୍ୱତନ୍ତ୍ର ମର୍ଯ୍ୟାଦା ଓ ଆସନ ତିଆରି କରି ଆସିଛି ଏବଂ ଅନ୍ୟାନ୍ୟ ମଞ୍ଚ, କ୍ଲବ୍, ଅନୁଷ୍ଠାନକୁ ସମୟକ୍ରମେ ପ୍ରେରଣା ଦେଇ ଆସିଛି । ଏସବୁ ସୁରଥ ବାହିନୀପତିଙ୍କ ଜାତୀୟବାଦୀ ମନୋବୃତ୍ତି ଏବଂ ସମୟୋଚିତ ଦୂରଦୃଷ୍ଟି ହେତୁ । ଏମିତିରେ ବି କଟିଲାଣି ଆହୁରି ଦଶବର୍ଷ । ହେଲେ ସମୟ ବଦଳିଲା । ସ୍ୱାଧୀନତାର କିଶୋରପଣ ଛାଡ଼ିଛାଡ଼ି ଆସିଲା । ଚପଳତା ଗଲା । ଯୁବସୁଲଭ ଗଠନମୂଳକ ଚିନ୍ତା ବି ବେଶୀଦିନ ତିଷ୍ଠିଲାନି । ରାଜନୀତିକ ପଟ୍ଟ ପରିବର୍ତ୍ତନ, ସାମାଜିକ ଜୀବନକୁ ପ୍ରଭାବିତ କଲା । ଆରମ୍ଭ ହେଲା ବିଜ୍ଞାନର ଜୟଯାତ୍ରା । ମଣିଷର ଆଦର୍ଶ ବଦଳିଲା । ଗାନ୍ଧିଜୀଙ୍କ ସ୍ୱପ୍ନ ଅଧା ରାସ୍ତାରେ ଠିଆ ହୋଇ ଚାହିଁଲା ବିସ୍ମୟ ଦୃଷ୍ଟିରେ ! ମୂଲ୍ୟବୋଧରେ ପରିବର୍ତ୍ତନ ଆସିଲା । ପାଶ୍ଚାତ୍ୟ ଶିକ୍ଷାର ପ୍ରଭାବରୁ ଆମେ ନିଜକୁ ଦୂରେଇ ରଖିପାରିଲୁନି । ଈଶ୍ୱର ବିଶ୍ୱାସ ବିବାଦୀୟ ପ୍ରଶ୍ନବାଚୀ ହୋଇ ଠିଆହେବା ଫଳରେ ଚିରନ୍ତନ ଭାରତୀୟ ଆତ୍ମା ସଙ୍କଟର ସମ୍ମୁଖୀନ ହେଲା ଏବଂ ହେଉଛି, କହିଲେ ଭୁଲ ହେବନି । ଏଣୁ କାହା ପ୍ରତି ଭୟ ରହୁନି ।

ଏକୁଟିଆବେଳେ ପାଠାଗାର ଭିତରେ ବସି ବାହିନୀପତିଏ ଭାବନ୍ତି । କେତେଶୀଘ୍ର ସବୁ ବଦଳିଯାଉଛି ଆଜିକାଲି । ଆଗରୁ, ସେ ଯଦି କୌଣସି କାମ କି ପଦେ କଥା କହି ଦେଉଥିଲେ- ମୁହୂର୍ତ୍ତେ ଲାଗୁନଥିଲା, ତାକୁ କାର୍ଯ୍ୟକାରୀ କରିବାକୁ । ହେଲେ ଆଜିକାଲି

ଅନେକ ପ୍ରଶ୍ନ, ଅନେକ ବିଚାର, ଅନେକ ମତ ଠିଆ ହେଉଛି ସାମ୍ନାରେ । ନିମନ୍ତ୍ରିତ ଅତିଥି କିଏ ଆସିବେ, ତାକୁ ନେଇ ବି ବାକ୍‌ବିତଣ୍ଡା । ଯୁବଗୋଷ୍ଠୀଙ୍କ ଦୃଷ୍ଟିକୋଣରେ ପରିବର୍ତ୍ତନ ଆସିଛି- ବାହିନୀପତିଏ ଭାବନ୍ତି, ଏଇ ପରିବର୍ତ୍ତନ ଅବଶ୍ୟମ୍ଭାବୀ, ଯାକୁ ରୋକି ହେବନି ! ତେବେ ସ୍ଫୂର୍ତ୍ତୀ, ଫାଜିଲାମି, ଅପସଂସ୍କୃତିକୁ ସେ ସମର୍ଥନ ଦେଇ ପାରିବେନି । ଏଇ ଦି'ଦିନ ତଳେ ପ୍ରଶାନ୍ତ ଆଉ ମହେଶ ତାଙ୍କ ସହିତ ଯୁକ୍ତି କଲେ, ଏଥର ପାର୍ବଣବେଳେ ଅନ୍ତତଃ ଚାରିଦିନ ମଧ୍ୟରୁ ଦିନେ ନିଶ୍ଚୟ ବାହାରୁ ମେଲୋଡ଼ି ପାର୍ଟି ଆସିବ । ଏବଂ ଉଦ୍‌ଘାଟନ ଉତ୍ସବକୁ ଜଣେ ରାଜନେତାଙ୍କୁ ନିମନ୍ତ୍ରିତ କରାଯିବ । ଉଦ୍ଦେଶ୍ୟ ମଧ୍ୟ ସେମାନଙ୍କର ସ୍ପଷ୍ଟ ଥିଲା – କିଛି ଆର୍ଥିକ ସାହାଯ୍ୟ- ଯାହା ଫଳରେ ଅନୁଷ୍ଠାନର ଆଉ କିଛି ବିକାଶ ହେଇ ପାରିବ । ଆଜିକାଲି ତ ସବୁଠି ଚାଲିଛି ଏଇୟା । ଆମେ ହିଁ ଧରିବସିଛେ ପରମ୍ପରାକୁ । ସେ ଶୁଣିଥିଲେ ପିଲାଙ୍କ କଥା ମନ ଦେଇ, ବୁଝି ପାରିଲେ, ଅର୍ଥର ଲୋଭ, ତଥାକଥିତ ଚାନ୍ଦା ଏଇ ପିଢ଼ିକୁ ଘାରିଲାଣି । ଇୟେ ମୋଟେ ଶୁଭ ସୂଚନା ନୁହେଁ । ହାତକୁ ପଇସା ଆସିଲେ, ନାନା ପ୍ରକାର ବ୍ୟଭିଚାର ବାଟ ଉଣ୍ଡି ପଶିଆସିବ । ଏଇ 'ପଇସା'କୁ ନେଇଁ ସୃଷ୍ଟି ହୁଏ ଅନର୍ଥ, ମନ ଫଟାଫଟି । ଦୋଷାରୋପ, ବାଦ-ବିବାଦ, ଅସହଣିପଣ । ଛୋଟ ସାଧାରଣ କଥାଟିକୁ ବି ସହଜ ଭାବରେ ଗ୍ରହଣ କରିବା ସମ୍ଭବ ହେଉନି ଏବେ । ଯେତେ ମନ ସେତେ ବିଚାର । ସ୍ୱାଭିମାନ, ଆତ୍ମ-ମର୍ଯ୍ୟାଦା, ଗରିମାର ପରିଭାଷା ବଦଳିଯାଉଛି ଏଣିକି । ସମୂହ ଚେତନା ସ୍ଥାନରେ ବ୍ୟକ୍ତି ସ୍ୱାତନ୍ତ୍ର୍ୟ ମୁଣ୍ଡ ଟେକୁଛି ।

ଯୁବମାନସିକତାର ଏଇ ପରିବର୍ତ୍ତନଶୀଳତାର ଅନ୍ତରାଳରେ କୋଉଠି ଯିମିତି ଅହଂଭାବ ଆଉ ସ୍ୱାର୍ଥର ଛିଟା ଲୁଚି ରହିଛି ଦିଶି ନଦିଶି ହେଇ- ତାଙ୍କର ମନେ ହେଉଥିଲା ଏବଂ ଏଇୟାବି ମନେ ହେଉଥିଲା ଯେ, ଏଣିକି ସେମାନେ ଏଇ ଅନୁଷ୍ଠାନର ଦାୟିତ୍ୱ ନିଜ ହାତକୁ ନେବାକୁ ଚାହୁଁଛନ୍ତି । ନେବା ଉଚିତ ମଧ୍ୟ । କେତେଦିନ ଆଉ ସେ ସମ୍ଭାଳିବେ ? ଏଣିକି ସେମାନେ ଦେଶର, ଜାତିର, ପରମ୍ପରାର ମର୍ଯ୍ୟାଦାକୁ ବୁଝିଶୁଝି, ତାକୁ ଆଗକୁ ବଢ଼ାଇବା ଉଚିତ୍ । ଯୋଉ ମାର୍ଗକୁ ସେ ଅନୁସରଣ କରି, ମହତ୍‌ଜନମାନଙ୍କ ଗୌରବ ବଢ଼େଇ ଆସିଥିଲେ, ସଂସ୍କୃତିକୁ ବଞ୍ଚେଇ ରଖିବାର ଶପଥ ନେଇଥିଲେ, ସେଇଭଳି ପିଲାଏ ଯଦି ତାର ଉତ୍ତରୋତ୍ତର ଉନ୍ନତି କରିବେ ତାଙ୍କଠୁ ବଳି ଆଉ କିଏ ଅଧିକ ଖୁସି ହେବ ?

ହେଲେ.... ବାହିନୀପତିଙ୍କ ଭାବନା ଭିତରକୁ କିମିତି ସନ୍ଦେହର କଳା ଛାଇଟିଏ ପଶି ଆସୁଥିଲା, କାରଣ କୌଣସି ଏକ ନିଷ୍ପତ୍ତି ବହୁ ମତରେ ଗୃହୀତ ହେବା ସମ୍ଭବ ହେଉନଥିଲା । ପ୍ରତ୍ୟେକ ନିଜନିଜ ମତକୁ ବିଚାରକୁ ଯଥାର୍ଥ ବୋଲି ପ୍ରତିପାଦନ କରିବାକୁ ପ୍ରୟାସ କରୁଛନ୍ତି । କିଛି ଅସନ୍ତୋଷର କୁହୁଡ଼ି ଧୂଆଁକୁ ବି ତାଙ୍କର ବିଚକ୍ଷଣ ଆଖି କେତେବେଳେ କିମିତି ଲକ୍ଷ୍ୟ କରିଛି । ସେଇଥିପାଇଁ ଦାୟିତ୍ୱ ପରିବର୍ତ୍ତନର ବିଚାର ତାଙ୍କ ଭିତରେ ସୃଷ୍ଟି ହେଇଛି ।

ଏହା ସତ୍ତ୍ୱେ ତାଙ୍କୁ ଆଶ୍ୱସ୍ତ ଲାଗୁଥିଲା ଯେ, ବିଗତ ଦଶନ୍ଧିମାନଙ୍କରେ ଆମ ପାରମ୍ପରିକ ରୁଢ଼ିରଖା ରକ୍ଷଣଶୀଳ ନାରୀ ମାନସିକତାରେ ଯଥେଷ୍ଟ ପରିବର୍ତ୍ତନ ଆସିଛି । ଗତ ସପ୍ତାହରେ, ଶ୍ରଦ୍ଧା, ସାୟନ୍ତନୀ, ସୁଧାରା, କନକ ଓ ନବନୀତା ସହିତ ସାଂପ୍ରତିକ ପ୍ରସଙ୍ଗ ଉପରେ ଏମିତି ଆଲୋଚନା କଲାବେଳେ, ସେମାନଙ୍କ ବିଚାର ଓ ଦୃଷ୍ଟିକୋଣର ଅଭିନବ ଦିଗନ୍ତକୁ ସେ ଆବିଷ୍କାର କରି ତାଜୁବ ହୋଇ ଯାଇଥିଲେ । କେତେ ଆଗକୁ ସେମାନଙ୍କ ଭାବନା ଲମ୍ବି ଯାଇଛି । ସେମାନଙ୍କ ଚିନ୍ତା ଓ ଚେତନା ଭିତରେ ସମଗ୍ର ନାରୀ ଜାତିର ଅନୁଭବ ଫୁଟି ଉଠୁଛି । ନିଜ ସ୍ଥିତି, ଅଧିକାର ଏବଂ ଆତ୍ମ-ମର୍ଯ୍ୟାଦା ସମ୍ପର୍କରେ ସେମାନେ ସଚେତନ ହେଲେଣି ।

ମହାଭାରତ, ରାମାୟଣ ଅଥବା ଭାଗବତର ସିଧାସଳଖ କାହାଣୀରେ ସେମାନେ ଆଉ ସନ୍ତୁଷ୍ଟ ନୁହଁନ୍ତି । ଚରିତ୍ର, ଘଟଣା ଆଉ ବିଷୟବସ୍ତୁର ଚମତ୍କାର ବିଶ୍ଳେଷଣ କରୁକରୁ ସାୟନ୍ତନୀ କହିଲା, ବୁଝିଲ ଦଦେଇ କାହାଣୀ ନୁହେଁ, ଏଣିକି ଚାହାଣିର ଆବଶ୍ୟକତା ଅଛି- ଜୀବନକୁ, ତା' ସହିତ ଜଗତକୁ ଦେଖିବାର ଦୃଷ୍ଟି ଏଣିକି ବଦଳେଇବାକୁ ହେବ । ଏବେ ଚିନ୍ତାକୁ ପୁଷ୍ଟଳ କରିବାର ବେଳ ଆସିଛି । ଯାହା ଯିମିତି ଥିଲା, ତାକୁ ସେଇଭଳି, ସେଇ ପ୍ରକାରେ ଶୁଆପାଠ ଭଳି ଘୋଷି ଉପସ୍ଥାପିତ କରିବା ଦ୍ୱାରା, ଆମ ଚିନ୍ତା ଚେତନାରେ କୌଣସି ପରିବର୍ତ୍ତନ ଆସିବନି କି ସମାଜ ଜୀବନରେ ହେଉ କି ବ୍ୟକ୍ତିଗତ ଜୀବନରେ ହେଉ ତା'ର ପ୍ରଭାବ ଅନୁଭୂତ ହେବ ନାହିଁ । ତା' ଭିତରେ ଥିବା ଅନ୍ତର୍ନିହିତ ଉଦ୍ଦେଶ୍ୟକୁ ଖୋଜି ବାହାର ନକଲେ, ଆମେ ତାକୁ ଜୀବନର ଆଚରଣ ଏବଂ ଉଚ୍ଚାରଣରେ ପ୍ରୟୋଗ କରିବା କିମିତି କହୁନ ?

ସାୟନ୍ତନୀ ସେଦିନ ବହୁ ଉଦାହରଣ ଦେଇ ବୁଝେଇଥିଲା । ସେ ଖୁବ୍ ପ୍ରଭାବିତ ହେଇଯାଇଥିଲେ ତା' ବିଚାରରେ । ସତକଥା, ଭାଗବତ ତ ଆମେ ନିତି ଅଧ୍ୟାୟେ ଲେଖା ପଢୁଛୁ- ଉଦ୍ଦେଶ୍ୟ ଗୋଟିଏ ବିନ୍ଦୁରେ ହିଁ ସ୍ଥିର ହେଇ ରହିଯାଉଛି । ଜୀବନର ଗତିମୁକ୍ତି ଆଉ କିଛି ପୁଣ୍ୟଫଳ ଠି । ଅନ୍ଧଭାବରେ ଭାଗବତ ଗୋସେଇଁ ପଢ଼ିଯିବେ, ଆଉ ଆମେ ଶୁଣିଯିବା । ଅଥବା ସାଂସାରିକ ସୁଖଦୁଃଖର କଥା ଭିତରେ ମନପ୍ରାଣ ବୁଡ଼ି ଯାଇଥିବା ବେଳେ ଭାଗବତରୁ ପଦେଅଧେ କାନରେ ବାଜୁଥିଲେ ହେଲା । ଏଇ ବିଶ୍ୱାସ ଏଇ ଧର୍ମଧାରଣା ହିଁ ଏଯାଏ ଆମ ଜୀବନକୁ ଧରି ରଖିଛି । ଆଉ ଭିତରକୁ ପଶିବାର ଇଚ୍ଛା କି ପ୍ରୟାସ ନାହିଁ । ସତ କଥା । ସେ ଏକମତ ହେଇଥିଲେ ସାୟନ୍ତନୀ ସହିତ । ସେଇଥିପାଇଁ ତ ଆମର ଏତେ ବିଶାଳ ସଂସ୍କୃତି ଏବଂ ଉଦାର ମାନବବାଦୀ ବିଚାରଧାରା ଥାଇ ବି ଆମେ ନିଜକୁ କୁସଂସ୍କାର ମୁକ୍ତ କରିପାରିନୁ । ରକ୍ଷଣଶୀଳତାର ଗର୍ଭକୁ ଯାଇପାରିନୁ ଅଥବା ଏକାବେଳକେ ଚାରି ଦଉଡ଼ି କାଟି କକ୍ଷଚ୍ୟୁତ ହେଇଯାଉଛୁ ଆଧୁନିକତାର ଦ୍ୱାହି ଦେଇ । ଉଚିତ କାର୍ଯ୍ୟରେ ଲଗେଇ ପାରିନୁ ଏଯାଏ ନିଜକୁ, ନିଜ ବିଚାରକୁ ।

ଅବଶ୍ୟ ଏଇ ବିଚାରକୁ ବା ଆତ୍ମସମୀକ୍ଷାକୁ ଗ୍ରହଣ କରିବାପାଇଁ ଗୋଟାଏ ବଡ଼ ଉଦାର ମୁକ୍ତଚିନ୍ତାର ମନ ଅପରିହାର୍ଯ୍ୟ, କହିଥିଲା ସୁଧାରା । ନହେଲେ ସମାଲୋଚନା ଅର୍ଥରେ ଗ୍ରହଣ କଲେ, କଥା ଅବାଟକୁ ମାଡ଼ିଯିବ । ଯା'ବି ସତ ଯେ, ସମସ୍ତେ ସବୁକଥା ତ ବୁଝନ୍ତିନି, ସେ ସୁଯୋଗ ବି ନାହିଁ ଆମ ସାଧାରଣ ନାଗରିକଙ୍କର । ଆମେ ବି ସେମାନଙ୍କୁ ସେଇ ପ୍ରକାରେ ମଡ଼େଇନୁ । ଜୀବନର ଧାରା ଗୋଟାଏ ପ୍ରକାରେ ଗଡ଼ିଚାଲିଛି ଅଭ୍ୟାସବଶତଃ ।

ଆମେ ଖୁଦୁରୁକୁଣୀ କରୁଚୁ, ସାବିତ୍ରୀ ବ୍ରତ କରୁଚୁ, ମହାପୁରୁଷମାନଙ୍କ ଜନ୍ମୋତ୍ସବ ପାଳନ କରୁଚୁ- ଦୁର୍ଗାଙ୍କ ଆବାହନ କରୁଚୁ । ସମସ୍ତେ ଜାଣନ୍ତି ଆମର ଗୋଟାଏ ଉନ୍ନତ ସାଂସ୍କୃତିକ ପରମ୍ପରା ଅଛି, କିନ୍ତୁ ଆମେ ଯେଉଁଭଳି ଢଙ୍ଗରେ ପାଳନ କରୁଚୁ, ତାହା ତା'ର ଯଥାର୍ଥତାକୁ ପ୍ରତିପାଦନ ନକରି, ଉତ୍ସବଟି ଫୂର୍ତ୍ତି, ମଉଜ ମଜଲିସ୍‌ରେ ପରିଣତ ହେଇଯାଉଛି । ବାଦବିବାଦ, ହିଂସା ଏବଂ ତା'ପରକୁ ମାରପିଟ୍, ଗୁଳିଗୋଳା, ଏମିତିକି ଜୀବନ ବି ବିପନ୍ନ ହେଇପଡୁଛି । ନା ଆମ ଭିତରେ ଭାବକୁ ବାନ୍ଧି ରଖୁଛି, ନା ସହନଶୀଳତା ଶିଖଉଛି । ଯୋଉ ମହାପୁରୁଷଙ୍କ ଜନ୍ମଦିନ କି ପୁଣ୍ୟତିଥି ପାଳନ କରାଯାଉଛି, ତା'ର ଜୀବନାଦର୍ଶ ଆମ ଉପରେ କିଛି ପ୍ରଭାବ ପକଉନି- ଦୁର୍ଗାଙ୍କୁ କେଡ଼େ ଜାକଯମକରେ ଡାକୁଚୁ, ଅଥଚ ନାରୀର ମର୍ଯ୍ୟାଦା, ସମ୍ମାନ ପ୍ରତି ଆମର ସବୁଠୁ ବେଶୀ ଅବହେଳା, ତା'ର ସୁରକ୍ଷା ପ୍ରତି ଦୃଷ୍ଟି ନାହିଁ । ଭାଇଭଉଣୀର ବନ୍ଧନ କେତେ ପବିତ୍ର, ସେଥିପାଇଁ ଆମ ପରମ୍ପରାରେ କେତେ ପ୍ରକାର ଗର୍ବ, ଅଥଚ ପାରିବାରିକ ହେଉ କିମ୍ବା ସାମାଜିକ କି ଜାତୀୟ ଜୀବନ ହେଉ, କେବେ ପ୍ରଶ୍ନ କରିଚୁ ଆମେ ନିଜକୁ, କେତେ ନିଷ୍ଠା ଅଛି ସେଥିରେ ? ସାୟନ୍ତନୀ ଅନେକ ଯୁକ୍ତି ବାଢ଼ିଥିଲା ଦଦେଇ ସୁରଥ ବାହିନୀପତିଙ୍କ ଆଗରେ ଆଲୋଚନା ପ୍ରସଙ୍ଗରେ । ସେଦିନ କିଛି ବୟସ୍କ ମଣିଷ ବି ଥିଲେ । ଝିଅ ଝିଆରୀଙ୍କ ଜ୍ଞାନ ଆଗରେ ତଟସ୍ଥ ହେଇଯାଇଥିଲା ସେମାନଙ୍କ ବୟସ୍କ ଚେତନା । ପିଲାଏ କେତେ କଥା ଚିନ୍ତା କରି ପାରିଲେଣି ! ! କନ୍ୟାରତ୍ନ ପରା ସେମାନେ ।

ସୁରଥ ବାହିନୀପତିଏ ଘରକୁ ଫେରି ଏ ସମ୍ପର୍କରେ ଗଭୀର ଭାବେ ଚିନ୍ତା କଲେ । ନା ପ୍ରଶାନ୍ତ, ମହେଶମାନଙ୍କ ଉପରେ ତାଙ୍କର ବିଶ୍ୱାସ ଆସୁନି । ସେମାନଙ୍କ ବିଚାରର ଯୁଗଧର୍ମକୁ ସେ ଗ୍ରହଣ କରିପାରିବେନି । ସେମାନେ ଜୀବନକୁ ମହୋତ୍ସବମୟ କରି ଦେଖୁଛନ୍ତି- ଉଜିକି ଯିବ ସେମାନଙ୍କ ଚେତନା କିଛି ଅସମ୍ଭବ ନୁହଁ । ଏଇ ସାୟନ୍ତନୀକୁ ହିଁ ସେ ଦାୟିତ୍ୱ ଦେବେ । ତା' ହାତରେ ଏଇ ପୁରୁଖା ମଞ୍ଚ ଏବଂ ସଂସ୍କୃତି ନିଶ୍ଚିତ ଭାବେ ସୁରକ୍ଷିତ ରହିବ । ତା'ର ଧୈର୍ଯ୍ୟ ଅଛି, ସାହସ ବି ଅଛି । ବୁଦ୍ଧିମତୀ ମଧ୍ୟ । ଆପଣାର ସହଜାତ ଗୁଣରେ ନାରୀ ଯେତେବେଳେ ପରିବାର ଭିତରେ ବିଭିନ୍ନ ପ୍ରକୃତିର ମଣିଷକୁ ଏକାଠି ବାନ୍ଧି ରଖି ପାରୁଛି, ତା'ପାଇଁ ଏଇ ଅନୁଷ୍ଠାନକୁ ଚଳେଇବା କିଛି କଷ୍ଟସାଧ ନୁହେଁ ।

ଆଉ ଦ୍ୱିତୀୟ ଭାବନା ସେ କରିନଥିଲେ । ତା'ପର ବୈଠକରେ ହିଁ ହଠାତ୍ ସାୟନ୍ତନୀର ନାମ ଘୋଷଣା କରି, ସେ ସମସ୍ତଙ୍କୁ ଚମକେଇ ଦେଇଥିଲେ । ସେହିଦିନରୁ

ମଧୁପୁର ସଂସ୍କୃତି ସୁରକ୍ଷା ମଞ୍ଚର ଇତିହାସରେ ନୂଆ ପରମ୍ପରା ସୃଷ୍ଟି ହେଲା । ସାୟନ୍ତନୀର ଏଥିରେ ଅସୁବିଧା କିଛି ନଥିଲା ସତ, ହେଲେ ଏତେଦିନ ଧରି ଚଳେଇ ଆସିଥିବା ପୁଅପିଲାଙ୍କ ହାତରୁ ଖସିଆସିବାରୁ ସେମାନଙ୍କ ଅଂହପଣ ଟିକିଏ ଆଘାତ୍ରି ହେଇ ଯାଇଥିଲା । ତେବେ ସୁରଥ ବାହାନୀପତିଙ୍କ ବିଚକ୍ଷଣ ବୃଦ୍ଧି ସେମାନଙ୍କ ରଗରଗିଆ ପଣରେ ଚମତ୍କାର ଭାବେ ମଲମ ଲଗେଇ ଦେଇଥିଲେ- ସାୟନ୍ତନୀର ସଫଳତା କାମନା କରି ।

× × × × ×

ଆଗକୁ ବୈଶାଖ ଶୁକ୍ଳ ନବମୀ ତିଥି- ସୀତାଙ୍କର ପବିତ୍ର ଜନ୍ମୋତ୍ସବ । ସୀତାନବମୀ । ଆନୁଷ୍ଠାନିକ ଭାବେ ସାୟନ୍ତନୀର କାର୍ଯ୍ୟଭାର ଗ୍ରହଣ କରିବା ଦିନୁ ଏଭଳି ବିଶିଷ୍ଟ ଦିନଟିଏ ପଡ଼ିନଥିଲା । ସାୟନ୍ତନୀ ଭାବିଲା, ଏଇଟା ତା'ପାଇଁ ଅପୂର୍ବ ସୁଯୋଗ । ସେ 'ସୀତାନବମୀ' ପାଳନ କରିବା ପାଇଁ ପ୍ରସ୍ତାବ ଦେବ । ଯଦିଓ ଆଗରୁ ଏଇ ସାଂସ୍କୃତିକ ମଞ୍ଚ କେବେ ସୀତା ଜନ୍ମୋତ୍ସବ ପାଳନ କରିନାହିଁ । ସେ କିନ୍ତୁ କରିବାକୁ ଚାହେଁ । କାହାର ବି ଏଥିରେ ଆପତ୍ତି ନଥିଲା । ତେବେ ସାୟନ୍ତନୀର ଉଦ୍ଦେଶ୍ୟ କିନ୍ତୁ ଭିନ୍ନ ଥିଲା । ପରମ୍ପରାରେ କିଛିଟା ପରିବର୍ତ୍ତନ ଆଣିବାକୁ ଯାଇ, ସେ କହିଲା- ଆମେ ଏଇ ଜନ୍ମୋତ୍ସବକୁ ଧର୍ମ ଧାରଣା ଭିତରେ କେବଳ ପୂଜାର୍ଚ୍ଚନା, ଭୋଜିଭାତରେ ସୀମିତ ନ ରଖି ରାମାୟଣ କାବ୍ୟର ଆଲୋଚନା କରିବା । ଯଦିଓ ଆମମାନଙ୍କ ଭିତରେ ରାମାୟଣ କଥାବସ୍ତୁ ଏବଂ ରାମସୀତାଙ୍କ ଆଦର୍ଶ ଜୀବନ ଚରିତ ସମ୍ପର୍କରେ ମୋଟାମୋଟି ଧାରଣାଟିଏ ଲେଖିହେଇ ରହିଛି, ତଥାପି ଅନେକ କଥା ଆମର ଜ୍ଞାତସାର ଭିତରେ ନାହିଁ । ଯେହେତୁ ରାମାୟଣର ଉତ୍ତରାକାଣ୍ଡକୁ ଘରେ ସାଧାରଣତଃ ପଢ଼ାଯାଏନା, ପଢ଼ାଯିବାର ପରମ୍ପରା ବି ନାହିଁ, ତେଣୁ ସତୀ ସୀତାଙ୍କର ଉତ୍ତର ଜୀବନ, ବନବାସ, ପାତାଳ ପ୍ରବେଶର କାରଣ ସମ୍ପର୍କରେ ଆମର ସଠିକ୍ ଧାରଣା ହିଁ ନାହିଁ । ଆସନ୍ନପ୍ରସବା ସୀତାଙ୍କୁ ଶ୍ୱାପଦସଙ୍କୁଳ ଅରଣ୍ୟରେ ଏକା ଅସହାୟ ଭାବେ ଛାଡ଼ିଦେବା ଭଳି ନିଷ୍ଠୁର ମାନସିକତା ଓ ଅବିଚାରପଣ ମର୍ଯ୍ୟାଦାବନ୍ତ ପୁରୁଷୋତ୍ତମ ରାମଙ୍କ କ୍ଷେତ୍ରରେ ସମ୍ଭବ ହେଲା କିମିତି ? ଏଇ ନିର୍ବାସନ ଅଥବା ସୀତାଙ୍କୁ ତ୍ୟାଗ ପଛରେ କ'ଣ କିଛି ରାଜନୈତିକ ଉଦ୍ଦେଶ୍ୟ ଥିଲା, ନା ଆଉ କିଛି ? ସାଧାରଣ ଗୋଟିଏ ମିଥ୍ୟାପବାଦ, ରାମଙ୍କ ପାଇଁ ଏତେବଡ଼ ହେଇ ଦେଖାଦେଲା ଯେ, ପତିଗତପ୍ରାଣା ସୀତାଙ୍କର ସମଗ୍ର ଜୀବନ ତପସ୍ୟା ତୁଚ୍ଛ ପାଲିଟିଗଲା ? ପରବର୍ତ୍ତୀ ଜୀବନରେ ସେ ସୀତାଙ୍କର ଅଥବା ତାଙ୍କର ଉତ୍ତରାଧିକାରୀଙ୍କର ଖୋଜ ବି ନେଲେନି ? ସୀତା ମଧ ବାଲ୍ମିକୀ ଆଶ୍ରମରେ ଥାଇ ଲବକୁଶଙ୍କ ନିକଟରେ ପିତାଙ୍କ ପରିଚୟ ଗୋପନ ରଖିଲେ । ଏସବୁ ଗଭୀର ଭାବେ ଚିନ୍ତାକଲେ କିମିତି ଅବାସ୍ତବ, ଅତିରଞ୍ଜିତ ଭଳି ମନେହୁଏ- ଅଥଚ ଆମର ଆଖ୍ୟାୟିକା ରାମାୟଣ, ମହାଭାରତ ଭଳି ଅନ୍ୟାନ୍ୟ ପୁରାଣ

ସାହିତ୍ୟଗୁଡ଼ିକରେ ଜୀବନ ଓ ଜଗତର ସମସ୍ୟା ବିଜଡ଼ିତ ବହୁବିଧ ଚିତ୍ର ଉପସ୍ଥାପିତ ହୋଇଛି, ଯଦିଓ ଏସବୁରେ ଧର୍ମୀୟଚେତନା ମୁଖ୍ୟ ହେଲେ ସାମାଜିକ ଚେତନା ବି କମ୍ ନାହିଁ । କିଛି ରାମାୟଣର ଚରିତ୍ରମାନଙ୍କ ଭିତରେ ମାନବୀୟ ଗୁଣାବଳୀ ଭରି ରହିଛି । ସମସ୍ତେ ମାନବ । ସତୀଙ୍କୁ ବାଲ୍ମିକୀ ଦେବୀ ରୂପେ ଗଢ଼ି ନାହାନ୍ତି । ମାନବୀୟ ଭାବ ଭାବନା, ଆବେଗ, ଅନୁଭବ, ତ୍ୟାଗ ଓ ସଂକଳ୍ପ ଭିତରେ ସେ ଜୀବନର ଅଗ୍ନି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ମାନବରୁ ଦେବୀ ହୋଇଛନ୍ତି, ସାଧାରଣରୁ ଅସାଧାରଣ ହୋଇଛନ୍ତି । ରାମାୟଣ ଅଖଣ୍ଡ ଦାମ୍ପତ୍ୟ ଜୀବନର ଉଦ୍‌ଘୋଷଣା କରୁଥିବା ବେଳେ, ସୀତାଙ୍କର ଉତ୍ତର ଜୀବନରେ ଏତେ ଅଘଟଣ ଘଟିଲା କାହିଁକି ? ନାରୀର ମର୍ଯ୍ୟାଦା ରକ୍ଷା କରିବାକୁ ଯାଇ ଯୋଉ ରାମ ମର୍ଯ୍ୟାଦାବନ୍ତ ପୁରୁଷୋତ୍ତମ ଭାବେ ପରିଚିତ ହେଲେ, ସେଇ ରାମ ରାଜ୍ୟରେ ଏତେ ଅଶାନ୍ତି, ବିଶୃଙ୍ଖଳା, ଦେଖା ଦେଲା କାହିଁକି ? ଯୋଉଥିପାଇଁ ସୀତା ଅଯୋଧ୍ୟାକୁ ଫେରିଲେନି ? ରାମଙ୍କ ପ୍ରତି ଅଭିମାନ ନା ଆଉକିଛି ? ଏଭଳି ଆହୁରି ଅନେକ ଘଟଣା ଅଛି, ଅନେକ ପ୍ରଶ୍ନ ରହିଛି ପାଠକଙ୍କ ଆଗରେ । ଉତ୍ତରାକାଣ୍ଡ ପଢ଼ିଲେ ଯେ କେହି କରୁଣ ରସରେ ଅବଗାହନ କରିବା ଅପେକ୍ଷା, ଜଣେ ନାରୀର ଆତ୍ମମର୍ଯ୍ୟାଦାର ପ୍ରଶ୍ନରେ ଚକିତ ହୋଇ ଉଠିବ, ଏଥିରେ ସନ୍ଦେହ ନାହିଁ । ସତେ ଯେମିତି ସେ ନୂଆ ସୀତାଙ୍କୁ ଦେଖୁଛି । ଯାହାଙ୍କ ଭିତରେ ସମଗ୍ର ନାରୀ ଜାତି ଆତ୍ମମର୍ଯ୍ୟାଦାର ପ୍ରଶ୍ନଟିଏ ନେଇ ଠିଆ ହୋଇଛି ।

ସେଇ ଦୃଷ୍ଟିରୁ ହିଁ ସେ ଚାହେଁ, ଏଇ ଜନ୍ମୋତ୍ସବ ପାଳନର ଅବସରରେ ରାମାୟଣର ଯଥାର୍ଥ ଭାବେ ମୂଲ୍ୟାୟନ କରିବା ପାଇଁ, ଅନ୍ତତଃପକ୍ଷେ ପ୍ରାଥମିକ ପ୍ରୟାସଟିଏ କରିବା ଉଚିତ୍ । ନିଜର ବିଚାର ଏବଂ ଦୃଷ୍ଟିକୋଣକୁ ସଂକ୍ଷିପ୍ତରେ ଉପସ୍ଥାପନ କରି, ବୈଠକର ଅନୁମୋଦନ ପାଇଁ ଅନୁରୋଧ କଲା ସାୟନ୍ତନୀ ।

ସାୟନ୍ତନୀର ବକ୍ତବ୍ୟ ତ ଶେଷ ହେଲା, ମହେଶ, ପ୍ରଶାନ୍ତ, ମନ୍ମଥ ଭଳି ଯୁବମାନସକୁ ଯେ କିଛିମାତ୍ରାରେ ଚହଲେଇ ଦେଇନଥିଲା, ତା ନୁହେଁ । ଅବଶ୍ୟ ସେମାନେ କିଛିଟା ଦ୍ୱିଧାରେ ପଡ଼ି ଯାଇଥିଲେ- ପରମ୍ପରା ବଦଳୁଛି ।

ହେଲେ ସୁରଥ ବାହିନୀପତି ସଂପୂର୍ଣ୍ଣ ଭାବେ ଭାବନା ଜଗତରେ ବୁଡ଼ି ଯାଇଥିଲେ । ତାଙ୍କ ଭାବନା ରାଜ୍ୟରେ ସତକୁ ସତ ଅନେକ ପ୍ରଶ୍ନବାଚୀ ମୁଣ୍ଡଟେକି ଉଠୁଥିଲା । ସତେ ତ .... ସେ କେବେ ଏଇ ବାଟରେ ଚିନ୍ତା ହିଁ କରିନାହାନ୍ତି, ଯାହାକୁ ସାୟନ୍ତନୀ ବିଜ୍ଞାନୋଚିତ ପଦ୍ଧତି ବୋଲି କହୁଛି । ବରଂ ଯେତେବେଳେ ସୁଯୋଗ ମିଳିଛି, ସୀତା ସାବିତ୍ରୀ, ଦମୟନ୍ତୀର ଦେଶରେ ଏଇ ଯଶସ୍ୱିନୀ ବିଶ୍ୱବନ୍ଦିତା ଲଳନାମାନଙ୍କର ଯଶୋଗାନ ଏବଂ ରାଜାରାମଙ୍କର କୀର୍ତ୍ତିଗାନରେ ଶତମୁଖ ହୋଇଉଠୁଛି । ଏକଥା ବି ସତ ଯେ, ବାଲ୍ମିକୀ ରାମ ସୀତାଙ୍କ ଚରିତଗାଥା ମାଧ୍ୟମରେ ଏକ ଅଖଣ୍ଡ-ବୃହତ୍ତର ହିନ୍ଦୁରାଷ୍ଟ୍ରର ପରିକଳ୍ପନା କରିଛନ୍ତି । ତା'

ସହିତ ନୀତି, ନୈତିକତା, ତ୍ୟାଗ ଓ ଆଦର୍ଶର କଥା କହିବାକୁ ଯାଇ ହୃଦୟସ୍ପର୍ଶୀ କରୁଣ ରସକୁ ମାଧ୍ୟମ କରି ପାଠକର ବ୍ୟାବହାରିକ ବୁଦ୍ଧି ଓ ତାର ଯୁକ୍ତିବାଦୀ-ଚେତନାକୁ ଅକ୍ଳେଶରେ ଭସେଇ ନେବାରେ ସମର୍ଥ ହେଉଛନ୍ତି । ତେଣୁ ପାଠକକୁ ଅବସର ମିଳେନା ଅନ୍ୟବାଟରେ ଚିନ୍ତା କରିବାକୁ । ତା'ପାଇଁ ରାମ ଆଦର୍ଶ ରାଜା । ସୀତା ନିଜ ବନବାସକୁ ଦଣ୍ଡ ନକହି, ପତିହିତ ସାଧନା ତପସ୍ୟା ବୋଲି କହିଛନ୍ତି । ସମଗ୍ର ଜୀବନକୁ ରଘୁବଂଶ ପାଇଁ ଉତ୍ସର୍ଗ କରି ଅସୀମ ତ୍ୟାଗ ଓ ଧୈର୍ଯ୍ୟର ପରୀକ୍ଷା ଦେଇ ଦେବୀ ପାଲଟି ଯାଉଛନ୍ତି ନିଜେ । ତେଣୁ ସେ ବନ୍ଦନୀୟା ।

ପୁଣି ଏହି ରାମ ଅବତାରର କଥା । ଦୁଷ୍ଟ ଦମନ ପାଇଁ ତାଙ୍କର ଜନ୍ମ । ବାସ୍ । ଆମ ଚିନ୍ତା ଏଇ ପର୍ଯ୍ୟନ୍ତ । ଯାକୁ ପଢ଼ିଲେ, ଶୁଣିଲେ ଫଳପ୍ରାପ୍ତି । ଅମାନ୍ୟ କଲେ ପାପ । ଶାସ୍ତ୍ରୀୟ ଅଙ୍କୁଶ ପାପପୁଣ୍ୟର - ଆମ ସାମାଜିକ ଜୀବନ ଓ ମନସ୍ତତ୍ତ୍ୱ ଉପରେ । ଏଭୟା ଥିଲା ସାୟନ୍ତନୀର ଯୁକ୍ତି, ଅଥଚ ଆମେ ଭାବି ପାରୁନା ଯେ, ଏଇ ପୁରାଣ, ଆଖ୍ୟାୟିକା ସବୁ କାଳ୍ପନିକ ନୁହଁନ୍ତି- ଯା' ଭିତରେ ଜାତିର ଇତିବୃତ୍ତ ଲୁଚି ରହିଛି । ଦୂରଦ୍ରଷ୍ଟା କବିଗଣ ଯୋଉ ଚରିତ୍ରମାନଙ୍କୁ ଅବତାରଣା କରିଛନ୍ତି, ସେମାନେ ଏଇ ଜୀବନ ଓ ଜଗତର । ବହୁବିଧ ଅଲୌକିକ, ଅବାସ୍ତବ, ଫାଣ୍ଟାସି ଭିତରେ ଅସଲ ସତ୍ୟ ପ୍ରଚ୍ଛନ୍ନ ହୋଇ ରହିଛି । ସମୟର ଧୂଳି, ରକ୍ଷଣଶୀଳ ମଣିଷର ଧର୍ମୀୟ ଅଙ୍କୁଶ ବାଜି ତା' ଚେହେରା ବଦଳି ଯାଉଛି । ସେଇ ଅଙ୍କୁଶ ହିଁ ଆମକୁ ନିଷେଧାଦେଶ ଜାରି କରିଛି । ସୀତାଙ୍କ ପାତାଳ ପ୍ରବେଶର କାହାଣୀ ଘର ଭିତରେ ନ ପଢ଼ିବାକୁ । କାରଣ ଭୟ- ଅନ୍ଧବିଶ୍ୱାସର । ପରିବାର ଭାଙ୍ଗିଯିବାର ଭୟ - ଅଖଣ୍ଡ ଦାମ୍ପତ୍ୟ ଜୀବନରେ ଫାଟ ସୃଷ୍ଟି ହେବାର । ଏହିଭଳି ଗୋଟାଏ ଅଜଣା ଭୟ ସୃଷ୍ଟିକରି ଚତୁର ପୁରୁଷ ଶାସିତ ସମାଜ ଆମର ବିଚାରବୋଧକୁ ଫ୍ରିଜ୍ କରିଦେଇଛି ସହଜରେ ଏବଂ ଫ୍ରିଜ୍ ହୋଇ ରହିଯାଇଛି ଚିରନ୍ତନୀ ନାରୀ ଜାତିର ଅଧିକାର ଆଉ ଆତ୍ମମର୍ଯ୍ୟାଦାର ପ୍ରଶ୍ନ । 'ଉତ୍ତରାକାଣ୍ଡ'କୁ କେହି ସାଇତି ରଖି ନାହାନ୍ତି ବରଂ ଭୁଲି ଯାଉଛନ୍ତି ।

ବାହିନୀପତିଏ ଭାବନାର ଚଉଦୋଳାରେ ବସି, ଭାବୁଥିଲେ, ସାୟନ୍ତନୀର ରାମାୟଣ ସମୀକ୍ଷା । ଚମତ୍କାର ଭାବେ ଯୁକ୍ତି କରିଥିଲା ସେଦିନ । ସେ ମୁଗ୍ଧ ହୋଇଯାଇଥିଲେ । ଆଜି ଯେତେବେଳେ ନାରୀର ମୌଳିକ ଅଧିକାର ଆଉ ଆତ୍ମମର୍ଯ୍ୟାଦାର ପ୍ରଶ୍ନ ଉଠୁଛି, ନାରୀ ଜାତି ସଙ୍କଟର ସମ୍ମୁଖୀନ ହେଉଛି, ତା'ର ସୁରକ୍ଷା ବିପନ୍ନ - ସେତେବେଳେ ଏଇ ବନ୍ଦନୀୟା ଚିରନ୍ତନୀ ରମଣୀମାନେ ହିଁ ଭାରତୀୟ ପାରମ୍ପରିକ ଆଦର୍ଶର ଆକାଶରେ ଧ୍ରୁବତାରା ଭଳି ସଂଶୟାଚ୍ଛନ୍ନ ଭ୍ରାନ୍ତ ଦିଶାହରା ମଣିଷକୁ ଯଥାର୍ଥ ମାର୍ଗ ଦର୍ଶନ କରାଇ ପାରିବେ । ତେବେ... ହଠାତ୍ ବାହିନୀପତିଙ୍କ ଚିନ୍ତା ଅଟକିଗଲା । ଭିନ୍ନ ବିଚାରଟିଏ ଆସି ଠିଆ ହେଲା ସାମ୍ନାରେ ।

ସାୟନ୍ତନୀ, ଶ୍ରଦ୍ଧା ସୁଧୀରା, ନବନୀତାଙ୍କ ସହିତ ମତ ବିନିମୟ କରୁକରୁ ସୁରଥ

ଦଦେଇଙ୍କୁ ଖୋଜିଲା । ଅନ୍ୟ ସଭ୍ୟମାନେ ନିଜନିଜ ଭିତରେ ବ୍ୟସ୍ତ ଥିଲେ ଆଲୋଚନା ନେଇ ।

ଶ୍ରଦ୍ଧା କହିଲା, ଚାହୁଁନୁ ଏପଟେ ମଉସାଙ୍କୁ, ଆଖିବୁଜି... କ'ଣ ଭାବୁଛନ୍ତି ନା ଶୋଇ ପଡ଼ିଲେଣି... ଚାହିଁଲୁ । ସାୟନ୍ତନୀ ଉଠିଗଲା ନିଜ ଚେୟାରରୁ ସିଧା ଦଦେଇଙ୍କ ପାଖକୁ । ଡାକିଲା... ଦଦେଇ...

ହଠାତ୍ ନିଦରୁ ଉଠିଲା ଭଳି ଉଠି ପଡ଼ିଲେ ବାହିନୀପତିଏ । ସାମନାରେ ସାୟନ୍ତନୀ । ସଂକଳ୍ପର କଳସ ଭଳି । ମନ ଉଲ୍ଲସି ଉଠିଲା । କହିଲେ, ଭାବୁଥିଲି ତୋ' କଥା ତୋ' ବିଚାରରେ ଦମ୍ ଅଛି, ଯଥାର୍ଥତା ତ ଅଛି । ଆମ ଭିତରର ଅନ୍ଧବିଶ୍ୱାସର ଧାରଣା ଓ ଅଲୌକିକତାକୁ କାଟିବାକୁ ପଡ଼ିବ । ଅଜ୍ଞାନତାର ଅନ୍ଧାର ଭିତରୁ ଜୀବନ୍ତ ଚରିତ୍ର ଏବଂ ସେମାନଙ୍କ ଅନ୍ତଃସ୍ୱରକୁ ପ୍ରକଟିତ ନକଲେ, କବିଙ୍କର ମୂଳ ଉଦ୍ଦେଶ୍ୟ ସେମିତି ଚାପି ହେଇ ରହିଯିବ ନିଶ୍ଚୟ । ଅନ୍ଧାର ଅପସରି ନ ଗଲେ ଆଲୁଅର ଛିଟା ସଂସାରକୁ ଦିଶିବ କିମିତି ? ଅସଲ ସତ୍ୟକୁ ପାଠକ ଜାଣି ପାରିବେନି । ସତ ଦର୍ଶନ ସମ୍ଭବ ହେବନି । ଆମେ ଏତେ ଦିନଧରି ତ ଗୋଟାଏ ବଦ୍ଧମୂଳ ଧାରଣାର ଭ୍ରାନ୍ତି ଭିତରେ ଅଛେ । କେବଳ ଧର୍ମୀୟ ବିଶ୍ୱାସକୁ ନେଇଁ ସଂସ୍କୃତିକୁ ବଞ୍ଚେଇ ହବନି । କାରଣ, ସମୟ କ୍ରମେ ତା ଉପରେ ଅନ୍ଧବିଶ୍ୱାସର ଧୂଳି ମାଡ଼ିଯିବ । ସଂସ୍କୃତି ନିଚ୍ଛୁଟା ରହିବନି । ସଂସ୍କୃତି ଗୋଟାଏ ବଡ଼ କଥା, ବଡ଼ ବିଚାର । ତାକୁ ଯେତେ ମାଜିବ, ସିଏ ସେତିକି ଉଜ୍ଜ୍ୱଳ ହେବ । ଆମ ଜାତୀୟ ଜୀବନ ଓ ଚରିତ୍ରକୁ ସେତିକି ମାର୍ଜିତ କରିବ । ସେ ବୁଝି ପାରୁଛନ୍ତି ଏକଥା... ହେଲେ ଗୋଟିଏ କଥା, କିଛି କହିବା ପୂର୍ବରୁ ବାହିନୀପତିଏ ଛୋଟ ନିଃଶ୍ୱାସଟିଏ ନେଇ ଚିନ୍ତିତ ହେଇ ପଡ଼ିଲେ, କହିବେ କି ନ କହିବେ......!

ସାୟନ୍ତନୀ ଅନୁମାନ କଲା, ଦଦେଇ କିଛି ଗୋଟାଏ ଦ୍ୱନ୍ଦ୍ୱରେ ପଡ଼ିଛନ୍ତି । ଶ୍ରଦ୍ଧା ପଚାରିଦେଲା ବି, ହେଲେ ପୁଣି କ'ଣ ମଉସା ?

ଆଜିର ସମୟ କଥା ଭାବୁଥିଲି ମାଁ, କେମିତି ଜଟିଳ ଆଉ ଅସ୍ୱଚ୍ଛ ମନେହେଉନି କି ସମୟଟା ? ମଣିଷ ଚରିତ୍ର ଭଳି ଧୂଆଁଳିଆ । କୌଣସି କଥାକୁ ସହଜ ସରଳ ଭାବେ ଗ୍ରହଣ କରିପାରୁନି ।

ମାନେ ? ବୁଝିହେଲାନି କଥାଟା ?

ମାନେ ଆଉ କ'ଣ, ସେଇ ରାଜନୀତି । ସାଧାରଣରେ ଯାହାକୁ ପଲିଟିକସ୍ ବୋଲି କୁହାଯାଏ । ସାହିତ୍ୟପ୍ରେମୀ ସିନା ସାହିତ୍ୟ ଭିତରୁ ସୌନ୍ଦର୍ଯ୍ୟବୋଧ, ଆନନ୍ଦ ତତ୍ତ୍ୱକୁ ଖୋଜେ । ତା' ମଣିଷର କଥା ଶୁଣିବାକୁ ଚାହେଁ, ହେଲେ କିଛି ମଣିଷ ଅଛନ୍ତି, ଯୋଉମାନେ ପ୍ରତିଟି କଥାକୁ ରାଜନୀତିର ରଙ୍ଗ ବୋଲି ତାକୁ ଜଟିଳ କରି ଥୋଇବାକୁ । ସେଥିରେ ସେମାନଙ୍କର

କେତେ ଲାଭ କି କ୍ଷତି ହୁଏ ସେଇ ଜାଣିଥିବେ, କିନ୍ତୁ ସେଥିରେ ଅସଲ କଥାଟି ବିକୃତ ହେଇପଡ଼ିବ । ଲେଖକର, ଆଲୋଚକର ପ୍ରକୃତ ଉଦ୍ଦେଶ୍ୟ ସଫଳ ହେବନି । ପରିସ୍ଥିତି ବେଳେବେଳେ ବିପର୍ଯ୍ୟସ୍ତ ହେଇ ଉଠିବା ବି ନଜିର ରହିଛି । ନ୍ୟସ୍ତସ୍ୱାର୍ଥ ବ୍ୟକ୍ତିଙ୍କ ଉଦ୍ଦେଶ୍ୟ ତ ସଦାସର୍ବଦା ବଙ୍କା ତେଢ଼ା ବାଟରେ ହିଁ ଚାଲେ । କେତେବେଳେ ଧର୍ମର ଦୁହାଇ ଦେଇ, କେତେବେଳେ ପରମ୍ପରା ନାଁରେ ଅଥବା ରକ୍ଷଣଶୀଳତାକୁ ଜାବୁଡ଼ି ଧରି, ସେମାନେ କାଙ୍କିସୀ ନାଚନ୍ତି । କବି, ଲେଖକମାନେ ସାହିତ୍ୟ ଭିତରେ ପ୍ରତୀକ, ବ୍ୟଞ୍ଜନାର ବ୍ୟବହାର କରିବାର ମୁଖ୍ୟ ତାତ୍ପର୍ଯ୍ୟ କ'ଣ ତାକୁ ନବୁଝିଲେ, ଚରିତ୍ରରେ, ସାମାଜିକ ଜୀବନରେ, ଚିନ୍ତା ଚେତନାରେ ସୁଧାର ଆସିବ କିମିତି ? ସଂସ୍କୃତି ହେଉ କି ମୂଲ୍ୟବୋଧ ବଞ୍ଚିବନି କେବେ । ସେଇକଥା ହିଁ ଭାବୁଥିଲି । ଆମ ସମାଜରେ ଅସାମାଜିକଙ୍କ ଉପଦ୍ରବ କିଛି କମ୍ ନୁହେଁ ଆଜିକାଲି ।

ସାୟନ୍ତନୀ ବୁଝି ପାରିଲା, ଦଦେଇଙ୍କ ଇଙ୍ଗିତ କୁଆଡ଼କୁ । ସେଥିପାଇଁ କ'ଣ ଆମେ ଯାହା ଅଛି, ଯେମିତି ଅଛି, ସେମିତି ଚାଲିଥାଉ ନ୍ୟାୟରେ, ନିଜ ପୌଢ଼ି ଦେଖାଇ, ଉଲ୍ଲାସର ବାଣ ଫୁଟାଇ, କହିବା ଆମେ ସଂସ୍କୃତିର ରକ୍ଷକ; ଅଥଚ ଆଧୁନିକତା ନାଁରେ ଆମ ନିଜ ଦୋଷ ଦୁର୍ବଳତାକୁ ସଂଶୋଧିତ ନକରି ବଢ଼େଇ ଚାଲିଥିବା । ଉତ୍ତରାକାଣ୍ଡ ନ ପଢ଼ି ମଧ୍ୟ ଆମ ପାରିବାରିକ ଜୀବନ, ଦାମ୍ପତ୍ୟ ଜୀବନରେ ଏତେ ଫାଟ କାହିଁକି ? ପୁଣି ଏଇ ରାମ ସୀତାଙ୍କ ରାଜ୍ୟରେ- ଏ ପ୍ରଶ୍ନ ଆମେ କେବେ ପଚାରିଛୁ ନିଜକୁ ? ? କିଏ କ'ଣ ଭାବିବ, କାହା ବିଚାରକୁ ଆଘାତ ଲାଗିବାର ଭୟରେ ମୁକ୍ତଚିନ୍ତାର ବୁଦ୍ଧିଜୀବୀ, ପ୍ରକାଶକ, ସାହିତ୍ୟିକ... କେହି ବି ଖୋଲାଖୋଲି ଭାବେ କହିପାରୁ ନାହାନ୍ତି କି ଦେଖାଇ ପାରୁନାହାନ୍ତି କୌଣସି ଦୋଷ ଦୁର୍ବଳତାକୁ । ଫଳରେ ସଂସ୍କୃତି ସୁରକ୍ଷା ନାମରେ ସଂସ୍କୃତିର ଅବକ୍ଷୟ ଘଟୁଛି- ଏକଥା ଯେ କେହି ବୁଦ୍ଧିଜୀବୀ ଅସ୍ୱୀକାର କରିବନି ଦଦେଇ ! କରିବକି ? ଏମିତିରେ ତ ଆମେ ସଂସ୍କୃତିକୁ ବିକଳାଙ୍ଗ କରିଦେଉଛେ- ସାମାଜିକ ଜୀବନ ବିପନ୍ନ ହେଇ ପଡୁଛି ଧୀରେଧୀରେ । କେତେଦିନ ଏମିତି ଆମେ ଛଳନାର ମୁଖା ପିନ୍ଧି ରହିବା ? କେହି ବି ହେଉ, ସାହସ ଦେଖାଇ ନୂଆ ରାସ୍ତାଟିଏ ତିଆରି କରିବାର ପ୍ରୟାସ କରୁ । ସାହିତ୍ୟକୁ ସାହିତ୍ୟ ଭାବେ ବିଚାର କରାଯାଉ ।

ସାୟନ୍ତନୀ କ୍ରମଶଃ ଉତ୍ତେଜିତ ହେଇ ପଡୁଥିଲା - ମୋର ସେ ସାହସ ଅଛି । ମୁଁ ବାଟଭାଙ୍ଗି ଚାଲିପାରିବି । ଫଳାଫଳ ଯାହା ହେଉ, ତମେ ଖାଲି ସମର୍ଥନ କର । ଭ୍ରାନ୍ତ ବାଟ ବାଟହୁଡ଼ା ମଣିଷଙ୍କୁ ସଚେତନ କରିବା ଆମର ଦାୟିତ୍ୱ । ନହେଲେ ଭବିଷ୍ୟତ ବଂଶଧର ଆମକୁ କ୍ଷମା କରିବେନି ।



# ସ୍ମୃତିରୁ ପାଖୁଡ଼ାଏ

ପୁରୀକୁ ବଦଳି ହୋଇ ଆସିବାର ପାଖାପାଖି ଦୁଇବର୍ଷ ଉପରେ ହିଁ ହେବ । କାରଣ ପ୍ରଥମ ବର୍ଷଟା ସାରା ସେ ଯିବାଆସିବା କରୁଥିଲା ଭୁବନେଶ୍ୱରରୁ ପୁରୀ । ରହଣି ଥିଲା ଭୁବନେଶ୍ୱର । ଦୁଇହଜାର ତିନି ଫେବୃୟାରୀ ମାସର କଥା । ଦିନ ବାର ତିଥି ତାରିଖ ମନେ ନାହିଁ କିଛି । ଦିନକର ସନ୍ଧ୍ୟା... ସଞ୍ଜ ବସେଇବାର ବେଳ । ହଠାତ୍ ବାହାର ଦରଜାର କଲିଂବେଲ୍‌ଟା ବାଜିଉଠିଲା ଟୁଂଟାଂ ହୋଇ । ଅତନୁ ବୋଧହୁଏ ଘରେ ନଥିଲେ । ସେ ନିଜେ ହିଁ ଉଠିଯାଇଥିଲା ଦୁଆର ଖୋଲିବାକୁ ।

କିଏ ହୋଇପାରେ ଏତେବେଳକୁ ! ରୋଗୀ ହୋଇପାରେ, ଅତନୁଙ୍କୁ ଖୋଜିବାକୁ ଆସିଥିବ । ସେମାନଙ୍କ ପାଇଁ ତ ସମୟ ଅସମୟ କିଛି ନ ଥାଏ । କୌଣସି ଛାତ୍ର ବି ହୋଇପାରେ ଅଥବା କୌଣସି ବନ୍ଧୁ... ଆତ୍ମୀୟ... ଜଗନ୍ନାଥ ଦର୍ଶନ କରିବା ଅବସରରେ ତା' ଦୁଆରେ ପାଦ ଅଟକିଯାଇଛି । ହୋଇପାରେ, ସମ୍ଭବତଃ । ଏମିତି ହୁଏ, ହେଇଛି ବି ଅନେକଥର ।

ଅବଶ୍ୟ, ତା'ର ଏଇ ଘର ଅନ୍ୟର ଦୃଷ୍ଟି ଆକର୍ଷଣ କଲାଭଳି ନୁହେଁ । ତଥାପି ଅସୁବିଧା ହୁଏନା ଖୋଜିବାରେ । କେବଳ ଇଚ୍ଛା ଆଉ ଶ୍ରଦ୍ଧା ଥିଲେ ହେଲା । ସେଥିପାଇଁ ସମୟ ଅସମୟର ପ୍ରଶ୍ନ ଉଠେନା । ସେମାନେ ଆସନ୍ତି ବି । ହସ ଖୁସି ଅଡ୍ଡାଡ଼ି, ବନ୍ଧୁ ସଙ୍ଗୋଳି ଫେରିଯାଆନ୍ତି । କିଛିସମୟ ଘର ଭିତରେ ଆନନ୍ଦର ଢେଉ ଚୂଡ଼ା ଭାଙ୍ଗେ । ଗରମ ଚା' କଫିର ଉଷ୍ମତା ଭିତରେ ଅତୀତ ସତେଜ ହୋଇଉଠେ । ଭୁଲି ହୋଇଯାଏ ଜୀବନର ଅଭାବବୋଧ । ସବୁଅଛି, ସମସ୍ତେ ଅଛନ୍ତିର ଅନୁଭବ ସଞ୍ଚରିଯାଏ ମନର କୋଣ ଅନୁକୋଣରେ । ସେଇ ଉଦ୍ଦେଶ୍ୟରେ ତ ରାଜଧାନୀର ସଂଭ୍ରାନ୍ତ ମୋହ ଛାଡ଼ି ଏଠିକୁ ଆସିଛି । ଭାବନାର ପାହାଚ ଚଢ଼ି କେତେବେଳେ ସେ ତଳମହଲାକୁ ଓହ୍ଲେଇ ଯାଇଥିଲା ।

ଖୋଲାଥିଲା ଦୁଆର । ଦରଆଉଜା ଦୁଆର ସେପାଖେ ଜଣେ ଭଦ୍ରଲୋକ ବଡ଼ଦାଣ୍ଡର ଚଳନ୍ତି ଜନସ୍ରୋତ ଆଡ଼କୁ ମୁହଁ କରି ଠିଆ ହୋଇଥିଲେ ।

କିଏ ?

ଫେରି ଚାହିଁଲେ ଭଦ୍ରଲୋକ । ହସହସ ମୁହଁ । ଚିହ୍ନିପାରୁଛ ଦେବଯାନୀ ?

ବିସ୍ମୟାଭିଭୂତ ହୋଇପଡ଼ିଲା ସେ । ବିଶ୍ୱାସ କରିପାରୁ ନଥିଲା ନିଜ ଆଖିକୁ । ଇଏ କେମିତି ସମ୍ଭବ ! ସ୍ୱପ୍ନ ତ ନୁହେଁ । ଏକ୍‌ଦମ୍ ସତ । ତା'ର ଇତିହାସ ପ୍ରଫେସର ରଣବିଜୟ ଚୌଧୁରୀ । ସାମ୍‌ନାରେ ଠିଆ ହୋଇଛନ୍ତି ତା'ର । ଗୋରା ତକତକ ଚେହେରା । ସେଇ ହସହସ ମୁହଁ, ଈଷତ୍ ବ୍ୟାକ୍‌ବ୍ରସ ହୋଇଥିବା କୁଞ୍ଚୁକୁଞ୍ଚିଆ ଗହଳକେଶ । ଅବଶ୍ୟ ସେଥିରେ ଟିକେ ଧଳାରଙ୍ଗର ଛିଟା ଏବେ ସମୟ ଲଗେଇ ଦେଇଛି । ସେମିତି ଇନ୍‌କରା ପୋଷାକ, କଳାପ୍ୟାଣ୍ଟ ସାଙ୍ଗକୁ ଧଳା ସାର୍ଟ । ପାଦରେ ଫୁଲ୍ ସୁଜ୍ । ସବୁ ସେମିତି ଠିକ୍‌ଠାକ୍ ଅଛି । ଯେମିତି ଦେଖିଥିଲା ସେ ପଢ଼ିଲାବେଳେ । ପାଖାପାଖି ତିନି ଦଶନ୍ଧିରୁ ଊର୍ଦ୍ଧ୍ୱ ହେଇଯିବ । କିଛି ବଦଳିନି । ଅଭିଭୂତ ହୋଇଯାଉଥିଲା ସେ । ସମସ୍ତଙ୍କର ଅତିପ୍ରିୟ 'ରଞ୍ଜୟ ସାର' । ଖୁବ୍ ଛାତ୍ରବତ୍ସଳ ।

ସାର୍ ନୂଆହୋଇ ଆସିଥାନ୍ତି କଲେଜକୁ । ନୂଆ ପୋଷ୍ଟିଂ ହୁଏତ । ସେତେବେଳେ ସେ ପ୍ଲସ୍‌ଟୁର ଛାତ୍ରୀ । ସାହିତ୍ୟ-ଇତିହାସ-ଅର୍ଥନୀତି ଥିଲା ତା'ର ବିଷୟ । ମୁହୂର୍ତ୍ତକରେ ସବୁକଥା ମନେପଡ଼ିଗଲା ଗୋଟି ଗୋଟି କରି । ଆପେ ହାତ ଯୋଡ଼ି ହୋଇଯାଇଥିଲା । 'ମୋର ଅନେକ ଭାଗ୍ୟ, ଆପଣଙ୍କ ପାଦ ପଡ଼ିଛି ମୋ'ଘରେ' -ପ୍ରଣାମ ଜଣେଇ କହିଥିଲା ସେ ଗଦ୍‌ଗଦ୍ ହୋଇ । 'ଆନନ୍ଦପ୍ରକାଶ ପାଇଁ ମୋର ଭାଷା ନାହିଁ । ଆସନ୍ତୁ ସାର୍ ।'

ଅତନୁ ନ ଥିଲେ । ଥିଲେ ସେ ନିଶ୍ଚୟ ଅଜାଡ଼ି ଦେଇଥା'ନ୍ତା ସେଇ ଖୁସିରୁ କିଛି ତାଙ୍କ ହାତରେ । ଅନେକ ବର୍ଷ ପରେ ସେ ସାର୍‌ଙ୍କୁ ଦେଖୁଛି ତ ।

'ତମେ ମୋତେ ଚିହ୍ନିପାରିଲ ତା' ହେଲେ !' ସାର୍‌ଙ୍କ କଣ୍ଠରେ ଅନ୍ତରଙ୍ଗତାର ସ୍ୱର୍ଶ ଥିଲା । 'ଚିହ୍ନିବିନି କେମିତି', ଉପରମହଲାକୁ ବାଟ କଢ଼େଇ ନେଉନେଉ ସେ କହିଲା ବାଧ୍ୟ ଛାତ୍ରୀଟିଏ ଭଳି । ଗୋଟାଏ ଛୋଟ ଉତ୍ତେଜନା ତାକୁ ଝାଳେଇ ଦେଉଥିଲା, ଯେମିତି ସେ କ୍ଲାସରୁମ୍‌ରେ ସାର୍‌ଙ୍କୁ ସାମ୍‌ନା କରୁଛି । ପାଟି ବାଙ୍କୁଳି ଯାଉଥିଲା ଡରରେ ।

'ମୁଁ କିନ୍ତୁ ତମକୁ ଦେଖି ଚିହ୍ନିପାରିନଥାନ୍ତି ଦେବଯାନୀ । ଯଦି ତମ ନେମ୍‌ପ୍ଲେଟ୍ ଏଇ ଘର କାନ୍ଥରେ ଲାଗିନଥାନ୍ତା । ତମ ଚେହେରା ଏକଦମ୍ ବଦଳିଯାଇଛି । ତମର ସେଇ ବ୍ରାଇଟ୍ ଆଖିଯୋଡ଼ିକ ଅନ୍ୟମାନଙ୍କଠାରୁ ତମକୁ ଅଲଗା କରିଦେଉଥିଲା । ଏବେ ତ ଦେଖୁଛି... ସାର୍‌ଙ୍କ କଣ୍ଠସ୍ୱରର ଉଲ୍ଲାସ ହଠାତ୍ ଧିମେଇଗଲା ଏବଂ 'ଆ'ମ ସରି' କହି ସାର୍ ତା' ମୁହଁକୁ ଚାହିଁଲେ- ସତେଯେମିତି ସେଇ ଆଖିଯୋଡ଼ିକୁ ଖୋଜିବାକୁ ଯାଇ ହତାଶ ହୋଇଯାଇଥିଲେ ।

ତମ ସ୍ୱାସ୍ଥ୍ୟର ଏଇ ଅଧୋଗତି କାହିଁକି ହେଇଛି ଦେବଯାନୀ ? ବ୍ୟସ୍ତ ହୋଇପଡ଼ିଲେ ସାର୍ ତା'ର ଦୁର୍ବଳ ସ୍ୱାସ୍ଥ୍ୟ ଦେଖି । ସୋଫାରେ ବସୁବସୁ କହିଲେ, ଶୁଣିଛି ସ୍ୱାମୀ ତୁମର ଡାକ୍ତର, ଜଣେ ନାମୀ ସର୍ଜନ । ମୋତେ ଶ୍ରୀଜୟ କହୁଥିଲା, ତମେ ଏଇଠି ଅଛ, ଆମ କଲେଜରେ, ତମ ଠିକଣା ବି ସେ ହିଁ ଦେଲା । ମନେଅଛି ନା ଶ୍ରୀଜୟକୁ, ତମ ଗାଁ ପୁଅ କ୍ଲାସ୍‌ମେଟ୍ ଶ୍ରୀଜୟନନ୍ଦ ଡାକ୍ତର, ଭଲ ପାଥୋଲୋଜିଷ୍ଟ, ସେ ଏଇଠି ଅଛି – ଜାଣିଥିବ । ସବୁକଥା ସଂକ୍ଷିପ୍ତରେ କହିସାରି ସାର୍ ଏପାଖସେପାଖ ଚାହିଁଲେ – ଯେମିତି କାହାକୁ ଖୋଜୁଛନ୍ତି ।

ଅତନୁଙ୍କୁ ଖୋଜୁଛନ୍ତି ସାର୍- ଜାଣିପାରିଥିଲା ସେ । କହିଲା, ଡାକ୍ତର ଆଜି ଘରେ ନାହାନ୍ତି । ଥିଲେ ଖୁବ୍ ଖୁସି ହୋଇଥା'ନ୍ତେ ।

ଠିକ୍ ଅଛି, ଠିକ୍ ଅଛି, ନୋ ପ୍ରବ୍ଲେମ୍, ଆଉ ଦିନେ ଆସିଲେ ଦେଖାହେବ । ତମ ସ୍ୱାସ୍ଥ୍ୟ ନେଇ ନିଶ୍ଚୟ ମୁଁ ଅଭିଯୋଗ କରିବି ତାଙ୍କ ପାଖରେ । ଆଚ୍ଛା ଦେବଯାନୀ, ତମର କ'ଣ କିଛି ଦେହଖରାପ ହୋଇଥିଲା ? ତାକୁ ଭାରି ସଙ୍କୁଚିତ ଲାଗିଥିଲା । କେତେ ବ୍ୟସ୍ତ ହେଉଛନ୍ତି ସାର୍, ବାପାବୋଉଙ୍କ ଭଳି । ଉତ୍ତର ଦେବାକୁ ଯାଇ କହିଲା, 'ସେଭଳି କିଛି ବଡ଼ଧରଣର ଦେହ ଖରାପ ହୋଇନି । ତେବେ ଲଗାମ୍‌ହୀନ ପିଲାଦିନ ଆଉ ଦାୟିତ୍ୱପୂର୍ଣ୍ଣ ପାରିବାରିକ ଜୀବନ- ଦି'ଟା ଅଲଗା କଥା । ତା' ସହିତ ଚାକିରି । ଅନଭ୍ୟସ୍ତ ଭାବେ ଉଭୟକୁ ସମ୍ଭାଳୁ ସମ୍ଭାଳୁ ସ୍ୱାସ୍ଥ୍ୟ ପ୍ରତି ଦୃଷ୍ଟି ଦେଇପାରିନି । ତା' ଛଡ଼ା ଆପଣ ମତେ ଛତିଶ ବର୍ଷ ପରେ ଦେଖୁଛନ୍ତି, ଆଉ ଅଢ଼େଇବର୍ଷ ରହିଲା, ମୋ ଚାକିରି ସରିବାକୁ । ଖୁବ୍ ଲମ୍ବା ସମୟର ଇଣ୍ଟରଭାଲ- ପୃଥିବୀ ଅନେକ ବଦଳିଯାଇଛି- ମଣିଷ ତ ଛାର । ଆଜିର ଚେହେରା କାଲିକୁ ନାହିଁ । ବୟସ ବି ତ ଆଗେଇ ଚାଲିଛି ତା' ସହିତ ।

କଥା ସାରିବାକୁ ନ ଦେଇ ସାର୍ ଅଭିଭାବକ ସୁଲଭ କଣ୍ଠରେ କହିଲେ, 'ମୋ ଆଗରେ ବୟସର ହିସାବ ଦିଅନା ଦେବଯାନୀ- ଏସବୁ ଗୋଟାଏ ବାହାନା । ସାହିତ୍ୟର ଛାତ୍ରୀ ତ, ସମୟ ଉପରେ ଭଲ ତର୍ଜମା କରୁଛ । ଗୁଡ୍ ! ହେଲେ ମୋତେ ଦେଖୁଛ ନା, ମୁଁ ତମ ଟିଚର୍ – ଏବେ ବି ଫିଟ୍ ଅଛି । ଆଉ ତମେ... ଏତେ ଭଲ ପଢୁଥିଲ, ଅଳସୁଆ ବି ନଥିଲ । ଆମେସବୁ ଅନେକ ଆଶା ରଖିଥିଲୁ ତମ ପାଖରୁ । ଘର ସମ୍ଭାଳିବାଟା ସେମିତି କିଛି କଠିଣ କାମ ହୋଇଥିବ ତମ ପାଇଁ.... ମୁଁ କାହିଁକି ଭାବିପାରୁନି । ଚାକିରି କରିଛ, ଶୁଣିଥିଲି, ଖୁସି ଲାଗିଥିଲା । ତମଭଳି ସ୍ୱାଧୀନଚେତା ଝିଅ ଘରକୋଣରେ ବସିଥା'ନ୍ତା- ଭଲ ହେଇ ନଥା'ନ୍ତା । ହେଲେ ଆଉ କ'ଣ କରୁଛ.... ରିସର୍ଚ୍ଚ ? କିଛି ପଢ଼ାପଢ଼ି ?

ଆହୁରି ସଙ୍କୁଚିତ ହେଇପଡ଼ିଥିଲା ସିଏ । କ'ଣ ଉତ୍ତର ଦେବ ସାର୍‌ଙ୍କୁ, କ'ଣ ବା କରିଛି ସେ ଜୀବନରେ ! କୋଉ ଆଶା ଚରିତାର୍ଥ ହେଇଛି ତା'ର । ସ୍ୱପ୍ନ ସ୍ୱପ୍ନ ହୋଇ ରହିଯାଇଛି । ଜୀବନ ସଂଘର୍ଷର ଚଲାପଥରେ ମାଡ଼ିମକଚି ହୋଇ କେବଳ ଚାଲିଆସିଛି

ଏପର୍ଯ୍ୟନ୍ତ- ପ୍ରତିବନ୍ଧକ, ପ୍ରତିଯୋଗିତାର ବଳକଷାକଷି ଭିତରେ ଅଣନିଃଶ୍ୱାସୀ ହେବା ବ୍ୟତୀତ, ଲାଭ କିଛି ହେଇନି । ଭାଷା ସାହିତ୍ୟ ପାଇଁ ତା'ର ଅବଦାନ କ'ଣ ଅଛି- କେତେବେଳେ କେମିତି ଦି'ଧାଡ଼ି ଲେଖିଛି ବାସ୍ । କ'ଣ କହିବ ଲାଜ କଥା ।

ସାର୍ କିନ୍ତୁ ନଛୋଡ଼ବନ୍ଧା । ସାର୍ ଚାହାନ୍ତି, ତାଙ୍କ ଛାତ୍ରଛାତ୍ରୀ ସାଧାରଣଙ୍କ ଭଳି ଜୀବନଯାପନ ନକରି କିଛି କରି ଦେଖାନ୍ତୁ । ନିଜବାଟରେ ନିଜକୁ ପ୍ରତିଷ୍ଠିତ କରାନ୍ତୁ । ବିଶେଷ କରି ଦେବଯାନୀ ଭଳି ଛାତ୍ରୀ, ସାହିତ୍ୟ ଇତିହାସରେ ଭଲ କରୁଥିଲା ସେ । ତେଣୁ ତା'ଠୁ ଆଶା କରିବା ସ୍ୱାଭାବିକ, ଯାହାବି ହେଉ ତାକୁ ଉତ୍ତର ଦେବାକୁ ତ ପଡ଼ିବ । କହିଲା, 'ଗବେଷଣା ଚାଲୁ ରଖିବା ମୋ' ପକ୍ଷେ ସମ୍ଭବ ହୋଇନି ସାର୍ । ଗବେଷଣା ପାଇଁ ଯୋଉ ପରିସ୍ଥିତି ପରିବେଶ ଆବଶ୍ୟକ, ତାହା ଜଣେ ନାରୀ ବିଶେଷ କରି ଓଡ଼ିଆ ଘରର ବୋହୂ, ପୁଣି ଆପଣଙ୍କ ପୁରୀର ରକ୍ଷଣଶୀଳ ପରିବାରର ବୋହୂ ପାଇଁ ସମ୍ଭବ ନୁହେଁ, ତାହା ଆପଣ ଜାଣିପାରୁଥିବେ । ପୁଣି ଚାକିରି ଜୀବନର ସମସ୍ୟା ଓ ସଂଘାତ ଭିତରେ ମୁଁ ଅଣନିଃଶ୍ୱାସୀ ହୋଇପଡ଼ିଛି । ମୁଁ ମୋଟେ ଅସାଧାରଣ ହୋଇପାରିନି । ତାରି ଭିତରେ ସାହିତ୍ୟସେବା କଲମ ବନ୍ଦ ନକରି ଯାହା ଚଲେଇଛି । ଜଗନ୍ନାଥ ସାହିତ୍ୟ ଉପରେ ଗବେଷଣା କରିଛି ସତ ହେଲେ ସନ୍ତୋଷ ପାଇନି ।

ଖୁବ୍ ଖୁସି ହେଉଥିଲେ ସାର୍ । କହିଲେ, ଠିକ୍ ଅଛି । କାମ କରିଛ, କରୁଛ ବି । କରୁଥାଅ । ଲେଖା ଛାଡ଼ନି । କ'ଣ ଲେଖୁଛ ? ପ୍ରବନ୍ଧ ନା ଆଲୋଚନା ?

ତା'ପାଇଁ ମୋର ଧୈର୍ଯ୍ୟ କାହିଁ ? ତଥ୍ୟ ସଂଗ୍ରହ ତ ମୋ ପାଇଁ ଏକ ସମସ୍ୟା । ଆଜିକାଲି ସ୍ୱାସ୍ଥ୍ୟ ବି ଭଲ ରହୁନି । ପରିଶ୍ରମ କରିବା କଷ୍ଟକର ହୋଇପଡୁଛି ।

'ତୁମେ ତ ଏମିତି ପରିଶ୍ରମ କାତର ନଥିଲ । ଗଙ୍ଗବଂଶ ଉପରେ ତମେ ପେପର ପ୍ରତ୍ୟୁସ୍ କରିପାରିଥା'ନ୍ତ । ଐତିହାସିକ ରାଜଗୁରୁ ଥିଲେ ତୁମ ଜନ୍ମମାଟିର । ଐତିହ୍ୟସଂପନ୍ନ ସହରରେ ତମର ଜନ୍ମ । ତମ ଗଜପତି ଦେଶରେ ଇତିହାସ ସୃଷ୍ଟି କରିଛନ୍ତି । ଆଉ ତମେ ସେଇ ପାଣିପବନରେ ବଢ଼ି ଗଳ୍ପ ଉପନ୍ୟାସ ଲେଖୁଛ ?'

ସାର୍‌ଙ୍କର ଗଳ୍ପ ଉପନ୍ୟାସରେ ବିଶେଷ ରୁଚି ନଥିଲା । ସେ ଜାଣେ ।

ପୁଣି ଅଧା ରଖିଥିବା କଥାକୁ ଆରମ୍ଭ କରି ସେ କହିଲେ, "ଠିକ୍ ଅଛି ଲେଖ, ସେ ସବୁ ତ କ୍ରିଏଟିଭିଟି, ସ୍ୱତନ୍ତ୍ର ପ୍ରତିଭା । ହେଲେ ଇତିହାସକୁ ଭୁଲନି । ଇତିହାସ ଜାତିର ଗର୍ବ ଆଉ ଗୌରବର ସାକ୍ଷୀ ।"

ସାର୍‌ଙ୍କର ଇଚ୍ଛାଥିଲା, ମୁଁ ପୁଣିଥରେ ଇତିହାସ ସହିତ ସଂପୃକ୍ତ ହୁଏ । ଇତିହାସ ଚର୍ଚ୍ଚା କରେ । ଅନେକ କାମ ଅଛି କରିବା ପାଇଁ । ସମୟ ବି ସରିନି, ତମେ ପାରିବ ମୁଁ ଜାଣେ । ଅନର୍ଗଳ କହିଯାଉଥାନ୍ତି ସାର୍ ଯେମିତି କ୍ଲାସ୍‌ରୁମ୍‌ରେ ପଢ଼ାନ୍ତି । ବେଳେବେଳେ ଶାସନ

କରିବା କଣ୍ଠରେ ତ କେତେବେଳେ ତାଗିଦ୍ କରିବା ଢଙ୍ଗରେ, ସବୁଥିରେ ଆନ୍ତରିକତାର ସ୍ପର୍ଶ, ଆପଣାପଣ । ମୁଁ ଯେମିତି ସପ୍ତଦଶୀ କିଶୋରୀ ଛାତ୍ରୀଟିଏ ସେଦିନର । ଯେମିତି ମୋ' ଅପେକ୍ଷା ମୋତେ ସେ ବେଶି ଜାଣନ୍ତି । ଚିହ୍ନନ୍ତି ମୋ ପ୍ରତିଭାକୁ ଏବଂ ସେଇ ପ୍ରତିଭାର ପୁନରୁଦ୍ଧାର କରି ନୂଆ ପରିଚୟଟିଏ ଦେବେ । ସବୁ ଅକୃତ୍ରିମ- ଛଳବିହୀନ ଆତ୍ମୀୟତା ।

ମୋତେ ଉଲ୍ଲସିତ ଲାଗିଥିଲା । ଉଲ୍ଲସିତ ବି ହେଉଥିଲି ସତରେ । କାରଣ ମୋତେ ପ୍ରଶଂସା କରିବାକୁ, ମୋ ସମ୍ପର୍କରେ ସବୁକଥା ଜାଣିବାକୁ, ମୋତେ ତାଗିଦ୍ କରିବାକୁ ଭୁଲିଯାଇଥିବା ଦାୟିତ୍ୱବୋଧ, କମିଟ୍‌ମେଣ୍ଟ ସମ୍ପର୍କରେ ମନେ ପକେଇଦେବାକୁ, ମୋ ଭିତରେ ଥିବା ଯତ୍‌କିଂଚିତ୍ ଶକ୍ତିର ସଦୁପଯୋଗ କରିବାକୁ ଏବଂ ସ୍ୱାସ୍ଥ୍ୟ ସମ୍ପର୍କରେ ଚିନ୍ତିତ ହେବା ସଙ୍ଗେସଙ୍ଗେ ସଚେତନ କରାଇଦେବାକୁ - ମୋ' ବାପା ଭଳି, ବଡ଼ଭାଇ, ଅଥବା ମୋର ଶୁଭାକାଙ୍କ୍ଷୀ ଅଭିଭାବକ ଭଳି ସେ ସବୁବେଳେ ମୋ' ସାମନାରେ ଠିଆ ହୋଇଛନ୍ତି । ମୁଁ ଅଭିଭାବକଶୂନ୍ୟ ନୁହେଁ- ମୋତେ ଲାଗିଥିଲା ସେଇ ମୁହୂର୍ତ୍ତରେ । ମୋ ବାପାବୋଉ, ଶାଶୂଶ୍ୱଶୁରଙ୍କର ପରେ ମୁଁ ଭାବିଥିଲି ମୋ' ମୁଣ୍ଡ ଉପରୁ ଗୁରୁଜନଙ୍କ ହାତ ଅପସରିଗଲା - କିନ୍ତୁ ନା, ମୋର ସେଇ ଅଭାବ ଟିକକ ସାର୍ ପରିପୂରଣ କରିଦେଇଥିଲେ । ମୋ' ମନରେ ଦମ୍ଭ ସୃଷ୍ଟି ହେଉଥିଲା ।

ସାର୍‌ଙ୍କ ପାଇଁ କଫି କରିବାକୁ ସେ ଉଠିଯାଇଥିଲା । ସାର୍ ମନା କଲେ, ଆଜି ଥାଉ, ଆଉ ଦିନେ ଆସି ଡାକ୍ତରଙ୍କ ସହିତ କଫି ପିଇବି ।

ସାର୍ ଉଠିଲେ.... ତଳକୁ ଓହ୍ଲାଇବା ଅବସରରେ କହିଚାଲିଥା'ନ୍ତି– 'ଶ୍ରୀଜୟଠୁ ଶୁଣିଥିଲି ତମ ସମ୍ପର୍କରେ ସବୁକଥା । ଖୁବ୍ ଭଲ ଲାଗିଲା । ଆଜି, ତମ ସହିତ ଦେଖାହେଲା । ମୋ' ଘର ଏଇଠୁ ବେଶି ଦୂର ନୁହେଁ । ମୋର ଏଇଟା ଚଲାବାଟ । ପୁଣି ଦେଖାହେବ.... ।'

ସାର୍ ରାସ୍ତାକୁ ଓହ୍ଲାଇ ଯାଇଥିଲେ । ପ୍ରଣାମ ଜଣାଇଲି । ପ୍ରତି ନମସ୍କାର କରି କହିଲେ, 'ଆଉ ଦିନେ ଆସିଲେ କଥାହେବା । ନିଜର ଯତ୍ନ ନିଅ.... ଖୁବ୍ ଖରାପ ହେଇଯାଇଛି ସ୍ୱାସ୍ଥ୍ୟ । ମୁହଁରେ ସେଇ ପରିଚିତ ଅନାବିଳ ହସ, ଯେମିତି ସେ ଦେଖିଆସିଥିଲା ପାଠପଢ଼ାବେଳରୁ । ଯାହା କେବେ ବି ମଉଳିବା ସେ ଦେଖିନି ।

ତା'ର ଅନେକ ଦିନ ପରେ..... ଖରା ଦିନର ଗୁମ୍‌ସୁମ୍ ସଂଜ.... ଘର ଭିତରେ ବାଙ୍ଗୁଆଳି ଗରମ, ଅସହ୍ୟ, ଅଣନିଃଶ୍ୱାସୀ ଲାଗେ । ଥଣ୍ଡା ପବନ ଟିକିଏ ପାଇଁ ତହଳବିକଳ । ଅଥଚ ସୂର୍ଯ୍ୟ ବୁଡ଼ିବାକୁ ବସିଲେ ସମୁଦ୍ରର ଦକ୍ଷିଣାପବନ ଓହ୍ଲେଇଆସେ ବଡ଼ଦାଣ୍ଡ ଉପରକୁ ରୀତିମତ କିତ୍‌କିତ୍ ଖେଳିବାକୁ । ପବନଲୋଭରେ ବଡ଼ଦାଣ୍ଡର ଗହଳି ବଢ଼େ । ଅତନୁଙ୍କ ସହ ଦେବଯାନୀ ପ୍ରାୟ ଖୋଲାଛାତ ଉପରକୁ ଉଠିଆସନ୍ତି ସଞ୍ଜୁଆପବନ ସହିତ ମିତ ବସିବାକୁ । ତା' ଖେଳରେ ସାମିଲ୍ ହେବାକୁ ।

ସେଦିନ ବି ସେମିତି ସଞ୍ଜୁଆପବନକୁ ଭେଟିବାକୁ ଆସି, ଭେଟ ହୋଇଯାଇଥିଲା ରଞ୍ଜୟ ସାର୍‌ଙ୍କ ସହିତ ।

ସବୁଦିନ ଭଳି ସାର୍ ବୋଧହୁଏ ସାନ୍ଧ୍ୟଭ୍ରମଣରେ ବାହାରିଥିଲେ ।

ଦୂରରୁ ଗହଳି ଭିତରୁ ହଠାତ୍ ଚିହ୍ନାଚିହ୍ନା ମୁହଁଟିଏ ନଜରରେ ପଡ଼ିଲା । ସ୍ପଷ୍ଟ ଭାବେ ଯଦିଓ ଚିହ୍ନି ହେଉନଥିଲା । ନିକଟତର ହେବାରୁ ଚିହ୍ନିପାରିଲା ଦେବଯାନୀ- ରଂଜୟ ସାର୍ । ଦୃଷ୍ଟି ସ୍ଥିର ହେଲା । ସାର୍‌ଙ୍କ ଚାଲିବା ଧିମେଇ ଗଲା । ଆମକୁ ଦେଖିପାରିଛନ୍ତି ସଙ୍କେତରେ ଜଣେଇଦେଲେ ।

ତରବର ହୋଇ ଓହ୍ଲେଇଗଲା ଦେବଯାନୀ ଅତନୁଙ୍କ ସହିତ । ଦୁହେଁ ପ୍ରଣାମ ଜଣେଇଲେ ।

'ଡାକ୍ତର ଅତନୁ ! ଠିକ୍ ଚିହ୍ନିପାରିଛି ନା ?' ମୁହଁରେ ସେଇ ପରିଚିତ ହସର ଶୁଭେଚ୍ଛା । ଯା ହେଉ ଆଜି ସାକ୍ଷାତ୍ ହେଇଗଲା ଆପଣଙ୍କ ସହିତ । ସୁଖର କଥା, ଘର ଭିତରେ ପାଦ ରଖୁରଖୁ କହିଲେ ରଞ୍ଜୟ ସାର୍ ଅତନୁଙ୍କ ଉଦ୍ଦେଶ୍ୟରେ । 'ଆପଣଙ୍କ ସୁଖ୍ୟାତି ଶୁଣିଛି ଡାକ୍ତର ଶ୍ରୀଜୟ ପାଖରୁ । ଶ୍ରୀଜୟ ମୋର ଛାତ୍ର, ଦେବଯାନୀର ବନ୍ଧୁ- ଦୁହେଁ ଏକା ଗାଁ'ର- ମୁଁ ମଧ୍ୟ ସେଠା କଲେଜରେ ଅଧ୍ୟାପକ ଥିଲାବେଳୁ ପରିଚୟ ।' ପରିଚୟର କୌଣସି ଗୌରଚନ୍ଦ୍ରିକା ନଥିଲା, ଅଥଚ ପ୍ରଗଳ୍‌ଭତା ଥିଲା ଉଲ୍ଲାସରେ । ଅନେକ ଦିନପରେ ଆପଣାଜନଙ୍କୁ ଭେଟିଲେ ଯେମିତି ଜୁଆର ଉଠେ ଆବେଗରେ ।

'ମୋ ସହିତ ଶ୍ରୀଜୟ କାମ କରିଛି । କିଛିଦିନ ଏକାଠି ଥିଲୁ ଆମେ । ଶ୍ରୀଜୟ ଜଣେ ଦକ୍ଷ ପାଥୋଲଜିଷ୍ଟ' ନମ୍ର ଭାବରେ କହିଲେ ଅତନୁ । 'ମୁଁ ତାକୁ ଖୁବ୍ ଲାଇକ୍ କରେ । ତା' ଉପରେ ଜଣେ ନିର୍ଦ୍ୱନ୍ଦ୍ୱରେ ଭରସା କରିପାରେ । ଖୁବ୍ ଭଲ ମଣିଷଟିଏ ।

'ସେକଥା ମୁଁ ବି ଅନୁଭବ କରିଛି । ସେ ଏଠିକୁ ଆସିଲାଦିନୁ ମୋର ଏବଂ ମୋ ସ୍ତ୍ରୀଙ୍କର ବ୍ଲଡ୍‌ସୁଗାର ଆଦି ଯାବତୀୟ ପରୀକ୍ଷା ତାରି ପାଖରେ କରାଏ । ବିଗତ କିଛି ବର୍ଷ ହେଲା ମୋ ସ୍ତ୍ରୀ ଡାଇବେଟିସ୍ ଏବଂ ଆର୍ଥାରାଇଟିସ୍ ରୋଗରେ ପୀଡ଼ିତ । ତେଣୁ ତା'ର ରୁଟିନ୍ ଚେକ୍‌ଅପ୍ ଦରକାର ହୁଏ । ଶ୍ରୀଜୟ ଆସିଲାପରେ ମୁଁ ନିଶ୍ଚିତ ହେଇଯାଇଛି । ସେ ଖୁବ୍ ପରଫେକ୍ଟ । ସ୍ୱସ୍ତିର ନିଃଶ୍ୱାସ ନେଲେ ସାର୍, ସୋଫାରେ ଆଉଜିପଡ଼ି । ଯାହେଉ ଖୁବ୍ ଖୁସି ଲାଗୁଛି ଆପଣଙ୍କ ସହିତ ଆଳାପ କରି । ଲାଗୁଛି, ଯେମିତି ପୁରୁଣା ଦିନସବୁ ଫେରିଆସିଛି । ଇଏ ଗୋଟାଏ ପ୍ରକାର ଭିନ୍ନ ଅନୁଭବ'- କଥାରେ ନିଛକ ଆତ୍ମୀୟପଣ ପ୍ରକାଶ ପାଉଥିଲା- ସତେଯେମିତି ନିଜ ମଣିଷମାନଙ୍କ ଗହଣରେ ଥାଇ ନିଜକୁ ଦମ୍ଭ, ସୁରକ୍ଷିତ ମନେ କରୁଛନ୍ତି ।

ଅତନୁ ସ୍ୱାସ୍ଥ୍ୟ ସଂପର୍କରେ କିଛି ଆଲୋଚନା କରିଥିଲେ ସାର୍‌ଙ୍କ ସହିତ । ସେ ଉଠିଯାଇଥିଲା କଫି ତିଆରି କରିବା ପାଇଁ ।

କଫି ସହିତ କିଛି ମିଠା ଓ ଫ୍ରୁଟ୍‌ସ ଆଣି ସେଣ୍ଟରଫିସ୍ ଉପରେ ଥୋଇଲା ଦେବଯାନୀ । ସାର୍ କେବଳ କଫି କପ୍‌ଟିକୁ ଉଠେଇଲେ । 'ଆଜିକାଲି ମୁଁ ଖାଦ୍ୟ ଓ ଖାଇବା ନେଇ ଟିକିଏ ସଚେତନ ହୋଇଯାଇଛି । ନିଜ ସ୍ୱାସ୍ଥ୍ୟକୁ ଜଗିବାକୁ ପଡୁଛି । କାରଣ ମୋତେ ସୁସ୍ଥ ରହିବାକୁ ହିଁ ପଡ଼ିବ, ବିଶେଷ କରି ମୋ' ସ୍ତ୍ରୀଙ୍କ ପାଇଁ, ଟିକିଏ ହସିଲେ ସାର୍ । ଦେବଯାନୀ ଅନୁରୋଧ କଲା, 'ଫ୍ରୁଟ୍‌ସ୍ ଟିକିଏ ନିଅନ୍ତୁ ନା !' ଅତନୁ କହିଲେ, ଗୋଟାଏ ମିଠା ନେଲେ କିଛି ବି ଅସୁବିଧା ହେବନି । ବ୍ଲଡ୍ ସୁଗାର ଆପଣଙ୍କର କଣ୍ଟ୍ରୋଲରେ ଅଛି, ପ୍ଲିଜ୍....' ମିଠା ପ୍ଲେଟ୍ ନିଜେ ବଢ଼େଇ ଦେଇଥିଲେ ଅତନୁ ସାର୍‌ଙ୍କ ଆଡ଼କୁ ।

ଠିକ୍ ଅଛି ଆପଣ କହୁଛନ୍ତି ଯେତେବେଳେ ନେଉଛି ଗୋଟିଏ । ହେଲେ ମୋର ଗୋଟିଏ ଅଭିଯୋଗ ଅଛି ଆପଣଙ୍କ ପାଖରେ ।

'ମୋ' ପାଖରେ ଅଭିଯୋଗ !'– ଅତନୁଙ୍କ ଆଖିରେ ବିସ୍ମୟ ଫୁଟି ଉଠିଲା ।

'ହଁ, ଦେବଯାନୀର ସ୍ୱାସ୍ଥ୍ୟ ନେଇ....' ଆଖିରେ ହସର ଝଲକ ଝଲସି ଉଠିଥିଲା ସାର୍‌ଙ୍କର । ଅତନୁ ଚକିତ ହେଲେ ।

'ଆପଣ ତା'ର ପିଲାଦିନର ଚେହେରା ଦେଖିନାହାନ୍ତି । ମୁଁ ଦେଖିଛି । ଅନ୍ୟମାନଙ୍କଠାରୁ ବାରି ହେଇଗଲା ଭଳି । ଅଥଚ ଏବେ ଦେଖୁଛି ସେଇ ସ୍ୱାସ୍ଥ୍ୟ ଆଉ ନାହିଁ । ଜଣେ ଡାକ୍ତରଙ୍କ ପତ୍ନୀ ହିସାବରେ ତା'ର ସ୍ୱାସ୍ଥ୍ୟର ଏଭଳି ଅବନତି ତ ମୁଁ ଆଶା କରିନଥିଲି । ମୁଁ ଖୁବ୍ ହତାଶ ହୋଇଛି । ଏଇ ସ୍ୱାସ୍ଥ୍ୟ ନେଇ ସେ ଘର ବାହାର କେମିତି ସମ୍ଭାଳୁଛି ମୁଁ ତ ବିଶ୍ୱାସ କରିପାରୁନି । ଦେବଯାନୀ ଖୁବ୍ ଭଲ ଛାତ୍ରୀ– ତା'ର ଅନେକ କିଛି କରିବାର ଅଛି । ଅଥଚ ଏଇ ସ୍ୱାସ୍ଥ୍ୟ ନେଇ ସେ କ'ଣ କରିବ ? ତା ସ୍ୱାସ୍ଥ୍ୟ ସମ୍ପର୍କରେ କିଛି ଯତ୍ନ ନେଇନାହାନ୍ତି ଆପଣ ।'

ସିଧାସଳଖ ଅଭିଯୋଗ । ଅତନୁ ବୋଧହୁଏ ଟିକିଏ ଅପ୍ରସ୍ତୁତ ବୋଧ କରିଥିଲେ ଏବଂ ଖୁସି ବି ହେଇଥିଲେ । ତେବେ କ'ଣ କିମିତି ଉତ୍ତର ଦେବେ ଭାବିନପାରି କହିଲେ, 'ମୁଁ ଦୁଃଖିତ ସାର୍ ! କ'ଣ ଆଉ କରିପାରିବି ତା' ପାଇଁ ? ମୁଁ ସବୁବେଳେ ବି ତା' ପାଖରେ ନାହିଁ କହିବାକୁ । ସେ ତ ନିଜେ ସମସ୍ତଙ୍କ ପାଇଁ କରୁଛି । ସବୁ ଜାଣିଛି । କ'ଣ ଖାଇବ, କ'ଣ କରିବ, କେତେ ପରିଶ୍ରମ କରିବ– ସେ ନିଜେ ଭାବିବ । କେହି ନାହାଁ ଆମ ପାଖରେ । ଅବଶ୍ୟ ଏକଥା ସ୍ୱୀକାର କରୁଛି ଯେ, ଆମ ରକ୍ଷଣଶୀଳ ପରିବାରରେ ବୋହୂପଣର ଚେହେରାଟା କିଛି ସ୍ୱତନ୍ତ୍ର । ବାପା ବୋଉ ଥିଲାବେଳେ ସେମାନେ କିଛି ଆଶା କରୁଥିଲେ ତାଠୁ । ଦେବଯାନୀ ବି ସେହି ଦୃଷ୍ଟିରୁ ତାଙ୍କୁ ହତାଶ କରିନି । ପ୍ରଥମ ପ୍ରଥମ ତାକୁ ଖୁବ୍ କଷ୍ଟ ସ୍ୱୀକାର କରିବାକୁ ପଡ଼ିଛି । କଲେଜ ଓ ଘର – ଉଭୟକୁ ସମ୍ଭାଳିବାକୁ ଯାଇ ନିଶ୍ଚୟ ନିଜ ସ୍ୱାସ୍ଥ୍ୟର ଯତ୍ନ ନେଇନି । ଆପଣ ବି ଜାଣିଥିବେ ଆମ ପାରିବାରିକ ପ୍ରେକ୍ଷାପଟରେ ପୁରୁଷ,

ବିଶେଷକରି ପୁଅମାନଙ୍କର ଭୂମିକା କ'ଣ ? ଅତନୁଙ୍କ କଣ୍ଠରେ କିଛିଟା ଅସହାୟତା ଫୁଟି ଉଠିଥିଲା ନିଶ୍ଚୟ ।

ଏବଂ ଅତନୁଙ୍କର ଏଇ ସ୍ପଷ୍ଟୀକରଣରେ ସାର୍ କେତେମାତ୍ରରେ ପରିତୃପ୍ତ ହୋଇଥିବେ ସେ ହିଁ ଜାଣିଥିବେ । ତେବେ ଅତନୁଙ୍କୁ ସମର୍ଥନ କରି କହିଲେ, 'ଆମ ପୁରୀର ପରମ୍ପରା, ଚଳଣି ସମସ୍ତଙ୍କଠାରୁ ସ୍ୱତନ୍ତ୍ର, ଠିକ୍ କଥା । ଅବଶ୍ୟ ଆମ ଜଗନ୍ନାଥ ସଂସ୍କୃତି ଖୁବ୍ ଉଦାର ।' କହିଲାବେଳେ ସାର୍‌ଙ୍କ ଛାତି ସ୍ୱତଃ ସ୍ଫୀତ ହୋଇ ଉଠିଥିଲା ଗର୍ବରେ ।

ଡ୍ରଇଁରୁମ୍ ଭିତରୁ ବଡ଼ଦାଣ୍ଡର ବୈଚିତ୍ର୍ୟକୁ ଲକ୍ଷ୍ୟ କରି ସେ ହଠାତ୍ ଭାବବିହ୍ୱଳ ହୋଇ କହିଲେ, 'ତମେ କିନ୍ତୁ ଚମତ୍କାର ଜାଗାରେ ଘର କରିଛ ଦେବଯାନୀ । ଜଗନ୍ନାଥପ୍ରାଣ ମଣିଷ ପାଇଁ ଏହାଠୁ ବଳି ଶ୍ରେଷ୍ଠ ସ୍ଥାନ କାହିଁ ? ଏଇ ଦାଣ୍ଡର ଧୂଳି ତ ମୋକ୍ଷର ପ୍ରତୀକ, ସମସ୍ତଙ୍କର କାମ୍ୟ । ଗୁଡ୍ ଚଏସ୍ । ପ୍ରଶଂସାପୂର୍ଣ୍ଣ ଦୃଷ୍ଟିରେ ଚାହିଁଲେ ସାର୍ ଅତନୁଙ୍କୁ ।

ଡାକ୍ତର ଅତନୁଙ୍କ ପାଇଁ ଦାଣ୍ଡର ଧୂଳି ଏତେ ମହତ୍ତ୍ୱ ରଖୁନଥିବ ହୁଏତ । ଆତ୍ମାର ଗତିମୁକ୍ତି ଅପେକ୍ଷା ଜୀବାଣୁ ସଂକ୍ରମଣର ଭୟଙ୍କର ରୂପ ତାଙ୍କ ଯୁକ୍ତିବାଦୀ ମନକୁ ଆଚ୍ଛନ୍ନ କରି ପକେଇଥିବ- ତଥାପି ଆବେଗକୁ ଚାପି ନପାରି କହିଲେ- 'ଆଉ ଯାହା ହେଉ କି ନ ହେଉ ସ୍ୱର୍ଗଦ୍ୱାରକୁ ତ ସିଧା ରାସ୍ତା ବାସ୍ । ମଣିଷର ଶେଷ ଆଶ୍ରୟ । ସମୟ ତ ସରିଆସୁଛି- ଅନେକ ବୁଲିଲୁ, ଅନେକ ଦେଖିଲୁ, ଲାଗିଲା, କୋଉଥିରେ କିଛି ମାନେ ନାହିଁ । ପାଇବା ନ ପାଇବା ଏକାକଥା । ଶେଷରେ ତ ସବୁ ଶୂନ୍ ନା ! ତା'ଛଡ଼ା ଏଇଟା ତ ଆମ ପୂର୍ବପୁରୁଷଙ୍କ ଭିଟାମାଟି । ଏଇଠିକି ଆସିବା ପାଇଁ ଦେବଯାନୀ ହିଁ ଚାହିଁଲା ।

'ଖୁବ୍ ଭଲ କରିଛନ୍ତି ଡାକ୍ତର । ଏଠି ସବୁ ଅଛି । ସମୁଦ୍ର ଅଛି । ବଡ଼ଦାଣ୍ଡ, ବଡ଼ଠାକୁର ଅଛନ୍ତି, ଶ୍ରୀମନ୍ଦିର ଅଛି –ଏ ସମସ୍ତେ ଜୀବନର ବିଶାଳତା, ଅନନ୍ତତ୍ୱ ଆଉ ବ୍ୟାପ୍ତି ଆଡ଼କୁ ସଙ୍କେତ କରନ୍ତି । ସାନପଣର ଭାବନା ନାହିଁ । ଆପଣ ଥରେ ଓହ୍ଲେଇ ଆସନ୍ତୁନା, ନିଜ ପରିଚୟର ଖୋଳକୁ ଉତାରି ଦେଇ ଅନୁଭବ କରିବେ ଏକଥା, ଗୋଟିଏ ଭିନ୍ନ ଉପଲବ୍ଧି ହେବ ନିଜ ଭିତରେ । ଅତନୁଙ୍କ ଉପରୁ ଦୃଷ୍ଟି ଓହ୍ଲେଇ ଆସି ଦେବଯାନୀ ଉପରେ ସ୍ଥିର ହେଲା – ପଚାରିଲେ, ମନ୍ଦିର ଯାଉଛନା ଦେବଯାନୀ ?

'ଯାଏ । ମଝିରେ ମଝିରେ ଜଞ୍ଜାଳରୁ ମୁକ୍ତି ମିଳିଲେ ଅଥବା ନିଜକୁ ଅଥୟ ଲାଗିଲେ । ନିତି ଯାଇପାରେନା ।'

'ଯାଅ । ଯିବାକୁ ଚେଷ୍ଟା କର । ସମୁଦ୍ରକୂଳକୁ ବି ଯାଅ । ଭଲ ଲାଗିବ । ମନରେ ପ୍ରଫୁଲ୍ଲତା ଆସିବ । ସମୁଦ୍ରର ନୀଳ ଜଳରାଶି ଉପରେ ସେଇ ଚକାଡୋଳାକୁ କଳ୍ପନା କରି ଅନୁଭବ କର କି ଚମତ୍କାର ଉପଲବ୍ଧି ସତରେ । ସବୁ ଖର୍ବତ୍ୱ ଦୂର ହୋଇଯିବ । ମୋତେ ଲାଗେ, ଆମ ଦର୍ଶନର ଅୟମାରମ୍ଭ ତ ଏଇଠୁ । ଅବଶ୍ୟ ମୋ' ଅପେକ୍ଷା ତୁମେ ଅଧିକ କହିପାରିବ – ଜଗନ୍ନାଥଙ୍କ ଉପରେ କାମ କରିଛ ତ ।'

'ମୁଁ ପ୍ରତ୍ୟେକ ଦିନ ମୋ ସ୍ତ୍ରୀଙ୍କୁ ସମୁଦ୍ରକୂଳକୁ ନେଇ ଯାଉଥିଲି ସୂର୍ଯ୍ୟୋଦୟ ଦେଖିବାକୁ । ଏବେ ଆଉ ସମ୍ଭବ ହେଉନି । ସେ ରିକ୍ସାରେ ଉଠିପାରୁ ନାହାନ୍ତି । ମୋତେ କିନ୍ତୁ ଦିନରେ ଥରେ ବଡ଼ଦାଣ୍ଡର ପବନ ନ ଖାଇଲେ ତୃପ୍ତି ଲାଗେନା – ଏଇ ଲୋଭ ଟିକକ ପାଇଁ ମୁଁ କୁଆଡ଼େ ଯାଏନା ।'

ସାର୍ କ୍ଲାସରୁମ୍‌ରେ ପଢ଼େଇଲା ଭଳି ଅନର୍ଗଳ କହିଯାଉଥାନ୍ତି । ଆମେ ଦୁହେଁ ଚୁପ୍‌ଚାପ୍ ବସି ଶୁଣୁ । ଖୁବ୍ ଭଲ ଲାଗେ । ତାଙ୍କର ଆପଣାପଣ, ସସ୍ନେହ ତାଡ଼ନା, ସବୁକିଛି ଭଲଲାଗେ ।

ସାର୍ ଗପନ୍ତି । ଗପିବାକୁ ଭଲପାଆନ୍ତି । ବିସ୍‌ମାର୍କଠାରୁ ଓବାମା, ଫରାସୀ ବିପ୍ଳବରୁ ସ୍ୱଦେଶୀ ଆନ୍ଦୋଳନ, ରାଜତନ୍ତ୍ରରୁ ମାଓବାଦ- ଇତିହାସର ପ୍ରତିଟି ପୃଷ୍ଠା ଆଲୋଚନାର ପରିସରକୁ ପଶିଆସେ । ତାଙ୍କ ଦୃଷ୍ଟିରେ ଇତିହାସ ହିଁ ମଣିଷ ଭିତରେ ଅତୀତ ପାଇଁ ଅନୁରାଗ ସୃଷ୍ଟି କରିପାରେ । ଯାହା ତା'ର ଚରିତ୍ର ଏବଂ ଆତ୍ମପ୍ରତ୍ୟୟକୁ ସୁଦୃଢ଼ କରିବାରେ ସାହାଯ୍ୟ କରେ । ଦେଶପ୍ରେମରେ ଉଦ୍‌ବୁଦ୍ଧ କରାଏ । ହେଲେ ଆଜିର ଯୁବପିଢ଼ି ଇତିହାସକୁ ଗ୍ରହଣ କରିପାରୁନାହାନ୍ତି । ଅବସୋସର ଦୀର୍ଘଶ୍ୱାସ ଟାଣି ଆଲୋଚନାକୁ ଶେଷସ୍ପର୍ଶ ଦିଅନ୍ତି - ଯଦି ଏମାନେ ଇତିହାସକୁ ପୁଙ୍ଖାନୁପୁଙ୍ଖ ଭାବେ ଆଲୋଚନା କରନ୍ତେ, ବୁଝନ୍ତେ ପୃଥିବୀର ଶାନ୍ତି ପ୍ରତିଷ୍ଠାପାଇଁ, ମାନବ ଜାତିର କଲ୍ୟାଣ ପାଇଁ କେତେ ମହାମାନବ, ବୀରପୁରୁଷ ଜୀବନକୁ ଉତ୍ସର୍ଗ କରିଦେଇଛନ୍ତି । ଶ୍ରଦ୍ଧା ତ ଆସନ୍ତା ମନରେ । କମିଟ୍‌ମେଣ୍ଟ ସୃଷ୍ଟି ହୁଅନ୍ତା ନିଜ ଭିତରେ । ନକ୍ସଲ କି ମାଓବାଦୀ ନହୋଇ, ଦେଶପ୍ରତି ଅନୁରକ୍ତ ହୁଅନ୍ତେ । ମଣିଷ ହୁଅନ୍ତେ । ନା.... ମିସ୍‌ଗାଇଡ଼େଡ୍ ୟୁଥ୍ ଅତୀତକୁ ସ୍ୱୀକାର କରିବାକୁ ଚାହାଁନ୍ତାନି । ଉତ୍ତରପିଢ଼ି ପାଇଁ ହତାଶା ବ୍ୟକ୍ତ କରି ଉଠନ୍ତି ସାର୍ ସେଦିନ ପାଇଁ, ଆଉ ଦିନେ ଆସିବିର ପ୍ରତିଶ୍ରୁତି ଭିତରେ ଏବଂ ନିମନ୍ତ୍ରଣ ଜଣାନ୍ତି ତାଙ୍କ ଘରକୁ 'କେତେବେଳେ ଆସ ଦେବଯାନୀ ଡାକ୍ତରଙ୍କ ସହିତ, ମୋ' ସ୍ତ୍ରୀ ଖୁବ୍ ଖୁସି ହେବ । ସିଏ ତ କୁଆଡ଼େ ଯାଇଆସି ପାରନ୍ତିନି- ପିଲାଏ ବି ଦୂରରେ, ବିଦେଶରେ । ଆମ ସହିତ କିଛି ମୁହୂର୍ତ୍ତ କଟେଇଲେ ଖୁସିହେବୁ ।'

ସାର୍ ଗଲାପରେ ଟିପ୍ପଣୀ କରନ୍ତି ଅତନୁ- 'ମାନିବାକୁ ହେବ ଦେବଯାନୀ ତମ ଗୁରୁମାନଙ୍କୁ । ସେମାନେ କେବଳ ତମର ଶିକ୍ଷକ ନୁହନ୍ତି, ଅଭିଭାବକ ମଧ୍ୟ । ମୋ' ବାପା ବୋଉ କି ମୋ ଶାଶୂ ଶଶୁରଙ୍କଠାରୁ ବି କେବେ ତମର ଏତେ ପ୍ରଶଂସା କି ଅଭିଯୋଗ, ଯାହା କୁହ- ମୁଁ ଶୁଣିନି ତମ ପାଇଁ । କେତେ ଆତ୍ମୀୟତା ଏମାନଙ୍କ ପାଖରେ ! ଏମାନେ ଦୁର୍ଲଭ ମଣିଷ- ପ୍ରାତଃସ୍ମରଣୀୟ ବ୍ୟକ୍ତିତ୍ୱ । କି ମହାନୁଭବତା । ଅଧିକାରପଣର ଏଇ ଦମ୍ଭ କେବଳ ମଣିଷଗଢ଼ାଳିଙ୍କଠାରେ ହିଁ ସମ୍ଭବ । ଅତନୁ ହାତଯୋଡ଼ିଲେ ସେଇ ମହାନୁଭବଙ୍କ ଉଦ୍ଦେଶ୍ୟରେ ।

ତା'ପରେ ଅନେକଥର ଆସିଛନ୍ତି ରଞ୍ଜୟ ସାର୍ ଘରକୁ ସେଇ ସାନ୍ଧ୍ୟଭ୍ରମଣ ଅବସରରେ । କେବେ ସ୍ୱାସ୍ଥ୍ୟ ସମ୍ପର୍କରେ ପରାମର୍ଶ କରିବାକୁ କି ଡାକ୍ତରୀ ରିପୋର୍ଟ ନେଇ

ବିଚାରବିମର୍ଶ କରିବାକୁ । ଦୁଆର ପାଖରେ ପହଞ୍ଚୁ ପହଞ୍ଚୁ ସେଇ ଏକାପ୍ରକାର ଉଚ୍ଚାରଣ । ଏକାପ୍ରକାର ବ୍ୟସ୍ତତା କେମିତି ଅଛୁ ଦେବଯାନୀ, ସ୍ୱାସ୍ଥ୍ୟରେ ତ କିଛି ଉନ୍ନତି ଦେଖୁନି ? କ'ଣ ହୋଇଛି ? ଥଣ୍ଡା ଜ୍ୱର ? ନା ବ୍ରୋଙ୍କାଇଟିସ୍ ? ଔଷଧ ଖାଉଛ ? ଅତନୁ ଥିଲେ ଆରୋପଟା ଯାଏ ତାଙ୍କ ଆଡ଼କୁ । ସେଇ ଅମ୍ଳାନ ହସ ଖଣ୍ଡିକ ଲାଖି ରହିଥାଏ ମୁହଁରେ । ଚିରାଚରିତ ଢଙ୍ଗରେ ସୋଫାରେ ବସୁବସୁ କୁହନ୍ତି- 'ତମକୁ କିଛି ଡିଷ୍ଟର୍ବ କରୁନି ତ ଦେବଯାନୀ ?'

ନହେଲେ, ସେଇ ଇତିହାସ ଚର୍ଚ୍ଚା । ଅତୀତର ହେଉ କି ବର୍ତ୍ତମାନର ଚଳନ୍ତି ଇତିହାସ । ସାହିତ୍ୟ ବିଷୟରେ କୌଣସ ଚର୍ଚ୍ଚା କରନ୍ତିନି । ବରଂ ଇତିହାସର ରାଜରାସ୍ତାକୁ ଦେବଯାନୀକୁ ଟାଣିନେବା ପାଇଁ ପ୍ରୟାସ କରନ୍ତି- 'କିଛି କାମ କର ଇତିହାସ ପାଇଁ ଦେବଯାନୀ । ଓଡ଼ିଶାର ଗୌରବମୟ ଗଜପତି ବଂଶ ସମ୍ପର୍କରେ ଗବେଷଣାତ୍ମକ ପେପର ପ୍ରଡ୍ୟୁସ୍ କରିବା ମୋର ଅନେକ ଦିନର ଇଚ୍ଛା । ମୁଁ ଦିଗ୍‌ଦର୍ଶନ ଦେବି, ତୁମେ କର କାମ ।'

ହସେ ଦେବଯାନୀ । ସିଧାସଳଖ ନ କହି ବୁଲେଇ ବଙ୍କେଇ କୁହେ- 'ଇତିହାସ ସହିତ ମୋର କେତେ ବା ସମ୍ପର୍କ! ସାହିତ୍ୟ ଅଧ୍ୟାପନା କରୁକରୁ, ଅବ୍ୟାହତି ମିଳିଲେ କିଛିଟା ଲେଖାଲେଖି ସିନା କରେ । ଇତିହାସକୁ ତ ସେ ଅନେକଦିନରୁ ଛାଡ଼ିଆସିଛି । ଏ ବୟସରେ ଆଉ ସମ୍ଭବ ନୁହେଁ ଇତିହାସ ଭିତରକୁ ପଶିବା ।'

'କିଛି ଅସମ୍ଭବ ନୁହେଁ ତୁମ ପାଇଁ । ତମେ ଚାହିଁଲେ ପାରିବ । ଥରେ ଚେଷ୍ଟା କରି ଦେଖ- ଆଗ କିଛି ତଥ୍ୟ ସଂଗ୍ରହ କର- ମନ ବଳେ ପଶିବ ତା' ଭିତରେ । ସାହିତ୍ୟ ଆଉ ଇତିହାସ ଭିତରେ କେତେ ତଫାତ୍ ?' ଏଇ ପ୍ରୟାସ ଅନେକ ଦିନ ପର୍ଯ୍ୟନ୍ତ ସାର୍ ଜାରି ରଖିଥିଲେ । ସେ ଯେ' ଇତିହାସ ପାଇଁ ଅଯୋଗ୍ୟ, ସାର୍ ମାନିନେବାକୁ ନାରାଜ । ଅତନୁ କୁହନ୍ତି, 'ବାପା ମା'ଙ୍କ ଆଖିରେ ତାଙ୍କ ପିଲାମାନେ ସବୁଠୁ ଭଲ, ସୁନ୍ଦର ଓ ଗୁଣର । ଠିକ୍ ସେଇଭଳି ତମେ ତମ ଗୁରୁଙ୍କ ଆଖିରେ ।' ଦେବଯାନୀ କୁହେ- ସିଏ ମୋର ସୌଭାଗ୍ୟ, ସେମାନଙ୍କ ବିଶ୍ୱାସଭାଜନ ହୋଇପାରିଛି । ହେଲେ, ଦୁଃଖର କଥା, କାହା ବିଶ୍ୱାସର ପ୍ରତିଦାନ ଦେଇପାରିନି, ନିଜ ସ୍ୱପ୍ନକୁ ବି ସଫଳ କରିପାରିନି ।

ସାର୍ ଆସିଲେ ଏଣିକି ଆଉ ନିଜକଥା କିଛି କୁହନ୍ତିନି । ନିଜ ସ୍ୱାସ୍ଥ୍ୟ ସମ୍ପର୍କରେ ଆଲୋଚନା ନକରି ସ୍ତ୍ରୀଙ୍କ ସ୍ୱାସ୍ଥ୍ୟ ନେଇ ବ୍ୟସ୍ତତା ପ୍ରକାଶ କରନ୍ତି । କୁହନ୍ତି, ନିଜ ଯତ୍ନ ସେ ନେଲେନି ବୋଲି ଆଜି ଅସମୟରେ ତାଙ୍କୁ ଏଇ ଶାରୀରିକ ଯନ୍ତ୍ରଣା ଭୋଗ କରିବାକୁ ହେଉଛି । ମୋର ବି ଭୁଲ୍ ତାଙ୍କ ଉପରେ ସବୁକିଛି ଛାଡ଼ିଦେଇ ମୁଁ ନିଶ୍ଚିତ ହୋଇଗଲି । ସେଇଥିପାଇଁ କହୁଛି ତମକୁ...

ଦେବଯାନୀକୁ ଲକ୍ଷ୍ୟ କରି କୁହନ୍ତି, 'ତମେ କ'ଣ କିଛି ଗଭୀର ଭାବେ ଚିନ୍ତା କରୁଛ

କି ଦେବଯାନୀ ? ନା, ମୋତେ କିଛି ଭାବନି । ସବୁବେଳେ ନିଜକୁ ବ୍ୟସ୍ତ ରଖ କିଛି ନା କିଛି କାମରେ । ମଣିଷ ହିଁ ତା'ର ଜୀବନଧାରଣ ପ୍ରଣାଳୀର ସ୍ରଷ୍ଟା । ତମ ପସନ୍ଦର କାମ ତମ ଦେହ ମନକୁ ସୁସ୍ଥ ରଖିବ । ମୋତେ ଦେଖ... ଏବେବି ମୁଁ ସକ୍ରିୟ ଅଛି । ଅତନୁଙ୍କୁ ଆଦେଶ ଦେବା କଣ୍ଠରେ କୁହନ୍ତି, 'ଆପଣ ତାଙ୍କୁ କିଛି ନା କିଛି ବିଶେଷ ରୋଷେଇ ପାଇଁ ବରାଦ କରୁଥା'ନ୍ତୁ । ଏକୁଟିଆ ବୋଲି କାମ ନକଲେ ମାନ୍ଦା ହୋଇଯିବ ଜୀବନଟା । ଆକୃଷ୍ଟ ରହିବା ନିହାତି ଆବଶ୍ୟକ । ଆମକୁ ଦେଖନ୍ତୁ- ପିଲାଏ ବିଦେଶରେ ନିଜ ଜୀବନ ନେଇ ବ୍ୟସ୍ତ । ସେମାନଙ୍କୁ ସ୍ୱାର୍ଥପର ଭଳି ନିଜ ସୁଖସୁବିଧା ପାଇଁ ଏଠି ବାନ୍ଧିରଖିବା ଉଚିତ ମନେହେଲାନି ମୋର । ଅର୍ଜିତ ଜ୍ଞାନକୁ ସେମାନେ କାମରେ ଲଗାନ୍ତୁ । ମଣିଷଜାତି ଉପକୃତ ହେଉ । ତେଣୁ ଚାହିଁଲେ ବି ସେମାନେ ଆମକୁ ସାହାଯ୍ୟ କରିପାରିବେନି ଆବଶ୍ୟକ ବେଳେ । ଆମକୁ ହିଁ ଆମ ନିଜ ଯତ୍ନ ନେବାକୁ ହେବ । ସୁସ୍ଥ ସକ୍ରିୟ ରଖିବାକୁ ହେବ ନିଜକୁ । ସେମାନେ ଚାହାନ୍ତି ବି ଏଇୟା । ତାହାଲେ ଯାଇ ସେମାନେ ନିଶ୍ଚିତ ହେବେ । ସେମାନଙ୍କ ପାଇଁ ଏଇ ସମୟଟା ବେଶ୍ ଗୁରୁତ୍ୱପୂର୍ଣ୍ଣ । ଆଇଡେଣ୍ଟିଟି ତିଆରି କରିବାର ବେଳ । ଅଥଚ ଆମ ପାଇଁ ସେଇ ଆଇଡେଣ୍ଟିଟି କାଢ଼ି ଥୋଇବା ବେଳ, ନହେଲେ ବଞ୍ଚିବା ଅସହଜ ଲାଗିବ । ନୁହେଁ କି ?

ସାର୍ ହସନ୍ତି ପରିତୃପ୍ତିର ହସ । ଏଇ ତୃପ୍ତି ତାଙ୍କର ସଫଳ ବାପପଣର । ପିଲାଙ୍କୁ ସେ ଯୋଗ୍ୟ କରିଛନ୍ତି- ପ୍ରତିଷ୍ଠିତ ହୋଇଛନ୍ତି ସମାଜରେ । ତେଣୁ ସେମାନଙ୍କ ସଫଳତାର କାହାଣୀ ବଖାଣିଲାବେଳେ ସେ ହୋଇଉଠନ୍ତି ଶତମୁଖ ।

ତା ସତ୍ତ୍ୱେ ସେଇ ହସ ପଛରେ କେତେ ଦୁଃଖ ରହିଛି କି ସତରେ ଆନନ୍ଦ ରହିଛି ଦେବଯାନୀ ପଢ଼ିପାରେନା, ପଢ଼ିପାରେନା ହସର ଅନ୍ତରାଳରେ ଥିବା ଅସହାୟପଣକୁ । ଅଥଚ ସବୁକ୍ଷେତ୍ରରେ ସେ ପରିପୂର୍ଣ୍ଣ । ଏକୁଟିଆରେ ଦେବଯାନୀ ଆପଣାକୁ ତୁଳନା କରେ ସେଇ ଅସହାୟତା ଆଉ ଏକଲାପଣ ସହିତ । ଭାବେ, ମଣିଷ ନିଜ ଦୁର୍ବଳତାକୁ ବାହାରେ ଦେଖେଇବାକୁ ଚାହେଁନା ବୋଲି ହିଁ ସେ- ହଜାରେ ଥର ନିଜକୁ ସବଳ ବୋଲି କୁହେ । ଏଇ ନିରୁପାୟତା ହିଁ ତା'ର ବିଡ଼ମ୍ବନା ।

ତା' ଛଡ଼ା ବର୍ତ୍ତମାନର ସମୟଟା ହିଁ କେମିତି ନିର୍ଦ୍ଦୟ । ସମସ୍ତେ ନିଜ ପାଇଁ ବ୍ୟସ୍ତ । କାହାପାଇଁ ଚିନ୍ତା କରିବାକୁ ବେଳ ନାହିଁ । ଏମିତିକି ଜନ୍ମକଲା ବାପା ମା'ଙ୍କ ପାଇଁ ମଧ । ଯଦି ବି ଅଛି, ସେସବୁ କର୍ତ୍ତବ୍ୟର ମାପରେ ମପା । ଯାନ୍ତିକ । ସେଥିରେ ଥିବା ଆପଣାପଣ କିମ୍ବା ଦରଦ କେତେ, ମାପିବା କଷ୍ଟସାଧ । ଭାବିଲେ ବିସ୍ମିତ ଲାଗେ । କିନ୍ତୁ ଏକଥା ସତ ।

ମନେପଡ଼ିଲା ଦେବଯାନୀର ମନିଷ ମହାପାତ୍ରଙ୍କ କଥା । ଆଖି ସାମନାରେ ଆଙ୍କିହୋଇଗଲା ସମ୍ବେଦନଶୀଳ ଜୀବନଚିତ୍ରଟିଏ । ତା' ଶ୍ୱଶୁର ସେତେବେଳେ ମୃତ୍ୟୁଶଯ୍ୟାରେ । ସବୁ ପୁଅଝିଅ ଅପେକ୍ଷା କରିଥାଆନ୍ତି ଡାକ୍ତରଖାନାରେ ସେଇ ଶେଷ ମୁହୂର୍ତ୍ତକୁ ।

ସେଇଠି ଦେଖାହେଇଥିଲା ମନିଷ ମହାପାତ୍ରଙ୍କ ସହିତ । ଇଞ୍ଜିନିୟର ମହାପାତ୍ର ଆମେରିକାରେ ଏକ ବିଖ୍ୟାତ କମ୍ପାନିରେ କାର୍ଯ୍ୟରତ । ସେଠାକାର ନାଗରିକ, କିନ୍ତୁ ଜନ୍ମ ଏଠି । ତାଙ୍କ ବାପା ମଧ ମୃତ୍ୟୁଶଯ୍ୟାରେ । ବାପା ଏକୁଟିଆ ରହୁଥିଲେ ନିଜ ଘରେ ଭୁବନେଶ୍ୱରରେ । ସ୍ତ୍ରୀଙ୍କର ଦେହାନ୍ତ ହେଇଯାଇଥିଲା ଅନେକଦିନରୁ । ଦେଖାଶୁଣା କରୁଥିଲେ ସମ୍ପର୍କୀୟ ଭାଇ ଜଣେ । ଶେଷ ସମୟ ଜାଣି ସେମାନେ ଖବର ଦେଇଥିଲେ ପୁଅଝିଅମାନଙ୍କୁ । ବଡ଼ପୁଅ ଓ ଝିଅ ଇଂଲଣ୍ଡରେ ସ୍ଥାୟୀ ବାସିନ୍ଦା । କାମର ଚାପ ଯୋଗୁଁ ସେମାନେ ଆସିନପାରି ସାନଭାଇ ମନିଷଙ୍କୁ ବାପାଙ୍କ ଦାୟିତ୍ୱ ଦେଇ ଆପଣା କର୍ତ୍ତବ୍ୟ ସମ୍ପନ୍ନ କରିଦେଲେ ।

ମନିଷ ମହାପାତ୍ର ମଧ ତୁରନ୍ତ ଫ୍ଲାଇଟ୍‌ରେ ଓଡ଼ିଶାରେ ପହଞ୍ଚିଲେ । ଭାବିଥିଲେ, ବାପା ନଥିବେ ହୁଏତ । ଅନ୍ତିମ କର୍ତ୍ତବ୍ୟ ସାରି ସେଦିନ ଚାରିଟାରେ ଫେରିଯିବେ କର୍ମସ୍ଥଳୀକୁ । ବିଶେଷ କିଛି ଜିନିଷ ଏମିତିକି ନିଜ ପୋଷାକପତ୍ର ବି ଆଣିନଥିଲେ ।

ଡାକ୍ତରଖାନା ଲନ୍ ଭିତରେ ସେଇ ଅନ୍ତିମ ମୁହୂର୍ତ୍ତକୁ ଅପେକ୍ଷା କରିବା ଅବସରରେ ଆଳାପ ପରିଚୟ ହେଇଥିଲା ଆମର ତାଙ୍କ ସହିତ । ମନିଷ କହିଲେ, 'ସେ ଛୁଟି ବଢ଼େଇଲେଣି ସପ୍ତାହେ ହେବ, ବାପାଙ୍କ ଅନ୍ତିମ କର୍ତ୍ତବ୍ୟ ତୁଲେଇବାକୁ । ତେଣେ କମ୍ପାନୀ ଅଯଥା ଛୁଟି ଦେବାପାଇଁ ନାରାଜ । ତା'ପାଇଁ ଆବେଗର କିଛି ମୂଲ୍ୟ ନାହିଁ– ସେ ପର୍ଯ୍ୟାପ୍ତ ଦରମା ଦେଇ ଲାଭ ଦେଖେ, ମୁନଫା ଖୋଜେ । ସେମାନଙ୍କ ପାଇଁ କାମ ଆଗ । ଅଥଚ ମନିଷ ମହାପାତ୍ର ବାପାଙ୍କୁ ଛାଡ଼ି ଯାଇ ମଧ ପାରୁନାହାନ୍ତି । ସଙ୍କଟଜନକ ପରିସ୍ଥିତି । ଯୋଜନାନୁସାରେ ମଣିଷର ଇଚ୍ଛା ସବୁ କେବେ ବି ଫଳବତୀ ହୁଏ ନାହିଁ । ପୁଣି ଜନ୍ମମୃତ୍ୟୁର ହିସାବ ତ ମଣିଷ ହାତରେ ନାହିଁ । ବ୍ୟସ୍ତ ହୋଇପଡୁଥିଲେ ମନିଷ ମହାପାତ୍ର କହିଲାବେଳକୁ ।

ଅତନୁ ଦେବଯାନୀଙ୍କର ବୁଝିବାପାଇଁ କିଛି ବାକି ନଥିଲା ପରିସ୍ଥିତି ସମ୍ପର୍କରେ । ବିଚରା ମନିଷ ମହାପାତ୍ର ଦୁହିଁଙ୍କ ପାଖରେ କମିଟେଡ୍ । ଅଥଚ ସେ କିଂକର୍ତ୍ତବ୍ୟବିମୂଢ଼ । ବାପାଙ୍କ ପାଇଁ କି ଜନ୍ମମାଟି ପାଇଁ ତାଙ୍କର କେତେ ଗଭୀର ଆକର୍ଷଣ ଥିଲା କି ନଥିଲା ସେକଥା ଜାଣିବାର ସୁଯୋଗ ତ ନଥିଲା, ତେବେ ଏଇ ଜୀବନ ପାଇଁ ବାପାଙ୍କଠାରୁ ଅନ୍ତିମ ବିଦାୟ ନେବାର ଯେଉଁ ଦାରୁଣ ବେଦନା.... ତା' ଅପେକ୍ଷା ଚାକିରିଜନିତ ବ୍ୟସ୍ତତା ତାଙ୍କୁ ବହୁପରିମାଣରେ ଆଚ୍ଛନ୍ନ କରି ରଖିଥିଲା । ସେ ଧୈର୍ଯ୍ୟହରା ହୋଇପଡୁଥିଲେ କ୍ରମଶଃ । ସେଇ ଅନ୍ତିମ ମୁହୂର୍ତ୍ତ କେବେ ଆସିଥିବ ଏବଂ ମନିଷ ମହାପାତ୍ର କେବେ ପିତୃଋଣରୁ ମୁକ୍ତ ହେଇ ଆମେରିକା ଫେରିଯାଇଥିବେ ଜାଣିବାର ବାଟ ନଥିଲା ଆଉ । ହେଲେ ଦେବଯାନୀର ଅବଚେତନରେ ଜୀବନବୋଧର ଏଇ ବିକଳଆର୍ତ୍ତ ରୂପଟି– ଛବିଭଳି ଆଙ୍କି ହେଇ ରହିଯାଇଥିଲା । ଏ ରୂପକୁ ସେ ଆଗରୁ କେବେ ଭେଟି ନଥିଲା ତ । ପରବର୍ତ୍ତୀ ସମୟମାନଙ୍କରେ ଯେତେବେଳେ ବି ସେ ଏକୁଟିଆ ବସି ଜୀବନକୁ ନିରେଖିବାକୁ ଚେଷ୍ଟା

କରିଛି ତାକୁ ହତାଶ ଲାଗିଛି । ଶୂନ୍ୟତା, ନିଃସଙ୍ଗତାର ଭଉଁରୀ ଭିତରେ ପଶି ଅଣନିଃଶ୍ୱାସୀ ହେଇ ଆତ୍ମୀୟସ୍ୱଜନଙ୍କ ଆଡ଼କୁ ହାତ ବଢ଼େଇବାକୁ ଯାଇ ହତାଶ ହେଉଥିବା ମଣିଷମାନେ ତା ଦମ୍ପଣକୁ ଦୋହଲାଇ ଦେଇଛନ୍ତି- ସେତିକିବେଳେ ମନିଷ ମହାପାତ୍ରଙ୍କ ବ୍ୟସ୍ତବିବ୍ରତ ମୁହଁ ଭାସି ଉଠିଛି ଆଖିଆଗରେ । ମନେହେଇଛି ସମ୍ପର୍କର ମାନେ କିଛି ନାହିଁ- ସବୁ ମିଛ । ନିଜ ପାଇଁ ନିଜେର ଧାରଣାଟା ଶକ୍ତ ହେଇଉଠିଛି ଚେତନମନରେ । ନିଜକୁ ଆଶ୍ୱସିବା ଛଡ଼ା ବାଟ ତ କିଛି ନାହିଁ । ବଞ୍ଚିବାକୁ ହିଁ ହେବ ।

ଅନେକ ବର୍ଷ ପରେ.... ରଞ୍ଜୟ ସାର୍‌ଙ୍କ କଥାର ନିର୍ଯାସ ଭିତରେ ସେଦିନର ଡାକ୍ତରଖାନା ଇନ୍‌ରେ ଭେଟିଥିବା ଭିନ୍ନ ଜୀବନବୋଧର ସେଇ ବାସ୍ନାକୁ ଯେମିତି ସ୍ପଷ୍ଟଭାବେ ଆଘ୍ରାଣ କରିପାରୁଥିଲା ଦେବଯାନୀ । ଉଦାସ ଲାଗିଥିଲା । ମନେହେଲା, ସତରେ ଜୀବନଟା ବଡ଼ କରୁଣ, କରୁଣତର ତାର ଅନ୍ତିମ । ତାହେଲେ କାହିଁକି ଗଢ଼ିବ ସମ୍ପର୍କର ସେତୁ ସବୁ ?

ଚେତନା ଦୋହଲି ଯାଉଥିଲା । ଆମେ ତ ଏତେ ନିର୍ମମ ନଥିଲୁ । ଏମିତି ନଥିଲା ଆମ ଚିନ୍ତାଧାରା । ଏଇ ଚିନ୍ତାଧାରା କୁଆଡୁ ଆସିଲା କେଜାଣି ? ପରିସ୍ଥିତି ସୃଷ୍ଟ ନା ଆମଦାନୀ କରା ?

ଭାବନା ଦୋଛକିରେ ହାବୁଡ଼େ । କୁହୁଡ଼ିଆ ଦିଶେ ଆଗଟା ।

ଆମେ ସମସ୍ତଙ୍କର, ସମସ୍ତେ ଆମର । ସମସ୍ତଙ୍କ ଭିତରେ ହିଁ ଆମେ ଜିଇ ଶିଖିଥିଲୁ । ଆମ ପାରବାରିକ ସମ୍ପର୍କର ବନ୍ଧନ ଖୁବ୍ ଟାଣ । ଏଠି କେହି ଅସହାୟ ମନେ କରେନି ନିଜକୁ । ଅଥଚ କୋଉ ଅଶୁଭ ଲଗ୍ନରେ କେଜାଣି ପଶ୍ଚିମା ପବନ ପଶିଆସି ଆମ ପରମ୍ପରା ସଞ୍ଚିତ ବିପୁଳ ଭାବଗତ ବୈଭବକୁ ଲୁଟି ନେଇ ଆମକୁ କେବଳ କାଙ୍ଗାଳ କରିଗଲାନି ତ, ଆମ ଚିନ୍ତାଧାରାକୁ ବିକୃତ, ନିର୍ମମ ଆଉ ଯାନ୍ତିକ କରିଦେଲା ମଧ । ଅସହାୟ ହେଇଗଲା ମଣିଷ । ଭୁଶୁଡ଼ି ପଡ଼ିଲା ଏକା ହେଇଗଲା ଆଧୁନିକ ମଣିଷ ।

ଭାବୁଭାବୁ ଦେବଯାନୀ ଭାବନାଗଳିରେ ପଶିଯାଏ ଏବଂ ଭାବେ... ଏଇ 'ଏକା' ଚେତନାଟା ଆମ ପାଇଁ ନୂଆ ନୁହେଁ କିଛି- ଏ ମାଟିର ସନାତନ ବାଣୀ ଏଇଟା । ଏକା ଆସିଛି ମଣିଷ, ଯିବ ବି ଏକା ଏକଥା ଜାଣିଛି ସେ । ଏ ଦର୍ଶନ ସହିତ ପରିଚିତ । ତା' ସତ୍ତ୍ୱେ... ଦେବଯାନୀ ଭାବେ, ଭାବନାକୁ ତରଳେଇ ତରଳେଇ । ଏ ତ ଦର୍ଶନର କଥା । ଦର୍ଶନର ଗଭୀରତା ଭିତରେ ବୁଡ଼ିବା ସାଧାରଣ ମଣିଷ ପକ୍ଷରେ ତ ସମ୍ଭବ ନୁହେଁ । କାରଣ ସେ ତାତ୍ତ୍ୱିକ ନୁହେଁ । ବ୍ୟାବହାରିକ ବେଶି ।

ତା'ର ବ୍ୟାବହାରିକ ଜୀବନ ହିଁ ସଂପାଦିଛି ଯେତେସବୁ ସୁଖଦୁଃଖ, ବର୍ଷାବସନ୍ତର ଯେତେସବୁ ଜହ୍ନରାତି, ଅସରନ୍ତି ମାୟା । ସେଇ ମାୟା ହିଁ ତ ତାକୁ ଉଚ୍ଚାଟ କରେ ବୋଲି ସେ ହସେ, ଖେଳେ, ହାରେ ଆଉ କାନ୍ଦେ । ତା ଚେତନା ଜଡ଼ିଯାଏ ଏଇ ମିଶ୍ରରାଗରେ ।

ମାୟା ହିଁ ମାୟା । ବ୍ୟାବହାରିକ ମଣିଷ କାହିଁକି ପଶିବ ମାୟାବାଦର ରହସ୍ୟମୟ ଅଦ୍‌ଭୁତ ସୁଡ଼ଙ୍ଗ ଭିତରେ ? ପରମାର୍ଥୀ ହେବାକୁ ତ ସେ ସଂସାରକୁ ଆସିନି । ଅଥଚ ଦିନ ଥିଲା, ଏଇ ଜୀବନରାଗର ଅଛିଣ୍ଡାତାନ ଆସୁନଥିଲା, ଲମ୍ବିଚାଲିଥିଲା ପରମ୍ପରା ସୂତ୍ରରେ କଣ୍ଠରୁ କଣ୍ଠ ହୋଇ । ନିନ୍ଦକ ଥିଲା ମଣିଷ । ଗୀତ ଶୁଣି ଶୁଣି ଶୋଇ ଯାଉଥିଲା । ଆଜି କିନ୍ତୁ ସମୟ ତା'ରୂପ ବଦଳେଇଛି, ତାନ ଛିଣ୍ଡିଯାଇଛି । ରାଗ ଥମିଯାଇଛି, ଜୀବନ ସଂଗୀତ ବି ବଦଳେଇ ଦେଇଛି ତା ରୂପଛନ୍ଦ । ସେ ଶ୍ରାବ୍ୟ ଲାଗୁ କି ଅଶ୍ରାବ୍ୟ । ରୁଚିକର ହେଉ କି ଅରୁଚିକର । ଘାଗଡ଼ା ହେଉ କି ବେତାଳ- ସେଇ ଛନ୍ଦକୁ ଆପଣେଇବା ବ୍ୟତିରେକେ ଗତ୍ୟନ୍ତର ନାହିଁ । ସମୟର ଏଇ ବିବର୍ତ୍ତନକୁ ସ୍ୱୀକାର ନ କରି ମଣିଷର ଚାରା କାହିଁ ?

ସେଇ ରଞ୍ଜୟ ସାର୍... ପ୍ରଫେସର ରଣ ବିଜୟ ଚୌଧୁରୀ ଆଉ ନାହାନ୍ତି । ଇତିହାସ ଚର୍ଚ୍ଚା କରୁକରୁ ନିଜେ ଇତିହାସ ପାଲଟି ଯାଇଛନ୍ତି । ଶତମୁଖ ହୋଇ 'ବର୍ତ୍ତମାନ'ର ତରଫଦାରୀ କରୁଥିବା ମଣିଷଜଣକ 'ଅତୀତ' ହେଇଯାଇଛନ୍ତି ।

ଦିନେ ଆକସ୍ମିକ ଭାବେ ଘରେ, ଆଖି ସାମନା଼ରେ ସାର୍‌ଙ୍କୁ ଦେଖି ଯେମିତି ସେ ଚକିତ ହେଇ ଯାଇଥିଲା । ଠିକ୍ ସେମିତି ଦିନେ ସକାଳୁ ସକାଳୁ ଅଭାବିତ ଭାବେ 'ସାର୍ ଚାଲିଗଲେ' ଖବରଟା ତାକୁ ସ୍ତବ୍ଧ କରିଦେଇଥିଲା ।

ପ୍ରଥମେ ତ ସେ ବିଶ୍ୱାସ କରି ପାରିଲାନି । ଇଏ କେମିତି ସମ୍ଭବ ! କିନ୍ତୁ ମହାକାଳ ପାଇଁ କିଛି ବି ଅସମ୍ଭବ ନୁହେଁ !

ସେଦିନ ଅର୍ଥାତ୍ ଯୋଉଦିନ ସାର୍ ଚାଲିଗଲେ... ଦେବଯାନୀ ଜାଣିନଥିଲା ଖବରଟା; କିନ୍ତୁ ଅତନୁଙ୍କ ସହ ତାଙ୍କ ଘରକୁ ଯାଇଥିଲା, ତାଙ୍କୁ ଟିକିଏ ଦେଖିଆସିବା ପାଇଁ । କିଛି କାରଣ ନଥିଲା ଯିବାର । ସାର୍ ଖୋଜି ନଥିଲେ ବି, ଆଗରୁ ସାର୍ ଆବଶ୍ୟକ ହେଲେ ଯିବାପାଇଁ ଅନୁରୋଧ କରନ୍ତି । ତଥାପି ଦୁହେଁ ଯାଇଥିଲେ, ମନ ଡାକିଲା ବୋଲି । ଅନେକ ଦିନ ହେଲା ସେ ଦେଖା କରିନି ସାର୍‌ଙ୍କୁ । କିନ୍ତୁ ସମ୍ଭବ ହେଲାନି । ବାହାର ଗେଟ୍‌ରେ ତାଲା ଝୁଲୁଥିଲା । ଆଶ୍ଚର୍ଯ୍ୟ ଲାଗିଲା । କୁଆଡ଼େ ଯାଇଥିବେ ସାର୍ ? ଏଇ ଚାରି ଛ'ଦିନ ଆଗରୁ ନିଜ ସ୍ୱାସ୍ଥ୍ୟ ନେଇ ଅତନୁଙ୍କ ସହିତ ସେ ଆଲୋଚନା କରିଥିଲେ । ସେଇଟା ବି ଗୋଟାଏ ନୂଆକଥା ହିଁ ଥିଲା । କାରଣ ନିଜ ସ୍ୱାସ୍ଥ୍ୟ ନେଇ ସେ କେବେ ବିବ୍ରତ ହୁଅନ୍ତି ନାହିଁ । ସବୁବେଳେ ପତ୍ନୀଙ୍କ ପାଇଁ ପରାମର୍ଶ କରନ୍ତି । ତଥାପି ସେ ଖୋଜିଥିଲେ ଅତନୁଙ୍କୁ, ବଡ଼ ସମ୍ଭ୍ରମତାର ସହ । ନିଜ ବ୍ୟସ୍ତତାକୁ ଚାପି ବେଶ୍ ଦମ୍ଭର ସହିତ କହିଥିଲେ- କ'ଣ ଟିକିଏ ଅସୁବିଧା ହେଇଛି ଭଲ ହୋଇଯିବ । ଭଲ ବି ଅଛି ମୁଁ । ତେବେ ଡାକ୍ତର ଗୁଡ଼ାଏ ଔଷଧ ଖାଇବାପାଇଁ ଦେଇଛନ୍ତି । ରୁଟିନ୍ ଚେକ୍‌ଅପ୍ ପାଇଁ ଯାଇଥିଲି ଭୁବନେଶ୍ୱର । ମୋ ଦୈନନ୍ଦିନ ଜୀବନଚର୍ଯ୍ୟାକୁ ବି ଡାକ୍ତର ସୀମିତ କରିଦେଇଛନ୍ତି- ତେବେ ଡାକ୍ତରଙ୍କ ପରାମର୍ଶ ସତ୍ତ୍ୱେ ଭଲ ଲାଗୁନି ବାନ୍ଧି

ହୋଇ ବସିବାକୁ । ତେବେ ଡାକ୍ତରଙ୍କ ପରାମର୍ଶ ଯେତେବେଳେ ମୋତେ ମାନିବାକୁ ହେବ । ସେଇ ସମ୍ପର୍କରେ ଆପଣଙ୍କ ସହିତ ଟିକିଏ ଆଲୋଚନା କରିଥା'ନ୍ତି.... ବେଶ୍ ସମ୍ଭ୍ରମ ଅନୁରୋଧ ଥିଲା ।'

ଅତନୁ ଯାଇଥିଲେ । ଦେବଯାନୀ କିନ୍ତୁ ଯାଇପାରିନଥିଲା ନିଜ ଅସୁସ୍ଥତା ଯୋଗୁଁ । ଅତନୁ କହିଥିଲେ- 'ସାର୍‌ଙ୍କ ସ୍ୱାସ୍ଥ୍ୟ ଅବସ୍ଥା ବିଶେଷ ଭଲ ନାହିଁ । ତାଙ୍କର ଅତିପ୍ରିୟ ବଡ଼ଦାଣ୍ଡର ପବନ ଖାଇ ବୁଲିବାପାଇଁ ସେ ଆଉ ସମର୍ଥ ନଥିଲେ । ଅନର୍ଗଳ ଗପିବାକୁ ଭଲପାଉଥିବା ମଣିଷଟା ହଠାତ୍ କଥା କହିଲାବେଳେ କ୍ଲାନ୍ତ ହେଇପଡୁଥିଲେ । ଡାକ୍ତରଙ୍କ ପରୀକ୍ଷାନିରୀକ୍ଷା ଭିତରେ ଅଛନ୍ତି କିଛିଦିନ ।' ବାସ୍ ! ଏଇ ମାତ୍ର ସପ୍ତାହକ କଥା । ତାଲା ଦେଖି ସେମାନେ ଫେରିଆସିଥିଲେ । ଫେରିବା ବାଟରେ କେବଳ ଭାବିଥିଲେ, 'ପିଲାଙ୍କ ପାଖକୁ ଯାଇଥିବେ ହୁଏତ । ସେଠି ଉନ୍ନତମାନର ଚିକିତ୍ସା ସମ୍ଭବ ତ- ଅତନୁ କହିଲେ । ଦେବଯାନୀର କିନ୍ତୁ ବିଶ୍ୱାସ ହୋଇନଥିଲା । କାରଣ ସେ ଜାଣେ । ଜନ୍ମମାଟି ଛାଡ଼ି ସାର୍ କୁଆଡ଼େ ବି ଯିବେନି । ସାର୍ ଅନେକଥର କହିଛନ୍ତି, ମୋ ପିଲାଏ କର୍ମବ୍ୟସ୍ତ । ନିଜ ନିଜ କାମରେ ସମସ୍ତେ ଯିବେ । ମୋତେ ଏକୁଟିଆ ରହିବାକୁ ଭଲ ଲାଗେନି । ଗପିବାକୁ ମୁଁ ଭଲପାଏ । ସେ ସବୁ ଜାଗାରେ ମୋତେ ବାନ୍ଧି ହୋଇଗଲା ଭଳି ଲାଗିବ । ଏଠି ବଡ଼ଦାଣ୍ଡରେ ଘେରାଏ ବୁଲିଆସିଲେ, ସବୁ ଅବସାଦ ଦୂର ହୋଇଯିବ । ଏଠି ସବୁ ସୁବିଧା ଅଛି, କ୍ରାଇସିସ୍‌ବେଳେ ସାହାଯ୍ୟ କରିବାକୁ ମଣିଷର ଅଭାବ ନାହିଁ । ସେମାନଙ୍କ ପାଖରେ ଖବର ପହଞ୍ଚିବା ଦରକାର । କଥାହେଲା, ନିଜେ ସୁସ୍ଥ ଥିଲେ ସବୁ କ୍ରାଇସିସ୍ ସମ୍ନା କରିହେବ । ତା'ଛଡ଼ା ମଣିଷ ତ ଆଉ ଚିରଂଜୀବୀ ହେବା ପାଇଁ ଆସିନି । ଜନ୍ମମାଟି ପାଇଁ ଅମାପ ମୋହ ଥିଲା ସାର୍‌ଙ୍କର । ସେଇ ମୋହ ହିଁ ତାଙ୍କର ଅଭିମାନ ଥିଲା ।

ଏତେ ସଚେତନ, ଏତେ ସତର୍କ ଥିବା ମଣିଷଟାକୁ ମହାକାଳ ଏମିତି ଅସର୍ତକ ଭାବେ କାବୁକରି ପକେଇଲା ଯେ, ନିରୁପାୟ ଭାବେ ରୁଗ୍ଣା, ଅସମର୍ଥା ପତ୍ନୀଙ୍କୁ ହିଁ ସେଇ ଦାୟିତ୍ୱ ତକ ତୁଲାଇବାକୁ ପଡ଼ିଲା । ସମୟ 'ସମୟ' ହିଁ ଦେଲାନାହିଁ କିଛି ବ୍ୟବସ୍ଥା କି ବନ୍ଦୋବସ୍ତ କରିଯିବା ପାଇଁ । ବନ୍ଧୁ ଆତ୍ମୀୟସ୍ୱଜନଙ୍କୁ ପୋଛି ସଙ୍ଖୋଳି ଯିବାପାଇଁ ।

ମାତ୍ର କେଇଟା ଘଣ୍ଟାରେ ନର୍ସିଂହୋମ୍ ଶଯ୍ୟାରେ ଆଖି ବୁଜିଦେଲେ ରଞ୍ଜୟ ସାର୍, ସବୁଦିନ ପାଇଁ । ସବୁ ପଡ଼ିରହିଲା ପଛରେ । ତାଙ୍କର ଅତିପ୍ରିୟ ବଡ଼ଦାଣ୍ଡ, ଶ୍ରୀମନ୍ଦିର, ସମୁଦ୍ର, ତାଙ୍କ ସଂପାଦିଥିବା ସମ୍ପଦ, ସାଇତି ସଜାଡ଼ି ରଖିଥିବା ଘର, ସର୍ବୋପରି ଅସମର୍ଥା ରୁଗ୍ଣା ପତ୍ନୀ । ଗଣ୍ଠିଧନ କରିଥିବା ପୁଅଝିଅ- ନାତିନାତୁଣୀ, ଭାଇବନ୍ଧୁ, ସ୍କୁଲ କଲେଜ, ଇତିହାସ ଗବେଷଣା, ସବୁ କିଛି । ପଲକଟିଏ ବି ଲାଗିଲାନି ସବୁକିଛି ଠପ୍ ହୋଇଯିବା ପାଇଁ ।

ଦେବ୍‌ଯାନୀ ଭାବିଲା, ଜୀବନଟା ସତରେ କେବଳ ବିଚିତ୍ର ନୁହେଁ, ଖୁବ୍ ବେଶୀ

ଆକସ୍ମିକ ମଧ୍ୟ । ତମ ପାରିବାରପଣ, ସଜଡ଼ା ସତର୍କ ଜୀବନ, ଗର୍ବ, ଦମ୍ଭ, ଅଭିମାନ କାହାକୁ ସେ ଅପେକ୍ଷା ରଖେନି । ଜୀବନବ୍ୟାପୀ ଅର୍ଜିଥିବା ଜ୍ଞାନ ବୁଦ୍ଧିମତ୍ତା ହାରମାନିଯାଏ 'ମହାକାଳ' ଆଗରେ । ଦେବଯାନୀକୁ ଉଦାସ ଲାଗିଲା । ବାପା ବୋଉ ଶାଶୂଶ୍ୱଶୁର ଆଗରୁ ଯାଇ ତା' ଭିତରେ ଶୂନ୍ୟସ୍ଥାନଟିଏ ସୃଷ୍ଟି କରିଦେଇଥିଲେ । ଏବେ ରଞ୍ଜୟ ସାର୍‌ଙ୍କ ଚାଲିଯିବାଟା ତାକୁ ଭାବୁକ କରିଦେବା ସହିତ ଅଭିଭାବକଶୂନ୍ୟ କରିଦେଲା ଯେମିତି । ପୁଣି ସେଇ ପ୍ରଶ୍ନ ମନକୁ ଘାରିଲା- କାହିଁକି ମଣିଷ ସମ୍ପର୍କର ସେତୁ ଗଢ଼େ ତା' ହେଲେ ? ସବୁ ଯଦି ମାୟା, ଇଲ୍ୟୁଜନ୍ ବୋଲି ଜାଣେ ? ମନେପଡ଼ିଲା ବୋଉ ! ସେ କୁହେ ମଣିଷ କେବେ ମହାପୁରୁଷ କି ସମ୍ପର୍କଶୂନ୍ୟ ସନ୍ନ୍ୟାସୀ ହେବାକୁ ଇଚ୍ଛା କରେନି । ଜୀବନର ଚଲାବାଟରେ କେତେ ସମ୍ପର୍କ ଗୋଟାଏ । ଯେତେ ସମ୍ପର୍କ ସେତେ ନାଁ । ସମ୍ପର୍କ ଗଢ଼ିବାରେ ଯେତେ ଆନନ୍ଦ, ସମ୍ପର୍କ କଟିଲାବେଳେ ତାଠୁ ଅଧିକ ଦୁଃଖ । ବିଜ୍ଞମଣିଷ ଜାଣିବି ଅଜଣା ରହେ । ଚିରାଚରିତ ଢଙ୍ଗରେ ଏ ଦୁଃଖକୁ ସହ୍ୟ କରେ ମଧ୍ୟ । ସ୍ମୃତିକୁ ସାଉଁଟି ବାହୁନୁଥାଏ ଜୀବନ ବଞ୍ଚିବା ଯାକେ ।

ଦେବଯାନୀ ଭାବିଲା, ଦିନେ ସମସ୍ତେ ଏମିତି ଚାଲିଯିବେ । ସେ ଏକୁଟିଆ ହେଇଯିବ, ଅଥଚ ସମସ୍ତେ କୌଣସି ନା କୌଣସି ଢଙ୍ଗରେ ଏକା ଛାଡ଼ି ଯିବେନି ବୋଲି ପ୍ରତିଶ୍ରୁତିବଦ୍ଧ ଥିଲେ ନିଜନିଜ ପ୍ରିୟଜନଙ୍କ ପାଖରେ । ଥିଲାବେଳେ ଯେତେସବୁ ଆପଣେଇତିପଣ - ନହେଲେ ଜଣେ ଗଲେ ଆଉଜଣେ ଏକୁଟିଆ- ସମ୍ପର୍କର ଯେତେ ଟାଣ ଗଣ୍ଠି ବି ଫୁଗୁଳିଯିବ ସ୍ୱାଭାବିକ ରୀତିରେ । ପୁଣି ସେଇକଥା- ନିଜ ପାଇଁ ନିଜେ, ବଞ୍ଚିବାକୁ ହେବବୋଲି ବଞ୍ଚିବା କଥା । ସ୍ମୃତିକୁ ସାଉଁଟି, ତା'ରି ଆଶ୍ରାରେ, ଶେଷ ମୁହୂର୍ତ୍ତକୁ ଅପେକ୍ଷା କରି । ରଣବିଜୟ ସାର୍‌ଙ୍କର ରୁଗ୍‌ଣା ପତ୍ନୀ ସେଇକଥା ହିଁ କରୁଥିବେ । ସେଇ ବଡ଼କୋଠାଟି ଭିତରେ ଅସରନ୍ତି ସ୍ମୃତିର କୋଳାହଳ ଭିତରେ ଦେହ ଅଥବା କର୍ମବ୍ୟସ୍ତ ପିଲାଙ୍କ ଗହଣରେ ଆଉ ନିଜକୁ ଏକାନ୍ତ ଭାବେ ସାଉଁଟି, ଅପେକ୍ଷା କରିଥିବେ, ସେଇ ଚରମ ମୁହୂର୍ତ୍ତଟାକୁ, କେବେ ଆସିବ, କିମିତି ଆସିବ ? ନହେଲେ, ଏ ପର୍ଯ୍ୟନ୍ତ ଜୀବନର ମାନେ ରଖୁନଥିବା- ଜୀବନଟାର ତ ଏବେ ମାନେନାହିଁ ।

ଲୋକଗହଳିରେ ବଡ଼ଦାଣ୍ଡ ଭାଙ୍ଗି ପଡୁଥିବ- ଖିଲିଖିଲି ପବନ କିତ୍‌କିତ୍ ଖେଳି ବାଲି ଉଡ଼ାଉଥିବ- ରଥ ବଦଳୁଥିବ- ସମୁଦ୍ର ଗର୍ଜୁଥିବ- ପତିତପାବନ ଉଡୁଥିବ ଫରଫର ହେଇ ନୀଳଚକ୍ରରେ । ସବୁ ଚାଲିଥିବ ନିଜ ନିଜ ଢଙ୍ଗରେ ।

କାହାପାଇଁ କିଛି ଅଟକେ ନାହିଁ । ଯିଏ ନାହିଁ, ସିଏ ହିଁ ନାହିଁ । ରଞ୍ଜୟ ସାର୍‌ଙ୍କର ହସହସ ମୁହଁ ଦିଶିବନି ବଡ଼ଦାଣ୍ଡର ଗହଳି ଭିତରେ ।

ପ୍ରଣାମ ଜଣାଇଲା ଦେବଯାନୀ ସେଇ ଶ୍ରଦ୍ଧାଶୀଳ ପବିତ୍ର ଆତ୍ମା ଉଦ୍ଦେଶ୍ୟରେ ।



# ଦୀପ-ରୁଖା

ମୁଁ ଖୋଜୁଥିଲି.....

ମୋ ବିଶ୍ୱାସର ଦୀପରୁଖାକୁ.....

ଏ ଘର ସେ ଘର, ଅଗଣା, ଦିଅଁଙ୍କ ଘର, ଚଉରାମୂଳ, ବୈଠକଖାନା, ଏ କୋଣ ସେ କୋଣ ହେଇ ସବୁଠି ସବୁଆଡ଼େ । ଅଣ୍ଡାଳୁଥିଲି । ପାଉନଥିଲି କୋଉଠି । ଗଲାକୁଆଡ଼େ ଆଉ ? ମନ ଛାଟିପିଟି ହେଲା । ଅସ୍ଥିର ଲାଗିଲା । ଯେମିତି କିଛି ଗୋଟାଏ ଗୁରୁତର ଅପରାଧଟିଏ ହୋଇଯାଇଛି ମୋର କିମ୍ୱା ଜୀବନଯାକର ସଞ୍ଚିତ ସମ୍ୱଳ ମୋର ଲୁଟିହୋଇଯାଇଛି କିମ୍ୱା ସର୍ବସ୍ୱ ଅପହରଣ ହୋଇଯାଇଛି.... ଯୋଉ କ୍ଷତି ପୂରଣ ହେବାର ନାହିଁ । ନିଜକୁ ବୁଝେଇବାକୁ ଚେଷ୍ଟା କଲି । ବାରମ୍ବାର ବୁଝେଇଲି... ମନ କିନ୍ତୁ ବୁଝୁ ନଥିଲା । ଯିବ ଆଉ କୁଆଡ଼େ ? ରଖିଥିଲି ତ ଏଇଠି, ଏଇ ଘରେ... ।

'ରଖିଥିଲେ ସିନା ପାଇଥାନ୍ତୁ... ତୁ ମୋତେ ରଖିନୁ ଏଇଠି... ମନେ ପକା... ।' ମୁଁ ଠିକ୍‌ଭାବେ ମନେପକାଇ ପାରୁଥିଲି ଯେ, ତାକୁ ଆଣି ମୁଁ ଏଇଠି ଏଇ ଘରେ ରଖିଛି । ହୁଏତ କୋଉଠି ରହିଯାଇ ଥାଇପାରେ ମୁହଁ ଲୁଚା ଦେଇ । ଅନ୍ୟ ଜିନିଷମାନେ ତାକୁ ଘୋଡ଼େଇ ପକାଇଥାଇ ପାରନ୍ତି କିମ୍ୱା.... ଆହୁରି ଆହୁରି ମୁଁ ଖୋଜିଲି । ଥରକୁ ଥର ଆଲମିରା ଥାକ, କାଠ ସିନ୍ଦୂକ, ବାକ୍ସ, ଶୋଇବା ଘର, ରୋଷେଇ ଶାଳ, ତଳ ଉପର ସବୁ ।

କାହିଁ କୋଉଠି ବି ତ ଦିଶୁନି । ଆଖିରେ ପ୍ରଶ୍ନବାଚୀର ଭିଡ଼.... ସେ ଭିଡ଼କୁ ଆଡ଼େଇ ଦେଇ ସ୍ୱୟଂ ଗୃହକର୍ତ୍ତା ଈଷତ୍ ବିରକ୍ତିମିଶା କଣ୍ଠରେ କହିଲେ- ଗଲା, ଭାସିଗଲା । ହେଇ ହେଇତ ରୁଖାଟିଏ । କୋଉ ସୁନାରୂପା ନା ହୀରା ନାଳା ହୋଇଛି ଯେ ଏତେ ବ୍ୟସ୍ତ, ଏତେ ଖୋଜାଲୋଡ଼ା । ମିଛରେ ଯାହା ମନସ୍ତାପ.... ସମୟର ଅପଚୟ ।

ମୋ ମନରେ ପ୍ରଚଣ୍ଡ ଆଘାତ ଲାଗିଲା । କାରଣ ଏଥିପାଇଁ ଯେ, ସେଇଟା ମୋ

ପାଇଁ ସାଧାରଣ ନଥିଲା । ଅନ୍ୟମାନଙ୍କ ଆଖିରେ ସାମାନ୍ୟବସ୍ତୁଟିଏ ହୋଇପାରେ ହେଲେ ମୋ ପ୍ରାଣ ଥିଲା ସେଇଟା । ଜୀବନଠୁଁ ବି ଅଧିକ କହିବାକୁ ଗଲେ । ତା'ଛଡ଼ା କଥା ତ ସେଇଠି ନଥିଲା । ସାମାନ୍ୟ ହେଉ କି ଅସାମାନ୍ୟ ଛୋଟ ହେଉ କି ବଡ଼- ଯାଏ ଆସେ ନା କିଛି ।

ଏ ଘରକୁ ମୁଁ ଯୋଉଦିନ ସବାରିରେ ବସି ବୋହୂ ହେଇ ଆସିଲି.... ସେଇଦିନ.... ସେଇଦିନ ମୋ କାନ୍ଦୁରା ମୁହଁକୁ ପଣତକାନିରେ ପୋଛିଦେଇ ବୋଉ ମୋର ମୋ' ହାତରେ ଏଇ ଦୀପରୁଖାଟିକୁ ଧରାଇଦେଇ କହିଥିଲା- ଝିଅ, ମୁଁ ତୋତେ କିଛି ଦେଇନି କି ଦେଇପାରୁନି, କେବଳ ଏଇ ରୁଖାଟା... ରଖିଥିବୁ ପାଖରେ, ମୋ ସନ୍ତକ କରି.... ସାମାନ୍ୟ ଭାବି ହଜେଇ ଦେବୁନି କେବେ ।

ବଉଳପାଟର ଓଢ଼ଣା ଭିତରୁ ଆଶ୍ଚର୍ଯ୍ୟଚକିତ ହେଇ ଚାହିଁଲି ତାର ମଉଳା ଲୁହବୋଳା ମୁହଁକୁ । ମେଘଢଙ୍କା ଜହ୍ନଭଳି ସେ ମୁହଁ ଉଜ୍ଜଳି ଉଠୁଥିଲା । ମୁହୂର୍ତ୍ତେ ମୁହୂର୍ତ୍ତେ ।

ପୁଣି ଚାହିଁଲି ତା' ହାତର ଦୀପରୁଖାଟିକୁ । ସେମିତି କିଛି ଖାସ୍ ଜିନିଷଟାଏ ନଥିଲା । ସୁନା କି ରୁପାର ତ ନୁହେଁ, ପିତଳର ଦୀପରୁଖା ମାଜିମୁଜି ଦେଇଛି ବୋଉ । ଝଟକୁଛି ସୁନାଭଳି । ଦି'ଫୁଟ ଉଚ୍ଚ, ତଳେ ଚଉଡ଼ା ବଇଠି କମକୂଟ ହେଇ ଉପରକୁ ପଦ୍ମପାଖୁଡ଼ା ଭଳି ସାତ ପାଖୁଡ଼ାର ଦୀପ ।

ବୋଉ ହସିଦେଲା ଫିସ୍ କରି । କହିଲା, ହଁ ଇଏ ଦୀପରୁଖାଟିଏ ପିତଳର । ମୋ ବୋଉ ଦେଇଥିଲା ତା' ସାତପୁରୁଷ ସିନ୍ଦୁକ ଅଣ୍ଡାଳି, ମୋ ପହିଲି ପାଳି ଶାଶୂଘରକୁ ଆସିଲା ବେଳେ । ଦେଲାବେଳକୁ କହିଥିଲା, ଝିଅଲୋ ! ଇଏ ବିଶ୍ୱାସର ଦୀପରୁଖା । ସାଇତିଥିବୁ ପାଖରେ । ହାତଛଡ଼ା କରିବୁନି । ବିଶ୍ୱାସ ଅଛି ତ ସବୁ ଅଛି । ଜାଣିବୁ ସବୁ ପାଇଗଲୁ ଜୀବନରେ । ଲକ୍ଷେ ସଫଳତା ସରି ନୁହେଁ ଯା ତୁଲେ ।'

ସେଇ ଉତ୍ତରାଧିକାର ସୂତ୍ରରେ ତୋ' ହାତକୁ ମୁଁ ଆଜି ବଢ଼େଇ ଦେଉଛି । ତୁ ଆଜି ନୂଆ ଘର କରିବାକୁ ଯାଉଛୁ । ସଂସାର କିଛି ସହଜ କଥା ନୁହେଁ । କେତେ ମଣିଷ କେତେ ବିଚାର, କେତେ ମନ କେତେ ପରିସ୍ଥିତି । ବାରମ୍ବାର ଆସିବ ପରୀକ୍ଷାର ଘଡ଼ି । ବିଶ୍ୱାସକୁ ଦୋହଲେଇ ଦେବ । ବିଶ୍ୱାସ ଜିନିଷଟା ତ ଆଖିରେ ଦେଖିବା ଭଳି ବସ୍ତୁ ନୁହେଁ । ଇଏ ଏକ ମାନସିକ ଅବସ୍ଥା- ଏକ ଅବିଚଳିତ ଭରସାର ଭାବ । ମନ ଏଥିରେ ଦୃଢ଼ ରୁହେ, ତାରି ନାଁ ବିଶ୍ୱାସ । ତାକୁ ହିଁ ଦେଉଛି ମୁଁ ତୋତେ । ଏଇଟା କେବଳ ତା'ର ପ୍ରତୀକ । ତୋ' ଘର- ବିଶ୍ୱାସର ମାଟି ଉପରେ ନେଇ ଯାକୁ ଥାପି ଦେବୁ । ଜୀବନ- ଚଲାପଥରେ ପ୍ରତିଟି ମୁହୂର୍ତ୍ତରେ ତୋ' ଭିତରେ ଗଭୀର ଆତ୍ମବିଶ୍ୱାସର ଅନୁଭବ ଆଣିଦେବ ଏଇ ଦୀପରୁଖା । ମୋତେ ମନେ ପକେଇବୁ ।

ସେଦିନ ମୁଁ ତା' କଥାର ଗୂଢ଼ ଅର୍ଥକୁ ବୁଝିପାରିନଥିଲି । ନୂଆ ଜୀବନକୁ ସ୍ୱାଗତ କରିବାର ଉତ୍ତେଜନାରେ ଏତେ ମସ୍‌ଗୁଲ୍ ଥିଲି ଯେ ଭାବିବାକୁ ତର ନଥିଲା । କେବଳ ବୋଉ ଆଦରରେ ତୋଳି ଦେଉଛି ତା' ପ୍ରିୟ ଜିନିଷଟି ମୋ ହାତକୁ- ସେଇଟା ହିଁ ମୋ ପାଇଁ ବଡ଼କଥା ଥିଲା । ତା' ବିଶ୍ୱାସକୁ ଅସମ୍ମାନ କରିବାର ଆସ୍ପର୍ଦ୍ଧା ନଥିଲା ମୋର । ମୋ ବୋଉ ଭଳି ପୁରୁଣା ଜିନିଷଟିଏ ତ । ଆଉ ପୁରୁଣା ପ୍ରତି ମୋର ଅହେତୁକ ଦୁର୍ବଳତା । ଥାଉ ମୋ ପାଖରେ ମୋ ବୋଉର କଲ୍ୟାଣ ।

ଶୁଭଶଙ୍ଖ ବାଜି ଉଠିଥିଲା । ଅମୃତବେଳା ଗଡ଼ିଯାଉଛି । ତାଗିଦ୍ କରୁଥିଲେ ମାମୁ । ସମ୍ପର୍କର ଭାଉଜ ହାତରେ ଆଞ୍ଜୁଳି ଦେବା ପାଇଁ ତରତର ହେଉଥିଲେ । ଆଉ କିଛି ମୁଁ ପଚାରି ନଥିଲି ବୋଉକୁ । ଯୌତୁକ ସାମଗ୍ରୀ ଭିତରେ ନଯାଇ ମୋ ସାଙ୍ଗେ ସାଙ୍ଗେ ଦୀପରୁଖାଟା ମଧ୍ୟ ଏରୁଣ୍ଡିବନ୍ଧ ଡେଇଁ ଆସିଥିଲା ସବାରିରେ ବସିବାକୁ ।

ବିଦା ହେବାର ଲଗ୍ନ.... ସବାରିରେ ବସିବାକୁ ଯାଉଛି... ଆଖିମୋର ଖୋଜି ବୁଲିଲା ଆଉ ଜଣକୁ । ମୋ ବାପା – ଯିଏ କିଏ ଘରୁ ଗଲାବେଳେ କେବେବି ଘରେ ରୁହନ୍ତି ନାହିଁ ବିଦାୟ ଜଣେଇବାକୁ, ଭଲମନ୍ଦ ଦି' ପଦ କହିବାକୁ, ସେଇ ବାପା ମୋର ଦାଣ୍ଡ ଦୁଆରକୁ ଆଉଜି ଠିଆ ହେଉଥିଲେ ଚୁପ୍‌ଚାପ୍ । ଗମ୍ଭୀର ଦିଶୁଥିଲେ । ମୁହଁ ଶୁଖିଯାଇଥିଲା- ପାଦ ଛୁଇଁବାକୁ ନଇଁପଡ଼ିଲି । ବାପାଙ୍କ ଛାତି ହୁଏତ କୋହରେ ଗଦ୍‌ଗଦେଇ ଉଠୁଥିବ । ତାଙ୍କ ହାତ ମୋ କପାଳ ଛୁଇଁଲା । ଆଖିରୁ ଝରିପଡ଼ିଲା ଥପ୍‌ଥପ୍ ଦି'ବୁନ୍ଦା ଲୁହ, ହେମନ୍ତ ଆକାଶରୁ କାକର ଟୋପା ଖସିଲା ଭଳି । ତଥାପି ଉଦ୍‌ଗତ କୋହକୁ ଦୀର୍ଘ ନିଃଶ୍ୱାସରେ ଚାପି ରଖି ହସିଦେଲେ ଟିକିଏ । ସେଇ ହସଚହଟା ମୁହଁରେ ହାତକୁ ମୋର ବଢ଼େଇ ଦେଲେ ଚକ୍‌ଚକିଆ ଦୀପଟିଏ.... ସେ ବି ପିତଳର । ମୁଁ ଚାହିଁଲି ତାଙ୍କର ବିଷଣ୍ଣ ଅଥଚ ହସିଲା ମୁହଁକୁ ପଚାରିଲା ଆଖିରେ । ଇଏ ମୋର ଆଶୀର୍ବାଦ ମା'... ବାପା କହିଲେ, ଏଇ ଦୀପ ଭଳି ଜୀବନ ତୋର ପବିତ୍ର ଆଉ ଉଜ୍ଜ୍ୱଳ ହେଉ । ଦୀପଟିଏ ହେଇ ସବୁରି ମନପ୍ରାଣକୁ ଆଲୋକିତ କରିବୁ ଏତିକି ତ ମୋର କାମନା । ବୋଉ ପରା ଦୀପରୁଖା ଦେଇଛି.... ତାରି ଉପରେ ଥୋଇ ନିତି ସଞ୍ଜରେ ଦୀପ ଜାଳିବୁ ତୁ ଚଉଁରାମୂଳେ । ସେଇ ପବିତ୍ର ସ୍ଥିରଦୀପ ଶିଖା ତୋ ଜୀବନଯାତ୍ରାରେ ଅଖଣ୍ଡ ଆତ୍ମବିଶ୍ୱାସ ଆଣିଦେବ । ବାପାଙ୍କ କଲ୍ୟାଣ ମୋତେ ଈଶ୍ୱରଙ୍କ ଆଶୀର୍ବାଦ ଭଳି ମନେହେଲା । ମନପ୍ରାଣ ମୋର ସତରେ ଉଲ୍ଲସି ଉଠିଥିଲା । ଭିତରେ ଭିତରେ ସତେଯେମିତି ମୁଁ ଆଲୋକିତ ହେଇ ଯାଇଥିଲି । ଲକ୍ଷେ ବିଶ୍ୱାସର ଦିହୁଡ଼ି ଜଳି ଉଠିଥିଲା ମୋ ଭିତରେ ସେଦିନ । ପାଖରେ ମୋ କାନିପଣତ ଧରି ଠିଆ ହେଇଥିବା ମୋ କୁନି ଭଉଣୀ କୌତୂହଳରେ ମୋ ହାତରୁ ଦୀପଟାକୁ ଛଡ଼େଇ ନେଇ ଅଣ୍ଡାଳି ପକେଇଲା ଥରେ ଦିଥର । କ'ଣ ବୁଝିଲା ନବୁଝିଲା ହେଲେ ଆଶ୍ଚର୍ଯ୍ୟ ହୋଇ ଯାଇଥିଲା ତା'ର ଅବୋଧଚେତନା । ପ୍ରଶ୍ନିଳ ଆଖିରେ

ବାପାଙ୍କୁ ଚାହିଁ କହିଲା- ଏଇଟା କ'ଣ ଆଲ୍ଲାଉଦିନର କୁହୁକ ଦୀପ ବାପା; ଯା ଭିତରୁ ଜିନ୍ ବାହାରି ସବୁ କାମ କରିଦେବ ? ଦୀପଟାଏ ଏପାଖସେପାଖ କରି ଦେଖୁଥାଏ କୁନି । ତା' କଥା ଶୁଣି ବାପା ହସିଦେଲେ, କହିଲେ, ହଁ ପ୍ରାୟ ସେଇଭଳି ଯେ, ହେଲେ ଦୀପ ଭିତରୁ ଜିନ୍ ବାହାରିବନି, ନିଜ ମନ ଭିତରୁ ସେ ଆସିବ । ଇଚ୍ଛାଶକ୍ତି ଭିତରେ ରହି ସେ ସବୁକାମ ସହଜରେ କରେଇ ନେବ । ତୁ ଏବେ ପିଲା ହେଇଛୁ ଏତେ କଥା ବୁଝିବାର ବୟସ ହେଇନି ତ ବଡ଼ ହୋଇଗଲେ ତୁ ବି ବୁଝିଯିବୁ ବଳେ । ତା' ପିଠିକୁ ଥାପୁଡ଼େଇ ବାପା ମୋ ମୁହଁକୁ ଚାହିଁଲେ । କୁନି ଭଉଣୀ ମୋର କ'ଣ ଆଉ କେତେ ବୁଝିଥିବ କେଜାଣି ମୁଁ କିନ୍ତୁ ଠିକ୍ ବୁଝିପାରିଥିଲି ବାପାଙ୍କ କଥାର ଅର୍ଥ । କୁନି ସେଇ ଦୀପଟାକୁ ଆଶ୍ଚର୍ଯ୍ୟ ଆଉ ଚକିତ ହୋଇ ଚାହିଁଥାଏ ।

ସେଦିନ ବାପା ବୋଉ ଦେଇଥିବା କୁନି ଆଖିରେ ସେଇ କୁହୁକ ଦୀପରୁଖାକୁ ଧରି ମୁଁ ସବାରିରେ ବସିଲି । ସେ ଘରୁ ଏଇ ଘରକୁ ଆସିବା ବାଟରେ ସଂକଳ୍ପ କଲି ମନେମନେ । ଏଇ ଦୀପରୁଖାକୁ ମୋ ଘର ଅଗଣାର ଚଉଁରାମୂଳେ ବିଶ୍ୱାସର ମାଟି ଉପରେ ଥାପିଦେଇ ତା' ଉପରେ ସଂଜଦୀପ ଭଳି ମୁଁ ଜଳିବି । ଏଇ ହେବ ମୋର ଆତ୍ମବିଶ୍ୱାସର ପ୍ରତୀକ । ଏଇଠୁ ଆରମ୍ଭ ହେବ ମୋ ଆଗାମୀ ଜୀବନଯାତ୍ରାର ଶୁଭାରମ୍ଭ ।

ଭାବିଲାବେଳକୁ ଶିହରିତ ହେଇ ଉଠୁଥିଲି ମୁଁ । ଅଜସ୍ର ଆଲୁଅର ମହୋତ୍ସବ ସୃଷ୍ଟି କରିଥିଲା ମୋ ଅନ୍ତରରେ । (ହାୟ ମୁଁ କ'ଣ ଜାଣିଥିଲି ଯେ, ମୋ ବିଶ୍ୱାସର ଦୀପାବଳି ରାତିକୁ ଏଇମିତି ମେଘ ଗ୍ରାସିବ !) ଏଥର ମୋ ତରୁଣୀ-ମନ-ପରୀ ତା' କଳ୍ପନାର ଡେଣା ମେଲି ଆକାଶରେ ଉଡୁଉଡୁ ଯାଇ ଓହ୍ଲେଇ ପଡ଼ିଲା ସ୍ୱପ୍ନର ସେଇ ଝୋଟିପକା ଗୋବର ଲିପା ଅଗଣା ଉପରେ । ମୋ ଦେହମନରେ କଦମ୍ବର କଣ୍ଟକିତ ରୋମାଞ୍ଚ ।

ଦୀପରୁଖା ଦୃଢ଼ଭାବେ ହାତରେ ଧରି ଓହ୍ଲେଇଲି ସବାରିରୁ... ଓହ୍ଲେଇଲି ମୋ ଘରର ମାଟି ଉପରକୁ । ସେ ପାଖରେ ମୋ ଏନ୍ତୁଡ଼ି ଆଉ ମୋ ମା'କୁ ଛାଡ଼ି ଆସିବାର ଦୁଃଖ ନିମିଷକେ ଭୁଲି ହୋଇଗଲା କେମିତି କେଜାଣି । ଭାବିଲି, ଭାବି ହେଇଗଲା ମନକୁ ମନ । ଏଇଟା ହିଁ ମୋ ଘର, ଏଇମାନେ ମୋର ଆପଣାର ପ୍ରିୟଜନ, ମୋ ଇହପରକାଳ ବି ଏଇଠି । କେତେ ଅନ୍ତରଙ୍ଗତାର ହାତ ବଢ଼େଇ ପ୍ରତୀକ୍ଷା କରିଛନ୍ତି ମୋ ପାଇଁ ।

ମୁଁ ଛୁଇଁବି ସେମାନଙ୍କୁ, ସେଇ ମନମାନଙ୍କୁ ଓଦା କରିଦେବି ମୋ ବିଶ୍ୱାସର ଝିରିଝିରି ବର୍ଷାରେ । ସେଇମାନଙ୍କ ହାତକୁ ମୁଁ ବଢ଼େଇଦେବି ମୋ ଏକାନ୍ତ ନିଜର ଏଇ ଦୀପରୁଖାଟିକୁ । (ଯଦିଓ ବୋଉ ବାରମ୍ବାର ପାଖରେ ରଖିବାକୁ କହିଥିଲା ।) କହିବି- ମୁଁ ଯେତେବେଳେ ତୁମମାନଙ୍କର, ମୋର ସକଳ ସୁଖ ଦୁଃଖ, ବର୍ଷା ବସନ୍ତ ବି ତୁମର । ପ୍ରତିବଦଳରେ ଟିକିଏ ବିଶ୍ୱାସ । ବାସ୍ ଏତିକି ମୁଁ ଚାହେଁ । ଏଇ ଦୀପରୁଖାଟିକୁ ତୁମମାନଙ୍କ ମନ ଅଗଣାରେ ଥାପି

ମୁଁ ଦୀପଟିଏ ହୋଇ ଜଳିବି । ସବୁରି ମନ ଅଗଣାକୁ ଆଲୋକିତ କରିବାର ପ୍ରତିଶ୍ରୁତି ଦେଉଛି । ନିଜକୁ ପ୍ରସ୍ତୁତ କଲି.... ନୂଆ ସଂସାର, ନୂଆ ମଣିଷ, ମୋତେ ବି ନୂଆ ଲାଗୁଥାଏ ସବୁ ।

ଏଥର ଶୁଭଶଙ୍ଖ ବାଜି ଉଠିଲା ଏଇ ଘର ଅଗଣାରେ । ଯୋଡ଼ା ମହୁରୀର ଉଚ୍ଛ୍ୱାସ ଆଉ ହୁଳହୁଳିର ଉଠାପକା ଭିତରେ ମୋ ଅଳତା ପାଉଁଜି ପିନ୍ଧା ପାଦ ରୁଣୁଝୁଣୁ ହୋଇ ମାଟି ଛୁଇଁଲା । ପ୍ରତୀକ୍ଷିତ ମନ ହୃଦୟମାନଙ୍କୁ ଛୁଇଁଥିଲା କି ନାହିଁ ଜାଣେନା, ତେବେ ସଭିଏଁ ଏକାସ୍ୱରରେ କହିଲେ 'ଚନ୍ଦ୍ରଉଦିଆ କନିଆଁ' । ଘର ଆଲୁଅ ହୋଇଯିବ । ଲକ୍ଷ୍ମୀ ପ୍ରତିମା ତ । ଓଢ଼ଣା ଭିତରୁ ଅନୁଭବ କରିଥିଲି କଥାର ଆନ୍ତରିକତା, ଆପଣାପଣ ଭିତରେ ମହୁ ଅଛିତ । ଆଶ୍ୱସ୍ତ ହେଲା ମୋ ନୂଆଁ ଘର କରିବାକୁ ଉଚ୍ଛନ୍ନ ଥିବା ବଉଳପାଟ ପିନ୍ଧା ତରୁଣୀମନ । ବଧୂବରଣର ଉପଚାର ସରିଆସିଲା ବେଳକୁ ଉଲ୍ଲସିତ ହୋଇ ସରାଗ ମନରେ ହାତରେ ଧରିଥିବା ଦୀପରୁଖାଟିକୁ ବଢ଼େଇଦେଲି ଉପହାର ଛଳରେ ଗୃହ ସ୍ୱାମିନୀଙ୍କ ହାତକୁ । ଯିଏ ଗୋଟାଏ ବଡ଼ 'ମୁଁ'ର ଆଖି ଝଲସା ପାଟ ପୋଷାକରେ ଆବୃତ ଥିଲେ ଏବଂ ଅବିରାମ ଆଦେଶ ନିର୍ଦ୍ଦେଶର ଗୋଟିଏ ମସ୍ତବଡ଼ କଣ୍ଢେଇ ଭଳି ଦିଶୁଥିଲେ । ବାସ୍ତବିକ ନିଦା-ଆଦୁବଡ଼ିମାମାନେ ଏଥର ମୋ ମୁହଁକୁ ଅନେଇଲେ ଆଶ୍ଚର୍ଯ୍ୟ ଚକିତ ହୋଇ – ଇଏ ତ ନୂଆ କଥା । ପ୍ରଣାମୀ ପାଟଶାଢ଼ୀ ବଦଳରେ ଏଇ ନୂଆଁ ଚିଜ୍.... ସୁନା ଭଳି ଝଟକୁଥିବା ଦୀପରୁଖାକୁ ଦେଖି ସଭିଙ୍କ ଆଖି ଖୋସି ହୋଇ ଯାଉଥିଲା– ମୁଁ କିନ୍ତୁ ସମସ୍ତଙ୍କ ଲକ୍ଷ୍ୟ ଅଲକ୍ଷ୍ୟରେ ବିଶ୍ୱାସର ସହିତ ମୋ 'ବିଶ୍ୱାସ'କୁ ବଢ଼େଇ ଦେଇଥିଲି । ସେମାନେ ନିଶ୍ଚୟ ଉପହାର ବୋଲି ହିଁ ଭାବିଥିବେ । ତେଣୁ ଥରେ ଥରେ ଅଣ୍ଡାଳି ପରଖି ମନ୍ତବ୍ୟ କରିବାକୁ ପଛେଇ ନଥିଲେ । ଏଇଟା କ'ଣ ସୁନା ? ଚମତ୍କାର ଦିଶୁଛି ତ..... କଣ୍ଠରେ ଲୋଭାତୁରତାର ସ୍ପର୍ଶ । ଆଖିରେ ପ୍ରଶ୍ନବାଚୀ ।

ଧୀର କଣ୍ଠରେ ମୁଁ ଉତ୍ତର ଦେଲି– ତା ଠୁଁ ବି ଆହୁରି ମୂଲ୍ୟବାନ । ସେମାନେ ହୁଏତ ମୋ କଥାର ଅର୍ଥ ନିଶ୍ଚୟ ବୁଝିପାରି ନଥିବେ । ବୁଝିବା ଆଗରୁ ଆଉ ଦଶଯୋଡ଼ା ଆଖି ମୋ ଆଗପଛ ପହଁରିଗଲା । ଜଣେ କିଏ କହିଲା ଚନ୍ଦ୍ରଉଦିଆ କନିଆଁ ଦେଖି ମନସିନା ପୂରିଗଲା ହେଲେ ଅଗଣା ଗୋଟା ଖାଲି ପଡ଼ିଲା, କାହିଁ କିଛି ତ ଦିଶୁନି ଯାନିଯୌତୁକ, କଥାରେ ବିଦ୍ରୂପର ନରମ ସ୍ପର୍ଶ– ଏଇଟା ପହିଲି ସଂଘାତ । ମୋ ଛାତି ଭିତରଟା ଦାଉଁ କଲା ଆଉ କ'ଣ...., ନା, ନିଜକୁ ସବୁଥର ଭଳି ବୁଝେଇ ଦେଲି ସାଙ୍ଗେସାଙ୍ଗେ । ଇଏ ସାଇ ପଡ଼ିଶାଙ୍କ କଥା । ମୁଁ ଯାହା ଆଣିଛି, ଆଣି ଯାହା ବଢ଼େଇ ଦେଇଛି– ସେମାନଙ୍କ ଆଖି ତାକୁ ଦେଖି ପାରିଲେ ହେଲା । କୋଉ ଜାନିଯଉତୁକ ତା'ର ସମପରି ହେବ । ଇଏ ମୋର ମନର ଭ୍ରମ (ହେଲେ, ମୁଁ ଆଜି ଜାଣୁଛି ସଭିଙ୍କ ଆଖି ସ୍ଥୂଳରେ । ସୂକ୍ଷ୍ମ ଦେଖିବାର କୌଶଳ କାହାର ନଥିଲା କି ନାହିଁ) । ଏଥର ମୋ ହାତଧରି କିଏ ଜଣେ ନେଇଗଲେ ଚଉଁରାମୂଳକୁ । ରୁଖାଟିକୁ

ମାଟି ଉପରେ ଥୋଇ ଦୀପ ପେଟରେ ଘିଅ ଢାଳି ବଳିତା ପକେଇ କହିଲେ- ଏବେ ଦୀପ ଜାଳିଦେ ବୋହୂ ।

ମୁଁ ପ୍ରଥମ କରି ବଳିତାରେ ଅଗ୍ନି ସଂଯୋଗ କଲି । ଦୀପ ଜଳି ଉଠିଲା । ପହିଲି ସଞ୍ଜଦୀପ ମୁଁ ଜାଳିଥିଲି ସେଇ ଗୋଧୂଳି ସନ୍ଧ୍ୟାରେ । ହାତ ଯୋଡ଼ିଲି- ହେ କଲ୍ୟାଣମୟୀ ଦୀପଶିଖା... ପଣତକାନିକୁ ବେକରେ ଗୁଡ଼େଇ ନଇଁ ପଡ଼ିଲି, ସେଇ ଦୀପର ଉଜ୍ଜ୍ୱଳ ଆଲୁଅ ଉପରେ । କ'ଣ ମାଗିଲି ? କ'ଣ ମନାସିଲି ? କ'ଣ ମନାସିଲି ତ... ଠିକ୍ ମନେ ପଡୁନି । ତେବେ କ'ଣ ବା ଆଉ ମନାସିଥିବି, ଘର ମୋର ହସିଉଠୁ ତୋର ଏଇ ପବିତ୍ର ଆଲୁଅରେ । ବିଶ୍ୱାସ ଅତୁଟ ରହୁ ଏଇ ସ୍ଥିର ଶିଖା ଭଳି, ଏଇଆ ମାଗିଥିବି ତ । ସେଇଆ ହିଁ ମାଗିଥିଲି ନିଶ୍ଚୟ । ହେଲେ ମୋର ସେଇ ବିଶ୍ୱାସ ଟିକକ ସତରେ କ'ଣ ଅତୁଟ ରହିଲା ? ରହିଥିଲେ, ଆଜି ଏଇ ବୟସରେ ପରସ୍ତପରସ୍ତ କରି ଏଘର ସେଘର, ସିନ୍ଦୂକ ଆଲମାରି ତଳ ଉପର, ଭିତର ବାହାର ସବୁଆଡ଼େ ଦରାଣ୍ଡୁ ଥା'ନ୍ତି କାହିଁକି ଯେ ଦୀପରୁଖାଟା କୁଆଡ଼େ ଗଲା ବୋଲି ? ଅନ୍ୟମାନେ କ'ଣ କମ୍ ଟିପ୍ପଣୀ କରିଥିଲେ କି, କୋଉ ସୁନା ରୁପାର ଗଢ଼ା ହେଇଛି ଯେ ଏତେ ଖୋଜୁଛ ମ.... ପିତଳ ରୁଖାଟାଏ ତ... ସତକଥା । ସୁନା ରୁପା ନୁହେଁ । ଚାହିଁଲେ ହଜାରେ କିଣିପାରିବି । ତଥାପି.... ମୁଁ ତାକୁ ହିଁ ଖୋଜୁଛି । ସ୍ଥାବର କିମ୍ବା ଅଧିକାରପଣ କିଛି ମୁଁ ଖୋଜୁନି । ଖୋଜୁଛି ବାପାବୋଉଙ୍କ କଲ୍ୟାଣ, ମୋର ଅଖଣ୍ଡ ବିଶ୍ୱାସ ସେଇ ପିତଳ ଦୀପରୁଖାକୁ.... ଯାହାକୁ ମୁଁ ହିଁ ଥୋଇ ଯାଇଥିଲି ଏଇଠି ଏଇ ଅଗଣାରେ । ପୁରୁଷ ପୁରୁଷ ଧରି ବିଶ୍ୱାସର ବୁନିୟାଦକୁ ମୁଣ୍ଡରେ ଧରି ଆଲୁଅ ବିଞ୍ଚି ବିଞ୍ଚି ଠିଆ ହେଇଥିଲା ସେ ମାଟି ଉପରେ । ଅବହେଳାର କଳଙ୍କିକୁ ମାଜିମୁଜି ଦେଲେ ପୁଣିଥରେ ଝଟକି ଉଠିଥା'ନ୍ତା ତାର ଝଲି, ଔଜ୍ଜ୍ୱଲ୍ୟ, ଆପଣାଗୁଣରେ । ଅଭିମାନର ଅନ୍ଧାର ଘୁଞ୍ଚିଯାଇଥାନ୍ତା । ହେଲେ କାହିଁ ସେଇଟା ? ମୁଁ ତାକୁ ହିଁ ତ ଖୋଜୁଛି । କେତେ ଶ୍ରଦ୍ଧା ଆଉ ବିଶ୍ୱାସ ନେଇ ତାକୁ ବଢ଼େଇ ଦେଇଥିଲି ଏଇମାନଙ୍କ ହାତରେ ଆପଣାର ଭାବି । ଭାବିଥିଲି ଦୀର୍ଘଜୀବୀ ହେବ । ମୋ ଠୁ ବି ଅଧିକ । ବାନ୍ଧି ରଖିବ ସେ ସଭିଙ୍କୁ ନିଜ ଗୁଣରେ । ମୁଁ ଥାଏ କି ନଥାଏଁ ଯେମିତି ସୂର୍ଯ୍ୟ ଚନ୍ଦ୍ର, ଗ୍ରହତାରା, ଆକାଶ, ପୃଥିବୀ, ନିଆଁପାଣିର ସ୍ଥିତି ଚିରନ୍ତନ, ଠିକ୍ ସେଇମିତି ସତ୍ୟ ତାର ଅବସ୍ଥିତି । ସେ ଥିଲା, ସେ ଥିବ । ଏଇ ବିଶ୍ୱାସ ଥିଲା ମୋର । ସମୟ ଗଡ଼ିଚାଲିଥିଲା ତା' ବାଟରେ । ଘଟଣା ସବୁ ଘଟିଯାଉଥିଲା ଆପାଣାଛାଏଁ । ରାତିରେ ଦେଖିଥିବା ସ୍ୱପ୍ନ ଦିନ ଆଲୁଅରେ ମିଳେଇ ଯାଇଥିଲା କୁହୁଡ଼ି ଭଳି । କଥାର ଆପଣାପଣ ଭିତରେ କୁଆଡ଼େ ସ୍ୱାର୍ଥର ରସୁଣ ଗନ୍ଧ ସମସ୍ତଙ୍କ ନାକକୁ ବାସିଲା ଲୁଚି ରହି । ସବୁଆଡ ସ୍ୱାର୍ଥ ସ୍ୱାର୍ଥ ଦିଶିଲା । ବିଶ୍ୱାସ ଆଡ଼େଇ ହେଇଗଲା ସନ୍ଦେହର ଆଢୁଆଳରେ । ଦୀପରୁଖାଟି ବି ଆଡ଼େଇ ହେଇଯାଇଥିଲା । ଘର ମଣିଷ ଅପେକ୍ଷା ବାହାର ମଣିଷ ଆପଣାର ହେଲେ । ପୁଣି ପ୍ରଭୁପଣ ଖସଡ଼ି ଯିବାର ଭୂତଭୟ ସମସ୍ତଙ୍କୁ । କାଳେ ହାତଛଡ଼ା ହୋଇଯିବ ଅଧିକାର, ପଛକୁ ପଛ ଆହୁରି ଗୋଟାଏ

ଦି'ଟା ସବାରି ଅଗଣା ଭିତରେ ଓହ୍ଲେଇଥିଲେ । ନୂଆ ମଣିଷ, ନୂଆ ବିଚାର । ପରମ୍ପରା ଟଣାଓଟରା ହେଲା । ବିଶ୍ୱାସର ଭିତିଭୂମି ହୁଗୁଳିବାକୁ ଆରମ୍ଭ କଲା । ସନ୍ଦେହ, ଈର୍ଷା, ବାଦ ଅହଂକାର ଆଉ ଅଭିମାନର ତାଣ୍ଡବ ନାଚିଲା ଅଗଣା ଭିତରେ । ସେଇ ଧକ୍କାରେ ମୋ ଦୀପରୁଖାଟା ଅସହାୟ ଭାବେ ଆଣ୍ଠୁମାଡ଼ି ପଡ଼ିଗଲା । ମୋ ଛାତିରେ ସେଦିନ ଗଭୀର ଯନ୍ତ୍ରଣା ମୁଁ ଅନୁଭବ କରିଥିଲି । ତଥାପି ଛାତିର କୋହକୁ ଚାପି ରଖି ଚଉଁରାମୂଳକୁ ଉଠେଇ ଆଣି ରାଧାମାଧବଙ୍କ ଆସ୍ଥାନ ପାଖରେ ସଜାଡ଼ି ରଖିଲି । ଏବଂ ପୁଣିଥରେ ଦୀପକୁ ଜାଳିଦେଇ କାମନା କରିଥିଲି ମୋ ବିଶ୍ୱାସର ଦୀର୍ଘଜୀବନ । କହିଥିଲି- ତମେ ଯାକୁ ସାଇତି ରଖ ପ୍ରଭୁ, ସମ୍ଭାଳି ରଖ, ଏଇ ମଣିଷ ମନକୁ ସଫା ରଖ ।'

ହେଲେ ମୁଁ କ'ଣ ଜାଣିଥିଲି ଦିଅଁଙ୍କ ଘରଟା ଏତେ ପୁରୁଣା ବୋଲି । ଅବଶ୍ୟ ସେଇଟା ଢେଙ୍କେଙ୍କ ଅମଳର କି ତା ଠୁଁ ବି ଆଗରେ ଥିଲା । ପୁରୁଣା ଦୁଆର ଝରକା ଦିହରେ ମାନଧାତା ବିଚାରର ଉଇ ମାଡ଼ିଯାଇ ତାକୁ ଫମ୍ପା କରି ଦେଇଥିଲେ । ଅନେକାଂଶ ଖାଇ ଯାଇଥିଲେ । ବାଟଦେଖି ପବନ ପଶୁଥିଲା ବାହାରୁ । ଚହଲି ଉଠୁଥିଲା ସଞ୍ଜଦୀପର ଶିଖା ।

ଦିନେ ତ ମୋର ଭୟ ହେଲା, ଦୀପ ଲିଭି ବୋଧେ ସବୁ ଅନ୍ଧାର ହୋଇଯିବ । ତରଳ ଅନ୍ଧାରର ଢେଉରେ ଭାସିଯିବ ପୁରୁଷ ପୁରୁଷର ସଞ୍ଚିତ ବୁନିଆଦି । ଯଦିଓ ସେଥିରେ କିଛି ସାର ନଥିଲା, ତଥାପି ବୁନିଆଦି ତ ଇଚ୍ଛାକଲେ ଦିନକରେ କ'ଣ ଗଢ଼ି ହେବ ? ସାଇତି ରଖିବା ଆମର ଧର୍ମ ।

ସେଇଥିପାଇଁ ମୁଁ ନିବେଦନ କଲି । ନୂଆ ବିଚାର ଥୋଇ କହିଲି- ଆମେ ସବୁକୁ ନହେଲେ ବି ଦୁଆର ଝରକାକୁ ନୂଆ କରି ଗଢ଼ିବା । ସୁନ୍ଦର ଦିଶିବ ସମସ୍ତଙ୍କ ଆଖିକୁ । ପବନ ପଶିବନି କି ଉଇ ଲାଗିବନି । ଅନ୍ତତଃ ଦୀପ ତ ଲିଭିବନି ।

ନାକଚ ହେଇଗଲା ଆବେଦନ । ଘର ନାମକ ରାଜ୍ୟର ଅଧିଶ୍ୱର / ଅଧିଶ୍ୱରୀଙ୍କ ପ୍ରଶ୍ନ ଉଠିଲା ବହୁ ପ୍ରକାରର । ଝଡ଼ ହେଲା 'ଅଧିକାର' ଶବ୍ଦକୁ ନେଇ । ଆକାଶର ଛାତି ଜଳିଲା, ବଜ୍ରର ନିନାଦ ଶୁଭିଲା । ପରମ୍ପରାକୁ ଭାଙ୍ଗିଦେବାକୁ ଚାହୁଁଛୁ ? ପରୋକ୍ଷରେ ପ୍ରଭୁପଣକୁ ଆପଣେଇବା ମତଲବ । ହେଇପାରିବନି, ଆମେ ବଞ୍ଚିଥିବା ଯାକେ । ଥାଉ ସେଇ ଦୁଆର ଝରକା ସେଇମିତି ପରମ୍ପରାର ପ୍ରତୀକ ହେଇ ।

ସେଦିନ ପୁଣିଥରେ ମୋ ସରଳତା, ମୋ ଆପଣାପଣ, ସର୍ବୋପରି ମୋର ଅଖଣ୍ଡ ବିଶ୍ୱାସ ଉପରେ ଶକ୍ତ ଧକ୍କା ଲାଗିଲା । ମୋ ବିଶ୍ୱାସ କ୍ଷତାକ୍ତ ହେଲା, ରକ୍ତାକ୍ତ ହେଲା । ଦୁରନ୍ତ ଅଭିମାନରେ ପଡ଼ିଗଲା ମୋ ଦୀପରୁଖାଟା ମୁହଁମାଡ଼ି ।

ଅବଶ୍ୟ ମୁଁ ତାକୁ ପୁଣିଥରେ ଧୈର୍ଯ୍ୟର ସହ ସଜାଡ଼ିସୁଜାଡ଼ି ଠିଆ କରିଥିଲି । ହେଲେ ଛାତିଫାଟି ରକ୍ତ ଝରିଥିଲା । ମୋ ବିକ୍ଷୁବ୍ଧ ଚେତନା ଓ ନିଜସ୍ୱ ଇଲାକା ଭିତରୁ ଓହରି ଆସିଲା, ସୁଦୀର୍ଘ ସମୟର ବିସ୍ତୃତ ପରିଧି ଭିତରକୁ । ସତେ ଯେମିତି ସ୍ୱେଚ୍ଛାକୃତ ବନବାସ ।

ଭାବିଲି, ବନବାସର ମିଆଦ ସମ୍ପୂର୍ଣ୍ଣ ହେଲେ ହୁଏତ ସବୁ ସୁଧୁରିଯିବ। ସମୟ ନେବ ତା'ର ଦାୟିତ୍ୱ। କେତେ ସଜାଡ଼ିଥିବ ଥରକୁ ଥର। କେବଳ ସେଇ ଭରସାରେ, ଅନେକ ଦିନ ପରେ ଆଜି ଘରକୁ ଫେରି ପ୍ରଥମେ ଧାଇଁଗଲି ଦିଅଁଙ୍କ ଘରକୁ; ମୋ ଦୀପରୁଖାକୁ ସନ୍ଧୋଳିବାକୁ। ସମୟ ପାଖରୁ ତାକୁ ମାଗି ଆଣିବାକୁ। ହେଲେ କାହିଁ? ମୋ ପ୍ରଶ୍ନର ଉତ୍ତର ସେମାନେ ଭିନ୍ନ ବାଟରେ ଉପସ୍ଥାପିତ କଲେ। ତଟସ୍ଥ ହୋଇ ମୁଁ କେବଳ ଶୁଣିଲି।

'ଚାବି ପକେଇ ରଖିଥିଲୁ କି ସିନ୍ଦୂକରେ?'

ସେଇଟା କ'ଣ ସିନ୍ଦୂକ ଭିତରେ ଚାବି ପକେଇ ରଖିବା ଚିଜ? ସିଏ ମୋ ଅତୁଟ ବିଶ୍ୱାସର ଅଶରୀରୀ ସତ୍ତା ପରା। ଅଦେହୀ ବିଶ୍ୱାସକୁ ଚାବି ପକେଇବି କିମିତି?

କହିଲୁ ପରା ସେଇଟା ମୂଲ୍ୟବାନ ଜିନିଷଟିଏ। କାହିଁ କୋଉଠି ତ ଦିଶୁନି ଆଖିକୁ.....

ଦିଶିବନି। କେମିତି ଦିଶିବ ଯେ - ସମସ୍ତଙ୍କ ମନସିନ୍ଦୂକରେ ଯଦି ବାଣ୍ଟି ହେଇ ରହିଯାଇଥିବ....

ସିଏ ପୁଣି କିମିତିକା କଥା। ଆମ ସିନ୍ଦୂକ ସବୁକୁ ତ ଆମେ ଚାବି ପକେଇ ରଖିଛୁ। ମନକୁ ମନ ତ ଆଉ ସେ ରହିପାରିବନି। ଆମେ ରଖିଲେ ସିନା ସେ ରହିଥା'ନ୍ତା.... ଆମେ ତ ରଖିନୁ.... ତୋ ମନରେ ଖାଲି ସନ୍ଦେହ, ତୁ ସନ୍ଦେହୀ।

ତଥାପି, ଖୋଜି ଦେଖିଲେ ଆଉ ଥରେ ହୁଅନ୍ତା ଅବା ହୁଏତ ପୁରୁଣା ଚିଠି ଖଣ୍ଡେ ଭଳି ଚାପି ହୋଇ ଯାଇଥିବ।

ସମ୍ଭବ ନୁହେଁ। ନିଜ ଜିନଷ ନିଜ ଦାୟିତ୍ୱର ସହିତ ସଜାଡ଼ି ରଖିବା କଥା। ତୁ ଖୋଲା ପକେଇବୁ। ସେମିତି କଲେ କୋଉ ମୂଲ୍ୟବାନ ପଦାର୍ଥ ରହେ ନା ରହିବ?

କି ଆଶ୍ଚର୍ଯ୍ୟ! ହଁ, ମୋତେ ଆଶ୍ଚର୍ଯ୍ୟ ହିଁ ଲାଗିଲା। କାରଣ ମୋ ଆପଣା ମଣିଷମାନଙ୍କର ମୁହଁ ସବୁ ମୋତେ କିମିତି ଅଦ୍ଭୁତ ଓ ବିଚିତ୍ର ମନେହେଲା। ସେଇ ମୁହଁର ସୁନ୍ଦର ରଙ୍ଗ ବଦଳି ଯାଇଥିଲା, ବିକୃତ ଦିଶୁଥିଲା ଚେହେରା। ଚିହ୍ନି ହେଉ ନଥିଲା। ସ୍ୱର ମଧ୍ୟ ଅଲଗା, ଭଙ୍ଗାଭଙ୍ଗା ଶୁଭୁଥିଲା। କେମିତିକା ଘାଗଡ଼ା, ଅଧାଗିଳା, ଅସ୍ପଷ୍ଟ। ତଥାପି ମୁଁ କହିଲି, ବିନତି କରିବା ଭଳି ସ୍ୱରରେ- ସମସ୍ତେ ଦେଖିଲା, ଜାଣିଲା ଭଳି ତ ତାକୁ ସମୟର ଲମ୍ବା ଦଉଡ଼ିରେ ବାନ୍ଧି ଛାଡ଼ି ଯାଇଥିଲି ଏଇଠି, ଏଇ ମାଟିରେ ତୁମମାନଙ୍କ ଗହଣରେ। ଭାବିଥିଲି ହଜିବନି କି ଚୋରି ହେବନି ବୋଲି....

ତା' ମାନେ?

ମାନେ ପୁଣି ବୁଝେଇବାକୁ ହେବ? ଦାମିକା ପଦାର୍ଥକୁ ଖୋଲାରେ ଛାଡ଼ିଦେଇ ନିଦକରେ ଆଖି ବୁଜି ବସିଲୁ ତୁ....

ଚୋରି ହୋଇଗଲା ସତରେ!

ଅସମ୍ଭବ ନୁହେଁ।

ମୋର ତ ବିଶ୍ୱାସ ହେଉନି । କାରଣ ମୁଁ କେବେ ବିଶ୍ୱାସର ଅବମାନନା କରିନି ।

ତୁ ମିଛ କହୁଛୁ । ରୁଖା ଫୁଖା କିଛି ନାହିଁ କୋଉଠି । ସବୁ ମନଗଢ଼ା...

ଏଥର ଛାତିରେ ମୋର ତୀବ୍ର ଯନ୍ତ୍ରଣାର ଅସହ୍ୟ ଜ୍ୱାଳା । କୋଉ ଯୁଗରୁ କେଜାଣି ମୋ ଭିତରେ ଥାକଥାକ ପରସ୍ତପରସ୍ତ ହୋଇ ସାଇତା ହେଇଥିବା ବିଶ୍ୱାସର ଆକାଶଚୁମ୍ବୀ ଇମାରତଟା ଭୁଶୁଡ଼ି ପଡୁଛି ଝୁଡୁଝୁଡୁ ହୋଇ । ମୁଁ ଚାହିଁଛି, ବୋକାଙ୍କ ଭଳି ମୁଁ ଚାହିଁଛି.... କହି ନପାରିବାର..... ସହି ନ ପାରିବାର.... ଚାପି ରଖି ନପାରିବାର ଅକୁହା ଯନ୍ତ୍ରଣା ମୋତେ ଛଟପଟ କରୁଛି । ମୁଁ ଠକି ହେଇ ଯାଇଛି । ହେ ଭଗବାନ୍! ମୁଁ ଠକି ହେଇ ଯାଇଛି । ଠକି ହୋଇଯାଇଛି ମୋ ସ୍ୱଚ୍ଛ ଶୁଭ୍ର ବିଶ୍ୱାସ, ଧୋକା ଖାଇ ଯାଇଛି ସତରେ...

କେମିତି, କେମିତି ଏମିତି ସମ୍ଭବ ହେଲା ?

ପ୍ରଶ୍ନ କଲି ନିଜକୁ ନିଜେ । ଚାହିଁଲି ନିଜ ଭିତରକୁ ।

ମନେ ପଡ଼ିଲା, ବାପା କହିଥିଲେ ଏଇ କୁହୁକ ଦୀପ.... ଯାକୁ ଜାଳିଲେ ହିଁ ତୋ ଭିତରେ ଥିବା ଇଚ୍ଛାଶକ୍ତିର ଜିନ୍ ପଦାକୁ ବାହାରି ଆସି ସବୁ ଅସଜଡ଼ାକୁ ସଜାଡ଼ି ଦେବ । ନିଜ ଉପରୁ ବିଶ୍ୱାସ ହରେଇବୁନି ମା', କେବେ ବି ଏଇଟାକୁ ହାତଛଡ଼ା କରିବୁନି । ହଜେଇ ଦେବୁନି କେବେ... ମୋତେ ଚାରିଆଡ଼ ଅନ୍ଧାର ଦିଶିଲା । ଅସହାୟ ଲାଗିଲା ନିଜକୁ ବିପନ୍ନ ବୋଧ କଲି । ମୋ ଆଖିରେ ଲକ୍ଷେ ଯୁଗର ଶୂନ୍ୟତା ଛାଇ ଯାଉଥିଲା... ମୁଁ ଦେଖୁଥିଲି ସେଇ ଘନନୀଳ ନିରାଲମ୍ବ ଛାଇଟା ମୋତେ ଗ୍ରାସ କରିସାରି ମାଡ଼ି ଯାଉଛି ମୋ ଚାରିପଟକୁ ... ଚାରିପଟର ପୃଥିବୀ ଆଡ଼କୁ... ମୁଁ କିଛି କରିପାରୁନି... କିଛି ବି କରିପାରୁନି.... କାରଣ, ମୁଁ ତାକୁ ହଜେଇ ଦେଇଛି ମୋ ସରଳପଣରେ..... ହଁ, ମୁଁ ହାତଛଡ଼ା କରିଦେଇଛି । (ବାପା ତାକୁ ଆଜି କୋଉଠୁ ଖୋଜି ପାଇବି ? ବାପା..) ଆଖି ଫାଟି ପଡ଼ିଲା ଲୁହରେ । କିଏ ସଜାଡ଼ି ଦେବ ମୋର ଏଇ ସୁନ୍ଦର ପୃଥିବୀ, ଅସଜଡ଼ା, ଅବିନ୍ୟସ୍ତ ସ୍ୱାର୍ଥପର ମନକୁ ।

କିଏ ?

ସବୁ ନିଷ୍ଫଳ ।

ସବୁ ନିରର୍ଥକ ।

ଜୀବନର ଏଇ ସୁଦୀର୍ଘ ଯାତ୍ରାର ମାନେ କିଛି ରହିଲାନି ? ସବୁ ମିଛ ହୋଇଗଲା ? ବିରାଟ ପ୍ରଶ୍ନବାଚୀଟିଏ ଆସି ଠିଆ ହେଲା ମୋ ସାମନାରେ ।

ଚେତନା ମୋ ସ୍ଥାଣୁ ପାଲଟି ଯାଇଥିଲା । ବିସ୍ମୟଭରା ଆଖିରେ ମୁଁ ଚାହିଁଲି ପୃଥିବୀ ଆଡ଼କୁ, ଆଶାର ଆଲୁଅ ରେଖାଟିଏ କାଳେ ଦେଖିବି ବୋଲି । ହେଲେ... ଅବିଶ୍ୱାସର ଚାଦର ଭିତରେ ସେ ମୁହଁକୁ ଲୁଚେଇ ଦେଉଥିଲା ମୋତେ ଦେଖି ।



# ଶୂନ୍ୟବାସୀ

ଡାକ୍ତର ଶୂନ୍ୟବାସୀଙ୍କର ମନେହେଲା, ବର୍ତ୍ତମାନ ତାଙ୍କର ଏଇ ଯୋଉ ଜୀବନଟା ଗୋଟିଏ ଫ୍ରେମ୍‌ରେ ଫ୍ରିଜ୍‌ହୋଇ ରହିଯାଇଛି, ମୋଟେ ଆଉ ଆଗଉନି, ଯୋଉଠି ଅଛି ସେଇଠି, ଯେମିତି ଅଛି ସେମିତି, ନିଶ୍ଚଳ ସ୍ଥିର ଏଇ ମୁଣ୍ଡିଆ ପଥର ଭଳି; ସବୁ ଚାଲିଛି ସତ, ହେଲେ ଗୋଟିଏ ନିର୍ଦ୍ଦିଷ୍ଟ ନିର୍ଘଣ୍ଟ ଅନୁସାରେ । ଯେମିତି ସକାଳରୁ-ସଂଜରୁ-ରାତି, ପୁଣି ସେମିତି ରାତିରୁ ସକାଳ... । ସବୁ ମପାଚୁପା, ହିସାବ କରା । ଘଣ୍ଟାରେ କଣ୍ଟା ମିଳେଇଲା ଭଳି । ନିଦ ଭାଙ୍ଗିବାଠାରୁ ଆରମ୍ଭ କରି ଦାନ୍ତ ଘସିବା, ଦାଢ଼ି ବନେଇବା, ଗାଧେଇବା ଆଦି ପ୍ୟାଣ୍ଟ୍‌ସାର୍ଟ ପିନ୍ଧିବା ପର୍ଯ୍ୟନ୍ତ । ଠିକ୍ ସେମିତି ଜଳଖିଆରେ ଚୂଡ଼ା କଦଳୀ ନହେଲେ ବିସ୍କୁଟ ଖାଇ ପାଣି ଦି'ଗ୍ଲାସ୍ ପିଇବା । କାରଣ ଏଇ ଗାଉଁଲି ମଫସଲିଆ ଜାଗାରେ ଜଳଖିଆ ଦୋକାନଟିଏ ନାହିଁ । କେହି ବିଶ୍ୱାସ କରନ୍ତୁ ବା ନକରନ୍ତୁ, ଏବେବି ଏମିତି ଅନେକ ଗାଁ ଅଛି ଯୋଉଠି ଆବଶ୍ୟକ ହେଲା ଭଳି ଅନେକ ସୁବିଧା ନାହିଁ । କିନ୍ତୁ ସବୁଠି ମଣିଷ ଅଛନ୍ତି । ରୋଗ ଅଛି ଯେତେବେଳେ, ଡାକ୍ତରଖାନା ବି ଅଛି । ତା'ପରେ ଡାକ୍ତରଖାନା ଆଉଟ୍‌ଡୋରରେ ହାଜର ହେବା କଥା । ସବୁତକ ରୁଟିନ୍‌ବନ୍ଧା, ତା'ର ଛନ୍ଦ ଗୋଟିଏ ପ୍ରକାରର ।

ପଛିମାଣୀ ନଦୀକୂଳରେ ଏଇ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର । ବଡ଼ ନୁହଁ ମୋଟେ । ମାଛି ଭଳି ଗାଁ'ଟିଏ । ଗାଁ ଟା ଟିକିଏ ଦୂରରେ ଡାକ୍ତରଖାନାଠୁ । ଅପନ୍ତରା ଭିତରେ । ପାଖରେ ମୋଟେ ଜନବସତି ନାହିଁ । ଭୂତକୋଠି ଭଳି ଠିଆ ହୋଇଛି ଦି'ବଖୁରିଆ ଲମ୍ବା ବାରଣ୍ଡା ଥିବା ଆଜ୍‌ବେସ୍ଟସ୍‌ର ଘରଟିଏ,- ଗାଁ ମଣିଷର ଆଶ୍ୱାସନା, 'ଏଠି ଜୀବନ ମିଳିବ ।'

ଅବଶ୍ୟ ଡାକ୍ତରଖାନାକୁ ଖୁବ୍ ବେଶିହେଲେ ଦଶ ପନ୍ଦର ରୋଗୀ ଆସନ୍ତି ଦିନରେ । ନ ଆସନ୍ତି ବି ବେଳେବେଳେ । କିଏ ବି ଆସିବ, ସେମିତି ଅସୁବିଧା ନହେଲେ । ରୋଗ କହିଲେ ଝାଡ଼ାବାନ୍ତି, କାଛୁକୁଣ୍ଡିଆ ବେଶିହେଲେ ମ୍ୟାଲେରିଆ ଅଧିକାଂଶ ଦେହାତି, ଦିନ

ମଜୁରିଆ ଖଟିକିଆ ଶ୍ରେଣୀର । କିଛି ଛୋଟମୋଟ ଚାଷୀ, ଦୋକାନୀ ନହେଲେ ଗୋଟେ ଅଧେ ଅଫିସ୍‌ମାନଙ୍କର ତଳିଆ କର୍ମଚାରୀ ହାତଗଣତି । କିମ୍ବା ପାଖ ଖଣିଖାଦାନରେ କାମକଲା ମଣିଷ । ଏଠି ଦାମୀ ନାମୀ ରୋଗ ବୋଧେ ହୁଏନି । ରୋଗ ପ୍ରତିରୋଧକ ଶକ୍ତି ନିଶ୍ଚୟ ଅଧିକା ଏଇ ଖଟିକିଆ ପରିଶ୍ରମୀ ମଣିଷମାନଙ୍କର ।

ଶୂନ୍ୟବାସୀ ଭାବିଲେ, ହଜାର ଟଙ୍କିଆ ମୋଟାମୋଟା ବହି କିଣି ରାତିରାତି ଅନିଦ୍ରା ରହି ତାକୁ ଆୟତ୍ତ କରିଥିବା ବିଦ୍ୟାକୁ କାମରେ ଲଗେଇବାର ଅବକାଶ ନାହିଁ ଏଠି । ଅଭ୍ୟାସ ରଖିବା ପାଇଁ ସୁଯୋଗ ନାହିଁବି । ଅନେକ ଭୁଲି ହେଇଗଲାଣି । ଏଇ କେତେ ବର୍ଷ ଭିତରେ । ମେଡ଼ିକାଲ ରିପ୍ରେଜେଣ୍ଟେଟିଭଟିଏ ବି ଆସେନା, କାହିଁକି ଆସିବ ଔଷଧ ଦୋକାନ ତ ପାଖ ସହରରେ । ନଦୀ ଆରପାରି । ଯାହା ଛୋଟ ମୋଟିଆ ଔଷଧ  ଡାକ୍ତରଖାନାରେ ଥାଏ । କିଛି ଖୁଚୁରା ଦୋକାନୀ ବି ରଖିଥା'ନ୍ତି- ଯେମିତି ମୁଣ୍ଡବ୍ୟଥା କି ପେଟବଥା କି ଜ୍ୱର ପାଇଁ ବଟିକା । ପେଟପୂରା ଗଣ୍ଡିଏ ଖାଇବାକୁ ପାଉନଥିବା ମଣିଷଙ୍କ ପାଇଁ ଏଇତକ କିଣିବା ବି କଷ୍ଟସାଧ୍ୟ । ସରକାରଙ୍କ ସ୍ୱାସ୍ଥ୍ୟନୀତି ଏସବୁ ଗ୍ରାମାଞ୍ଚଳରେ ବେଶି କିଛି କାମ କରେନି । ଶୂନ୍ୟବାସୀଙ୍କର ମନେହେଲା ଏମାନଙ୍କ ପାଇଁ ସ୍ୱତନ୍ତ୍ର ସ୍ୱାସ୍ଥ୍ୟନୀତି ତିଆରି ହେବା ଉଚିତ୍ । ଯେମିତି ଏଇ ଶ୍ରେଣୀର ମଣିଷଙ୍କ କାମରେ ଲାଗିବ ।

ତେବେ ବିଚାର ଆଲୋଚନା ନିଷ୍ପତ୍ତି ନେବାକୁ ତ ବଡ଼ବଡ଼ ଦାମୀ ମଣିଷମାନେ ଅଛନ୍ତି । ପଛିମାଣୀ ନଈକୂଳର ଏଇ ଛୋଟିଆ ଗାଁର ଡାକ୍ତର ଶୂନ୍ୟବାସୀଙ୍କର ମତାମତର ଏଠି କିଛି ମାନେ ନାହିଁ । ତାଙ୍କର କାମ ନିର୍ଦ୍ଦିଷ୍ଟ । ରୋଗ ଆଉ ରୋଗୀ ମଧ୍ୟ ପ୍ରାୟ ନିର୍ଦ୍ଦିଷ୍ଟ । ବେଶିହେଲେ ଯକ୍ଷ୍ମା କି ହାଡ଼ଭଙ୍ଗା କେଶ୍ । ଡେଲିଭରି ପାଇଁ କେହି ଆସନ୍ତିନି । ଶିଶୁମୃତ୍ୟୁ ଅବଶ୍ୟ କିଛି ଅଛି । ଯେହେତୁ ଅଜ୍ଞାନ, ଅଶିକ୍ଷା ଭିତରେ ଏବେବି ଗ୍ରାମାଞ୍ଚଳ ରହିଛି । ଜନ୍ମମୃତ୍ୟୁ ଈଶ୍ୱରଙ୍କ ଇଚ୍ଛା ବୋଲି ଧରିନିଅନ୍ତି । ଏଠି ତେଣୁ ଅଭିଯୋଗ, ଆରୋପର ବହୁ ଦୂରରେ ଏଇ ସରଳ ଜନଜୀବନ । ଶୂନ୍ୟବାସୀ ଭାବିଲେ, ଏଇ ମଣିଷମାନଙ୍କୁ ସଚେତନ କରେଇବା ଆବଶ୍ୟକ । ସ୍ୱାସ୍ଥ୍ୟ ସମ୍ପର୍କରେ, ପରିମଳତା ସମ୍ପର୍କରେ ଓ ଶିଶୁଯତ୍ନ ନେଇ କିଛି ଜ୍ଞାନଦେବା ଆବଶ୍ୟକ । ଏକଥା ଭାବିବା ସଙ୍ଗେସଙ୍ଗେ ସେ ଭାବିଲେ ମଧ୍ୟ, ଯୋଉଠି ଭଲ ମୁଠାଏ ଖାଇବାକୁ ପାଉନାହାନ୍ତି ମଣିଷ, ତାଙ୍କୁ ଏସବୁ ଭଲମନ୍ଦ କଥା ଶୁଣିବାକୁ ଭଲ ଲାଗିବ କାହିଁକି ? ଖାଦ୍ୟ ହେଉଛି ପ୍ରଥମ, ତା'ପରେ ସ୍ୱାସ୍ଥ୍ୟ, ତା'ପରକୁ ଶିକ୍ଷା । ଏସବୁ ଦୃଷ୍ଟିରୁ ଆମରାଜ୍ୟ ଅନ୍ୟ ରାଜ୍ୟମାନଙ୍କ ତୁଳନାରେ ଟିକିଏ ପଛରେ ଅଛି । ସରକାରଙ୍କ ସ୍ୱାସ୍ଥ୍ୟ ନୀତିର ଅନେକ ସୁଫଳ ଏଇ ଗ୍ରାମାଞ୍ଚଳମାନଙ୍କରେ ପହଞ୍ଚି ପାରୁନି ଠିକ୍ ଭାବେ । ଯଦି ସ୍ୱେଚ୍ଛାସେବୀ ସଂଗଠନ କିମ୍ବା ସ୍ୱାସ୍ଥ୍ୟକମିଟି ସବୁ ଗଠନ କରାଯା'ନ୍ତା ହୁଏତ ସେମାନଙ୍କ ମାଧ୍ୟମରେ ଏଇସବୁ ଗ୍ରାମାଞ୍ଚଳରେ ସଚେତନତା ସୃଷ୍ଟି କରାଯାଇ ପାରନ୍ତା । କେବଳ

ଡାକ୍ତରଖାନାଟିଏ ଖୋଲିଦେଲେ ତ କାମ ସରିଲାନି । ଆନୁଷଙ୍ଗିକ ଅନେକ ବ୍ୟବସ୍ଥାର ଆବଶ୍ୟକତା ରହିଛି । ଏସବୁର ସଠିକ୍ ବ୍ୟବସ୍ଥା ନହେଲେ ପ୍ରବର୍ତ୍ତିତ ନୀତିର ସୁଫଳ ଲୋକଙ୍କ ପାଖରେ ପହଞ୍ଚି ପାରିବନି । ହେଲେ ଏକଥା କିଏ ବୁଝିଛି । ଆରୋପ, ପ୍ରତିଆରୋପ ଭିତରେ ହିଁ ଆମ ଜନସେବା କଙ୍କରିଳ ବାଟରେ ଆଗେଇ ଚାଲିଛି ।

ଚାଲୁଚାଲୁ ହଠାତ୍ ଠିଆ ହୋଇଗଲେ ଡାକ୍ତର ଶୂନ୍ୟବାସୀ ଏବଂ ଭାବନାକୁ ବି ଠିଆକରେଇ ଦେଲେ ମୁହୂର୍ତ୍ତେ । ଆଉ ଭାବିଲେ, ନିଜ ଭାବନା ଉପରେ ସମୀକ୍ଷା କଲାଭଳି । ମନେ ପକେଇଲେ, ହଁ, କ'ଣ ଭାବୁଥିଲେ ଟି ସେ, କାହିଁକି ଭାବୁଥିଲେ ଏତେକଥା ଗଭୀରଭାବେ ! ଭାବନାର ମୂଳଟିକୁ ଖୋଜିବା ପାଇଁ ସେ ପଛକୁ ଫେରିଲେ ।

ମନେପଡ଼ିଲା, ବର୍ତ୍ତମାନର ଜୀବନ ତାଙ୍କୁ ଫ୍ରିଜ୍ ହୋଇଗଲା ଭଳି ଲାଗୁଛି । ଲାଗୁଛି କ'ଣ, ଫ୍ରିଜ୍ ହିଁ ହେଇଯାଇଛି । ସେଇ ରୁଟିନ୍‌ବନ୍ଧା ଘୋଷରା ରାସ୍ତାରେ ଚାଲିଛି, ଚାଲିବା କଥା ବୋଲି । ଉତ୍ସାହ, ଉଦ୍ଦୀପନା ନାହିଁ କିଛି । ଏଇ ଡାକ୍ତରଖାନା ରୋଗୀ, ରୋଗଜନିତ ସଂପୃକ୍ତିକୁ ଛାଡ଼ିଦେଲେ, ସେ ଏଠି ଏକୁଟିଆ ଅଫିସ୍‌ର । ଅବଶ୍ୟ ମଧ୍ୟ ବୟସର ଫାର୍ମାସିଷ୍ଟିଟିଏ ଅଛି । ଦି'ଜଣ ସୁଇପର ଓ ଜଣେ କ୍ଲର୍କଙ୍କୁ ନେଇ ଏଇ ଡାକ୍ତରଖାନା ଚାଲେ ।

ତାଙ୍କର ପୋଷ୍ଟିଂ ହେବା ପୂର୍ବରୁ ଫାର୍ମାସିଷ୍ଟ ରଘୁ ନାୟକ ହିଁ ସବୁକିଛି ଥିଲା । ଡାକ୍ତରମାନଙ୍କର ପୋଷ୍ଟିଂ ହେଲେ ବି ଛ' ଆଠ' ମାସ ରହି ଚାଲିଯାଉଥିଲେ, କିଏ ଛୁଟିରେ ତ କିଏ ପଢ଼ିବା ପାଇଁ, ତେଣୁ ରଘୁ ଫାର୍ମାସିଷ୍ଟ ହିଁ ଆବଶ୍ୟକ ବେଳେ ଜରୁରୀ ଦାୟିତ୍ୱ ତୁଲେଇ ଦିଏ । ଜ୍ୱର, କାଶ, କାଛୁପାଇଁ କେତେଟା ଔଷଧ ନାଁର ସେ ମନେ ରଖିଛି ବାସ୍ । ଗାଉଁଲି ମଣିଷଙ୍କ ପାଇଁ ସେ ଅଧା ଡାକ୍ତର । ନ ହେବ ବା କାହିଁକି, ବାଆକୁ ବତା ଭଳି, ଲୋକଙ୍କ ଅସୁବିଧାବେଳେ ସେବା ଯୋଗେଇ ଆସିଛି ଯେତେବେଳେ । କେବଳ ଏଇଠି ନୁହେଁ, ଆମ ରାଜ୍ୟରେ ଅନେକ ଗ୍ରାମର ଏଇ ଅବସ୍ଥା । ଗୁଣି ଗାରେଡ଼ି ଟୁଣୁକା ଟୁଣୁକି ଆପେକ୍ଷା ଏଇ ସ୍ୱାସ୍ଥ୍ୟକର୍ମୀମାନେ ହୁଅନ୍ତୁ କି ହୋମିଓପାଥି ହୁଅନ୍ତୁ, ଗ୍ରାମ୍ୟ ଅଜ୍ଞାନ ମଣିଷଙ୍କ ପାଇଁ ଏମାନେ କିଛିଟା ନିର୍ଭରଯୋଗ୍ୟ ନିଶ୍ଚୟ ।

ତା' ଛଡ଼ା ଅନେକ ଗ୍ରାମ ସହର ପାଖରେ ଥିଲେ ମଧ୍ୟ ଯିବାଆସିବାକୁ ରାସ୍ତାର ସୁବିଧା ନାହିଁ । ଡାକ୍ତର ଥିଲେ ବି, ନିଜେ ସେ ଅସହାୟ । ଏଇତ ଦି'ବର୍ଷ ତଳେ ଡାକ୍ତର ଅବିନାଶ, ମାତ୍ର ରାତିଏ ଜ୍ୱର ଭୋଗି ହଠାତ୍ ଚାଲିଗଲା । ରୋଗ ନିରୂପଣ ପାଇଁ ସମୟ ନଥିଲା । ସଦରମହକୁମାକୁ ଯିବାପାଇଁ ସୁବିଧା ହେଲାନି । ଗାଡ଼ି ଥିଲେ ବି ତେଲ ନାହିଁ । ତେଲ ଡିପୋ ନାହିଁ ପାଖରେ, ଜନବସତି ତ ଦୂରରେ । ପାଖରେ କେହିନଥିଲେ, ଖବର ଦବାନବାକୁ ।

ଆମ୍ବୁଲାନସ୍ ଖରାପ । ମରାମତି ଅପେକ୍ଷାରେ । ସବୁକିଛି ଅଫିସିଆଲ ବ୍ୟବସ୍ଥାରେ

ଅନୁମତି ଓ ଅନୁମୋଦନର ଆବଶ୍ୟକତା ପଡ଼େ । ନିୟମରୁ ଗାରେ ଏପାଖ ସେପାଖ ହେବାର ସ୍ୱାଧୀନତା ନାହିଁ ସରକାରୀ କର୍ମଚାରୀର । ଜନ୍ମମୃତ୍ୟୁ ଏସବୁକୁ କିନ୍ତୁ ଅପେକ୍ଷା ରଖେନି । ଅତଏବ ଡାକ୍ତର ଅବିନାଶ ଚାଲିଗଲା ବ୍ରେନ୍ ମ୍ୟାଲେରିଆରେ । ଅଥଚ, ତାର ଅପମୃତ୍ୟୁ କାହାର ଦୃଷ୍ଟି ଆକର୍ଷଣ କଲାନି । କାହିଁକି, କେମିତି ହେଲା ବୋଲି କେହି ଅନୁସନ୍ଧାନ କଲେନି । କଲେବି ସମସ୍ୟାର ସମାଧାନ ପାଇଁ କୌଣସି ବ୍ୟବସ୍ଥା ହେଲାନି, କି ହୋଇ ପାରିବନି ମଧ୍ୟ । ଦାମୀ ଜୀବନଟିଏ ଚାଲିଗଲା । ଯିଏ ଅନ୍ୟକୁ ଜୀବନ ଦେବା ପାଇଁ ପ୍ରତିଶ୍ରୁତିବଦ୍ଧ, ତା' ନିଜ ଜୀବନ ହିଁ ବିପର୍ଯ୍ୟସ୍ତ, ଏଇ ତ ବିଡ଼ମ୍ବନା । ଏଭଳି ସ୍ଥିତିରେ କେହି ଭରସା କରିପାରନ୍ତିନି ରହିବା ପାଇଁ । ଫାର୍ମାସିଷ୍ଟ ହେଉ କି କମ୍ପାଉଣ୍ଡର ସେଇମାନେ ହିଁ ଭରସା । ଯଦି ସେମାନେ ଏଇ ଆଖପାଖର ବାସିନ୍ଦା ହେଇଥିବେ, ତା'ହେଲେ ଘରେ ରହିବାର ସୁଖଟିକୁ ସେମାନେ ଉପଭୋଗ କରନ୍ତି ।

ତଥାପି ଶୂନ୍ୟବାସୀ ମନେମନେ ଗର୍ବ ଅନୁଭବ କଲେ ଯେ, ଏତେ ଅସୁବିଧା ଏବଂ ଅଭାବ ସତ୍ତ୍ୱେ ସେମାନେ ଏଇ ଅଗମ୍ୟ ଅଞ୍ଚଳମାନଙ୍କରେ ରହି ମଣିଷର ସେବା କରି ଆସୁଛନ୍ତି ଅନ୍ୟମାନଙ୍କର ନିନ୍ଦା ପ୍ରଶଂସାକୁ ଖାତିର ନକରି । ତାର ମୂଲ କିଏ ଦଉ କି ନଦଉ ।

ଡାକ୍ତର ଶୂନ୍ୟବାସୀ ପୁଣି ଚାଲିବାକୁ ଲାଗିଲେ ଆଗକୁଆଗକୁ । ସଞ୍ଜ ଗଡ଼ିନି । ହେଲେ ମଉଳଣ ପଡ଼ି ଆସିଲାଣି ସୂର୍ଯ୍ୟର ଆଲୁଅ । ପାଞ୍ଚଟା ପର୍ଯ୍ୟନ୍ତ ସେ ଡାକ୍ତରଖାନା ଜଗି ବସିଥିଲେ । କେତେ ବସିବେ । କିଛି କାମ ନାହିଁ । କେହି ଲୋକନାହିଁ ମାନସିକ ସ୍ତରରେ ନିଜ ବିଚାରକୁ ଆଦାନପ୍ରଦାନ କରିବାକୁ । ସବୁଦିନ ଖବରକାଗଜଟିଏ ବି ଆସେନି । ନଈ ସେପାଖେ ସହର ଓ ସଦରମହକୁମା । ଅଥଚ ନଈ ଏକ ବାଧକ । ପାରିହେବାକୁ ଦିନଟିଏ ଲାଗେ । ସେଥିପାଇଁ ଘରୁ ଆସିଲାବେଳେ ସେ କିଛି ବହି, ମାଗାଜିନ୍ ନେଇ ଆସିଥା'ନ୍ତି ବୋଲି ସମୟଟା ଯେମିତି ସେମିତି ହେଇ କଟିଯାଏ । ନିଛାଟିଆ ଘର ! ନିର୍ଜନତା ସହିତ କେତେ କଥା କହିବେ । ପ୍ରକୃତି ସହିତ ମିଶିଯିବା ପାଇଁ ବି ଏଠି ବାଟନାହିଁ । ସବୁଆଡ଼େ ଖାଁ ଖାଁ ପଣ । ସାନବଡ଼ ହେଇ ଅନେକ ପଥର ମୁଣ୍ଡିଆ । ଯେମିତି କିଏ ଗଦେଇ ଦେଇ ଯାଇଛି ତରବରରେ । ଦୂବଘାସଟିଏ ଉଠିବାକୁ ନାହିଁ । ଗାଁ ଭିତରକୁ ଗଲେ ଗୋଟେ ଅଧେ ବର ଓସ୍ତ ଦେଖିବାକୁ ମିଳିବ । କେବଳ ଗାଁର ନିମ୍ନ ପ୍ରାଥମିକ ସ୍କୁଲ ଘରଟି ଅପନ୍ତରାର ଗୋଟିଏ କୋଣରେ ଠିଆ ହେଇଛି ଏକଣା ହେଇ । ଗାଁର ଆଲୋକସ୍ତମ୍ଭ ଟିଣବାଡ଼ିଆ ହେଇ ଦି' ବଖୁରିଆ ଘର ।

ସକାଳେ ପଚିଶ ତିରିଶ ପିଲା, ଆଲୁରୁବାଲୁରୁ ହେଇ, ବ୍ୟାଗ୍ ଖଣ୍ଡେ ଅଧେ ଝୁଲେଇ ପାଠପଢ଼ି ଆସୁଥିବା ସେ ଦୂରରୁ ଦେଖନ୍ତି । ଖୋଲା ନାଳିରାସ୍ତା ଉପରେ କଳା ଧଳା ଗୋବର କଣ୍ଢେଇ ଭଳି ହଇଚଇ ହୁଅନ୍ତି ପିଲାଏ ଘଣ୍ଟେ ଦି'ଘଣ୍ଟା ! ହାତରେ କାମ ନଥିଲେ ନିର୍ବିଷ୍ଟ ମନରେ ସେ ଚାହିଁ ରହିଥା'ନ୍ତି ସିଆଡ଼ିକି । ବୋଧହୁଏ ନିଜ ଭିତରର ଏକୁଟିଆ ପଣକୁ କିଛି

ସମୟ ଝାଙ୍କି ଦେବା ପାଇଁ; ଚହଳ କରିବା ଅଭିପ୍ରାୟରେ । ଯେମିତି ଅନ୍ଧାର ଭିତରେ ଭୟାର୍ତ୍ତ ଶିଶୁ ବୁନ୍ଦିଏ ଆଲୋକ ଖୋଜି ପାଇ, ତା' ଆଡ଼କୁ ବିକଳ ହେଇ ଚାହିଁ ରହେ ଠିକ୍ ସେମିତି । ମୁଁ ଏକା ନୁହେଁର ଚେତନା ।

ଏବେ ସଞ୍ଜ ଧୀରମନ୍ଥର ଗତିରେ ଆସୁଛି ଗାଁ ସଡ଼କ ଦେଇ । ଶୂନ୍ୟବାସୀ ସ୍କୁଲ ଆଡ଼କୁ ପାଦ ବଢ଼େଇଲେ । ଆହୁରି କିଛି ବାଟ ଗଲେ ଯାଇ ପଡ଼ିବ ସ୍କୁଲ । ସେଇ ସ୍କୁଲଘରେ ହିଁ ହେଡ଼ମାଷ୍ଟର ମଦନଓଝାଏ ରହନ୍ତି । ବୟସ୍କ ମଣିଷ । ଅବସର ସମୟ ପାଖେଇ ଆସିଲାଣି । ଆଖିରେ ମୋଟା ଚଷମା । ଧୋତି ଉପରେ ସାର୍ଟ ଖଣ୍ଡେ । ସ୍କୁଲର ବଖୁରିଏ ଘରକୁ ଫାଙ୍କକରି ନିଜ ଆସବାବପତ୍ରକୁ ଜାକିଜୁକି ରଖି, ଦିନରେ ସ୍କୁଲ, ରାତିରେ ରୋଷେଇ କରି ଓଝାଏ କର୍ତ୍ତବ୍ୟ ସମ୍ପାଦନ କରନ୍ତି । ଘରକୋଣରେ ଅଙ୍ଗାର ଚୁଲିଟିଏ, ଥାଏ । ବାରଣ୍ଡାର ଗୋଟିଏ କୋଣରେ ନିଜ ହାତରେ ରୋଷେଇ କରନ୍ତି । ଭାତ, ଡାଲିମା, ଆଳୁସିଝା ଦି'ଟା କି ବାଇଗଣ ପୋଡ଼ାଟାଏ । କେତେବା ଦରମା; ଘରକୁ ପଠେଇ ନିଜେ ଚଳିବାକୁ । ଶୂନ୍ୟବାସୀଙ୍କୁ ବି ସେ ଅନେକଥର ଡାକିଛନ୍ତି ।

"ଆସନ୍ତୁ ମିଶି ଖାଇବା । କିଛି ଅସୁବିଧା ନାହିଁ । ବରଂ ଭଲ ଲାଗିବ ।"

ସେ କିନ୍ତୁ ରାଜି ହେଇ ନାହାନ୍ତି । ବୁଢ଼ାମଣିଷଙ୍କୁ ସେ କଷ୍ଟଦେବେ- ଭଲ ଲାଗିବନି । ସେଇ ମାଷ୍ଟ୍ରେ ମଦନଓଝା । ତାଙ୍କର ଏକମାତ୍ର ବନ୍ଧୁ । ମରୁଭୂମିର ଓଏସିସ୍ । ଭଲ ମଣିଷଟିଏ । ଭଗବତ୍ ବିଶ୍ୱାସୀ । ସ୍ୱାଭାବିକ୍ । ପରିବେଶ ପରିସ୍ଥିତି ହିଁ ମଣିଷକୁ ଇଶ୍ୱରଙ୍କ ପାଖକୁ ଟାଣିନିଏ । ଶୂନ୍ୟବାସର ଶୂନ୍ୟତତ୍ତ୍ୱ ମନ ଭିତରର ଶୂନ୍ୟପଣକୁ 'ସବୁ ମିଛ ମୁଁ ସତ'ର ଶାଶ୍ୱତ ଚେତନାଟିଏ ଭରିଦିଏ ବୋଲି ଅବୋଧ ମଣିଷ ଅବିଚଳିତ ଭାବେ ଆତ୍ମସମର୍ପଣ କରିଦିଏ ତା' ପାଖରେ । ଚାଲିବା ବାଟରେ ଶୂନ୍ୟବାସୀ ଭାବିଲେ, ଦାର୍ଶନିକ ଭଳି । ସେଇ ମଦନ ଓଝାଙ୍କ ପାଖୁ ହିଁ ସଞ୍ଜହେଲେ ନିତି ମାଡ଼ିଆସନ୍ତି । ଦି' ଚାରିପଦ କଥା ହେବାପାଇଁ । ଦିହେଁ ଦିହିଁଙ୍କ ଏକୁଟିଆ ପଣକୁ ଭାଗ କରନ୍ତି । ଯଦିଓ ବୌଦ୍ଧିକ ସ୍ତରରେ ଦୁହେଁ ଭିନ୍ନ । ତଥାପି ମଣିଷର ହୃଦୟ ତାଙ୍କ ପାଖରେ ଅଛି । ତାଙ୍କ ସହିତ ଆଲୋଚନାବେଳେ ଜ୍ଞାନ ବିଜ୍ଞାନ, ଦେଶଜାତି, ଯୋଜନା ସରକାର, ଅଥବା ପରିବାର କି ପେଶା ସମ୍ପର୍କରେ ଗହନ ବିଷୟରେ ଚର୍ଚ୍ଚା ହୁଏନି । ମାଷ୍ଟ୍ରେ ତାଙ୍କୁ ଦୂରରୁ ଦେଖି ବାରଣ୍ଡା ଉପରେ ସପଟିଏ ପାରିଦିଅନ୍ତି ଖୁସିରେ । ଆଉ ସେ ପ୍ରଣାମ ଜଣେଇ ତାରି ଉପରେ ତଳକୁ ଗୋଡ଼ ଲମ୍ବେଇ ବସିପଡ଼ନ୍ତି ଚୁପ୍‌ଚାପ୍ । କଥା ଆରମ୍ଭ କରନ୍ତି ମାଷ୍ଟ୍ରେ । ନିଜ ଅଭିଜ୍ଞତାରୁ ଇଶ୍ୱର ସମ୍ପର୍କିତ, ବେଳେବେଳେ ଜୀବନ ସମ୍ପର୍କିତ କିଛି ବିଚାର, ବିଶ୍ୱାସକୁ ଆପଣା ଦକ୍ଷତା ଅନୁସାରେ ଓଝାଏ ତାଙ୍କ ଆଗରେ । ସେତେବେଳେ ସେ କେବଳ ନିଜକୁ ଜଣେ ଅଜ୍ଞ ମଣିଷ ଭଳି ପେଶ୍ କରନ୍ତି । ମନଧ୍ୟାନ ଦେଇ ଶୁଣନ୍ତି ଗୁରୁ ଆଗରେ ଶିଷ୍ୟ ଭଳି । ଫେରିଲାବେଳକୁ ମନ କିଛିତ ହାଲୁକା ହେଇଯାଇଥାଏ- ଫେରନ୍ତା ରାସ୍ତାଟା ଟିକିଏ ପାଖ ଲାଗେ ।

ବିନେ ବିନେ ମାଷ୍ଟ୍ରେ କହନ୍ତି- "ଆପଣଙ୍କୁ ତ କିଛି ଦେଇପାରୁନି । କପେ ଚା' ହେଲେ ଖା'ନ୍ତୁ ନା । ସାଙ୍ଗ ହୋଇ ଖାଇବାରେ ନିଆରା ଆନନ୍ଦ ଅଛି' । ସେ ହାତ ଯୋଡ଼ନ୍ତି । 'ଆଜ୍ଞା କ୍ଷମା କରିବେ । ସେ ସବୁ କିଛି ମୁଁ ଜୀବନର ଅମଳ କରିନି । କରିନି ବୋଲି ହୁଏତ ଏତେ ପଛରେ ପଡ଼ିଯାଇଛି ।' ତାଙ୍କ କଥା ଶୁଣି ମାଷ୍ଟ୍ରେ ହସନ୍ତି ଓ କୁହନ୍ତି- "ଆଜିକାଲି ସଭ୍ୟ ଶିକ୍ଷିତ ମଣିଷଙ୍କର ଅନେକ ପ୍ରକାରର ଅଭ୍ୟାସ ଅଛି । ଆପଣ ସେସବୁରୁ ଦୂରରେ ରହି ଏକ ଉଦାହରଣ ସୃଷ୍ଟି କରିଛନ୍ତି ।"

"ଆପଣ ଅଧିକା ପ୍ରଶଂସା କରୁଛନ୍ତି ମୋର, ମୁଁ ଖୁବ୍ ସାଧାରଣ ମଣିଷ"- ଉତ୍ତର ଦିଅନ୍ତି । ଦୂରରୁ ଦିଶିଲା ସ୍କୁଲ ଘର । ଧୂଆଁ ଉଠୁଛି । ଓଝାଏ ବୋଧେ ରୋଷେଇ ବସେଇଛନ୍ତି । ରାତି ହେବା ଆଗରୁ ରୋଷେଇ ନ ସାରିଲେ ଆଖିକୁ କିଛି ଦିଶିବନି । ଲଣ୍ଠନ ଆଲୁଅରେ ସେ ଦେଖିପାରିବେନି । ତେଲ ଖର୍ଚ୍ଚ ବି ତ ଅଛି । ଆଗରେ ଉଠାଣି, ପଥର ମୁଣ୍ଡିଆଟାଏ । ଶୂନ୍ୟବାସୀଙ୍କ ହାତରେ ଟର୍ଚ୍ଚ ଜଳି ଉଠିଲା । ବିଛିହୋଇ ପଡ଼ିଲା ଆଲୁଅ ! ଆଖପାଖ ଭଲ କରି ଦେଖିନେଲେ, କାଳେ କିଛି ସରୀସୃପ ଥିବେ । ଓଝାଙ୍କ ପାଖକୁ ଯିବା ଆଗରୁ ତାଙ୍କର ମନେହେଲା ପଥର ମୁଣ୍ଡିଆ ଉପରେ କିଛି ସମୟ ବସିଯିବାକୁ ।

ଖୋଲା ପଡ଼ିଆ । ପବନ ବହୁଛି ଧୀରେ ଧୀରେ । ପକେଟରୁ ରୁମାଲ କାଢ଼ି ପଥର ଉପରେ ପକେଇ ବସିଗଲେ ଶୂନ୍ୟବାସୀ । ଉଦାସ ଭାବ କେମିତି ଛାଇ ହୋଇଗଲା ମନ ଭିତରେ । ଚାହିଁଲେ ଉପରକୁ- ନୀଳରଙ୍ଗର ସଞ୍ଜୁଆ ଆକାଶ, ଆଉ ଟିକିଏ ପରେ ତାରାର ଟଗରମାନେ ଫୁଟିବେ ଚୁପ୍‌ଚାପ୍ ହୋଇ । ତଳେ ପଥୁରିଆ ଖାଁ ଖାଁ ପଣ ସାଙ୍ଗକୁ ନିଜର ଶୂନ୍ୟ ଅନୁଭବ ସବୁ ମିଶି ମାଛି ଅନ୍ଧାର ଭିତରେ ଆଉଟି ହୋଇଗଲା । ପଛିମାଣୀର ଆରକୂଳ ବିଜୁଳି ଆଲୁଅରେ ଝଲମଲ କରୁଛି, ଦିଶୁଛି ଦୂରରୁ । ଅଥଚ ଏ କୂଳରେ ଅନ୍ଧାର ଜମାଟ ବାନ୍ଧିଛି ଠିକ୍ ମଣିଷ ଭିତରର ପାଶେ ଅନ୍ଧାର ପାଶେ ଆଲୁଅ ଭଳି । ମଦନଓଝାଙ୍କ ଯିବା ବାଟରେ, ଏଇ ପଥରମୁଣ୍ଡିଆ ଉପରେ ସେ ପ୍ରାୟ ବସନ୍ତି କିଛି ସମୟ । ଏଇ ବସିବାଟା ମଧ୍ୟ ତାଙ୍କର ସମୟ ନିର୍ଘଣ୍ଟ ଭିତରୁ ଗୋଟିଏ । ଏଠି ବସିଲେ ଅନେକ ଅନେକ ଭାବନା ଆପେ ମନରେ ବଉଳି ଉଠେ । ମନେହୁଏ, ଜୀବନଟା ଦୁଃଖପୂର୍ଣ୍ଣ । ଐଶ୍ୱର୍ଯ୍ୟର ଉଜାଣି ଭିତରେ ମାତ୍ର ଚାରୋଟି ଦୃଶ୍ୟ ରାଜପୁତ୍ର ସିଦ୍ଧାର୍ଥଙ୍କୁ ଜୀବନମୁକ୍ତିର ମାର୍ଗ ଦେଖେଇ ବୁଦ୍ଧ କରିଦେଇଥିଲା । ଆଉ ସେ.... ସିଏତ ନିତି ଦେଖୁଛନ୍ତି ଏମିତି କେତେ ଦୃଶ୍ୟ- ମଣିଷର ଭିତର ବାହାର ସବୁ କାଟିକୁଟି ଚିରିଚାରି ଦେଖିଲାବେଳେ, ବିଜ୍ଞାନର ଚମତ୍କାରିତା ତାଙ୍କୁ ଯେତିକି ବିସ୍ମୟ ଚକିତ କରିଛି, ସେତିକି ମାତ୍ରାରେ ଭାବୁକ ବି କରି ତୋଳିଛି । ମନେହେଉଛି ବେଳେବେଳେ, ଏତେ ସବୁପରେ ବି କିଛି ସତ ନୁହେଁ, ସବୁ ମିଛ- ତୁଚ୍ଛା ମାଟି ଏଇ ଶରୀର । ଏଇ ତୁଚ୍ଛ ମାଟିପିଣ୍ଡ ଭିତରେ ଦେଖି ପାରୁନଥିବା, ଛୁଇଁପାରୁ ନଥିବା, ବୁଝେଇ ପାରୁନଥିବା, ଅଥଚ

ଅନୁଭବ କରି ପାରୁଥିବା, ଆଖି ପିଛୁଳାକେ ଚଉଦ ବ୍ରହ୍ମାଣ୍ଡ ପରିକ୍ରମା କରିଆସିପାରୁଥିବା ଏଇ 'ମନ'ଟା କି ପଦାର୍ଥ ? ? ଯା'ର ପ୍ରଭାବ ଏତେ ପ୍ରଚଣ୍ଡ ! ! ବୁଦ୍ଧି ହେଲା ଦିନୁ ବିଶେଷ କରି ନୂଆ ନୂଆ ଡାକ୍ତରୀପାଠ ପଢ଼ିଲାବେଳେ, ଶରୀର ତତ୍ତ୍ୱ ଜାଣିବାକୁ, ମଣିଷ ଶରୀର କାଟି ଡିସ୍‌କସନ୍ କରିବା ଅବସରରେ ସେ କୌତୂହଳବଶତଃ ଏଇ 'ମନ' ଆଉ 'ପ୍ରାଣ'କୁ ଅନେକ ଖୋଜିଛନ୍ତି । ଖୋଜିଛନ୍ତି ବି 'ଆତ୍ମା'କୁ । କୋଉଠି ଲୁଚିଛି ସେ ? ଶରୀର ସବୁଅଂଶକୁ କେଳେଇକୁଟି ଦେଖିଛନ୍ତି, ପଢ଼ିଛନ୍ତି, ହେଲେ ହତାଶ ହେଇଛନ୍ତି । ମନେମନେ ହସିଲେ ଶୂନ୍ୟବାସୀ, ସେଦିନର କୌତୂହଳୀ ତାରୁଣ୍ୟ ପାଇଁ । ହେଲେ ଆଜି ! ଆଜି ତ ସେ ବୟସ୍କ, ଅଭିଜ୍ଞ ଡାକ୍ତର । ତଥାପି ବି କ'ଣ ସେଇ କୌତୂହଳର ଅବସାନ ଘଟିଛି ? ନିଛାଟିଆ ନିର୍ଜନ ସମୟମାନଙ୍କରେ ଏ ପ୍ରକାର ବିଚିତ୍ର ପ୍ରଶ୍ନ ସବୁ ସାମ୍ନାରେ ଠିଆ ହୋଇ ତାଙ୍କୁ କ'ଣ କମ୍ ବିବ୍ରତ କରୁଛି ?

ଆଜି, ଏଇ ମୁହୂର୍ତ୍ତରେ ବି ସେଇୟା ଘଟିଲା । ଏଇ ନିଷ୍ପ୍ରାଣ ପଥର ମୁଣ୍ଡିଆ ପୁଣି ଥରେ ତାଙ୍କ ଚେତନାକୁ ଚହଲେଇ ଦେଇଛି । ଶୂନ୍ୟବାସୀଙ୍କର ମନେହେଲା, ଏଇ ମୁଣ୍ଡିଆ ଖଣ୍ଡିକ ତାଙ୍କ ପାଇଁ ବୋଧିଦ୍ରୁମ କିମ୍ବା ବିବେକାନନ୍ଦଙ୍କ ରକ୍‌ମେମୋରିଆଲ ସଦୃଶ । ନହେଲେ ଏମିତିକା ବିଚିତ୍ର ଅନୁଭବ ତାଙ୍କର କାହିଁକି ଆସେ । ଦିନେଦିନେ ପ୍ରାର୍ଥନା କରିବାକୁ ମନ ଡାକେ । ଅସ୍ଥିର ଅଶାନ୍ତ ମନକୁ ସ୍ଥିର ସମାହିତ କରିବା ପାଇଁ ସେ ବିଶ୍ୱନିୟନ୍ତାଙ୍କ ଉଦ୍ଦେଶ୍ୟରେ ଆଖିବୁଜି ବସିପଡ଼ନ୍ତି ଧ୍ୟାନମୁଦ୍ରାରେ । ହାତ ଯୋଡ଼ନ୍ତି- "ହେ ମଙ୍ଗଳମୟ ! ମୁକ୍ତ କର କାମନାରୁ, ଦୁଃଖ ରାତି ପାହୁ । ମୁକ୍ତକର ଜଗତଜନଙ୍କୁ ପାପତାପ ଲୋଭମୋହରୁ । ତମ ଅମୃତମୟ ଆଶୀର୍ବାଦ ଝରିପଡୁ ଏଇ ମାଟି ଉପରେ ।"

ପ୍ରାର୍ଥନାର ତନ୍ମୟତାରେ ସେ ଭୁଲିଯା'ନ୍ତି ନିଜକୁ । ମନେପଡ଼େନି ସେ କାହାର ପୁଅ, ସ୍ୱାମୀ, କିଏ ସେ ? ବିଚିତ୍ର ଏକ ଅନୁଭୂତି ! ଅନୁଭବର ତଉଲରେ ଭାବନ୍ତି, ସତେତ ! ସେ ଆଉ କିଏ କି ! ଅସୀମ ଭିତରୁ ଛିଟିକି ପଡ଼ିଥିବା ଏକକ ଚେତନାଟିଏ ଶୂନ୍ୟବାସୀ ! ଡାକ୍ତର ଶୂନ୍ୟବାସୀ । ଅନୁଭବର ଗରିମାରେ ସ୍ଫୀତ ହୋଇଉଠେ ମନପ୍ରାଣ । ଏବଂ ନିମିଷକରେ ଉଡ଼େଇ ଦିଅନ୍ତି ଆପଣାର ସୂକ୍ଷ୍ମ ଚେତନାକୁ ସମଗ୍ର ମଣିଷ ଜାତିର ଶୁଭ ମନାସିବାକୁ । ହାଲୁକା ଲାଗେ ନିଜକୁ ଭୂମା ଭିତରେ ଆବିଷ୍କାର କରି । ଉଲ୍ଲସିତ ଲାଗେ ନିଜ ଭିତରେ ଅନନ୍ତତ୍ୱକୁ ଆବିଷ୍କାର କରି । ଜଗତ ପାଇଁ ପ୍ରାଣ କାନ୍ଦେ । ନିଜ ଦୁଃଖ ଛୋଟ ହେଇଯାଏ । ବିଶ୍ୱ ଆଡ଼କୁ ଉନ୍ମୁଖ ହୋଇଯାଏ ଚେତନା ।

ହେଲେ, ଏଇ ଅବସ୍ଥା ବେଶି ସମୟ ସ୍ଥିର ରହେନି ।

ଚେତନା ରୂପ ଗ୍ରହଣ କରେ ।

ଫେରିଆସନ୍ତି ସେ ବାସ୍ତବତାର ପଥର ମୁଣ୍ଡିଆ ଉପରକୁ ନିଗୁଡ଼ା ସଂସାରଟିଏ ହେଇ ।

ଚିନ୍ତାର ପାହାଡ଼ ଲଦି ହୋଇ ପଡ଼େ । ବିଚାରରେ ଦିଶିଯାଏ ଫଟା ଖାଙ୍କଳା ସଂସାରୀଦିଗଟା, ସେଠି କେତେ ଦାୟିତ୍ୱ । ଯୁକ୍ତି କରି ନିଜକୁ ନିଜେ, ଏ ପ୍ରକାର ଭାବନାକୁ ସେ ଆଡ଼େଇ ଦେବାକୁ ପ୍ରୟାସ କରନ୍ତି । ଭାବନ୍ତି, କେମିତି କାମନାଶୂନ୍ୟ ହେବ ମଣିଷ ? ଜୀବନ ଅଛି ତ କାମନା ଅଛି– ଦାୟିତ୍ୱ ଅଛି । ଏସବୁରୁ ମୁହଁ ଆଡ଼େଇ ସନ୍ନ୍ୟାସ ନେଲେ ହୁଏତ ସେ ବୁଦ୍ଧଟିଏ କି ପରମହଂସଟିଏ ସିନା ପାଲଟିଯିବେ, କିନ୍ତୁ ଦାୟିତ୍ୱବାନ୍ ପୁଅଟିଏ କି ସ୍ୱାମୀଟିଏ କି ବାପଟିଏ ତ ହୋଇ ପାରିବେନି । ପରିବାର ତଥା ସମାଜ ପାଇଁ ତ କିଛି କର୍ତ୍ତବ୍ୟ ଅଛି । ସେତକ ନ କଲେ ସେ ଋଣ ମୁକ୍ତ ହେବେ କେମିତି । ସ୍ୱାର୍ଥପର ମନେହେବ ନିଜକୁ । ନା, ଏକଥା ସେ ପାରିବେନି । ତାଙ୍କର ବୁଦ୍ଧ ହେବା ଦରକାର ନାହିଁ, ଦରକାର ନାହିଁ ପରମହଂସ ପଦ । ଏଇ ସଂସାର ପାଇଁ କାମନା ସାଗର ଭିତରେ ପୂରାପୂରି ନବୁଡ଼ିଲେ ବି, ଡୁବଟିଏ ତାଙ୍କୁ ମାରିବାକୁ ହିଁ ପଡ଼ିବ– ଚାକିରିକୁ ଆଶ୍ରା କରିବାକୁ ହେବ ।

ଆଉ ଆଶ୍ରା କରିଛନ୍ତି ବୋଲି ହିଁ ତ ସେ ଏଇ ଅପନ୍ତରାରେ ପଡ଼ିଛନ୍ତି । ନହେଲେ ଏଠି କି ସୁବିଧା ନା ସୁଖ । ମେଡ଼ିକାଲ କଲେଜର ବେଷ୍ଟ ଗ୍ରାଜୁଏଟ୍ ଡାକ୍ତର ଶୂନ୍ୟବାସୀ ନିଜର ନିପାରିଲା ସଂସାରୀପଣ ପାଇଁ ତାଚ୍ଛଲ୍ୟ କରି ହସିଲେ । କିଛି କରି ନପାରିବାର ଗ୍ଲାନିବୋଧରେ ଭରଭରେଇ ଉଠିଲା ମନ । ଭଲ ସର୍ଜନଟିଏ ହୋଇ ଖୁବ୍ ନାଁ କରିବେ– ସ୍ୱପ୍ନ ଦେଖିଥିଲେ । ହେଲେ ଭାଗ୍ୟ ଆଣି କୋଉଠି କୋଉଠି ଥୋଇଲା । କେବେ ପାହାଡ଼ ଉପରେ, ତ କେତେବେଳେ ପାଣି ଭିତରେ । ସବୁପ୍ରକାର ଅଭିଜ୍ଞତାକୁ ସେ ଗୋଟେଇଛନ୍ତି । ଅସୁବିଧା ସାଙ୍ଗକୁ ଏଠି ବୋଝ ବୋଝ ନିଛାଟିଆ ପଣ । 'କର୍ମ ଆଦରି ସହେ ଦୁଃଖ'....କ'ଣ ଆଉ କରାଯାଇପାରେ । ଡାକ୍ତରଖାନାର ଏଇ ଦି' ବଖରିଆ ଆଜବେଷ୍ଟସ୍ ଘରେ ବର୍ଷାଦିନେ ଟୁପ୍‌ଟାପ୍ କ୍ଲିଂ କ୍ଲିଂ ର ଛାନ୍ଦସିକ ବିଳାସ, ଖରାଦିନେ ତହଳବିକଳ ଝାଞ୍ଜିପିଟା ତାତି ସାଙ୍ଗକୁ ଶୀତଦିନର ମଞ୍ଜଥରା ଶୀତ । ବଖରାକରେ ଅଫିସ୍ ଚାଲେ । ସେଠି ଟେବୁଲ ଚଉକିଟିଏ । କିଛି କାଗଜପତ୍ର ଫାଇଲ । କାନ୍ଥକୁ ଲାଗି କାଠ ଆଲମିରା । ଆଲମିରା ଭିତରେ ଔଷଧପତ୍ର ଡାକ୍ତରୀ ସରଞ୍ଜାମ । କାନ୍ଥରେ ଗାନ୍ଧିଙ୍କ ଫଟୋଟିଏ ବି ଲାଗିଛି । ଆର ବଖରାରେ ଆଉଟ୍‌ଡ଼ୋର । ରୋଗୀ ଦେଖା ଟେବୁଲ୍, ଉଚ୍ଚାଳୁହା ଖଟିଆ ସାଙ୍ଗକୁ ଟୁଲଖଣ୍ଡେ ଓ ଚଉକିଟିଏ ବାସ୍ । କାନ୍ଥରେ ପରିବାର ନିୟୋଜନର ଲମ୍ବା ବିଜ୍ଞାପନ 'ଆମେ ଦୁଇ ଆମର ଦୁଇ' । ତା' ପାଖକୁ ଲାଗି ମଣିଷ ଶରୀରର ପୂର୍ଣ୍ଣାଙ୍ଗ ଚିତ୍ର ଚିହ୍ନେଇ ଦଉଛି ଏଇଟା ଧମନୀ, ଇଏ ମହାଶିରା, ଏଇଟା ବୃକକ୍, ହୃତ୍‌ପିଣ୍ଡ ଇତ୍ୟାଦି । ଏବଂ କୌଣସି କୌଣସି ଉଦାସ ମୁହୂର୍ତ୍ତରେ ନକାରତ୍ମକ ଭାବନାକୁ ଉଜ୍ଜୀବିତ କରି ଚେତେଇ ଦଉଛି ଯେ– 'ଚିରି ଭିତର ଦେଖ କି ନାରଖାର ।'

ଆରପାଖ କାନ୍ଥରେ କେବେଠୁ କେଜାଣି, କିଏ ଟଙ୍ଗେଇଛି ନିଶ୍ଚୟ 'ନିରବ ଗ୍ରହନ୍ତୁ'ର ଚମତ୍କାର ଜଳ ଛବିଟିଏ । କୋଉ ଔଷଧ କମ୍ପାନିର ବିଜ୍ଞାପନ । ଗୁବୁଲି ଗାବୁଲି କୁନି ଝିଅଟିଏ

ବଡ଼ ବଡ଼ ଆଖି ଦେଖେଇ ପାଟିରେ ତର୍ଜନୀ ଆଙ୍ଗୁଠି ଦେଇ ଗାରଡେଇ ଚାହିଁଛି । ଆଖିରେ ପଡ଼ିଲା ମାତ୍ରେ ହିଁ ହତାଶ କରି ପକାଉଛି ଡାକ୍ତର ଶୂନ୍ୟବାସୀଙ୍କୁ । ସେ କିନ୍ତୁ ବିବ୍ରତ ହୋଇ କୁହନ୍ତି- ଝିଅରେ! ତୋ ପାଟିରୁ ଆଙ୍ଗୁଠିଟାକୁ ଟିକିଏ ଖସେଇ ଆଣି ମୋ ସହିତ ଦି' ଚାରିପଦ ଦୁଃଖସୁଖ ହୁଅନ୍ତୁନି ? ଏଇଠି ଏଇ ଘର ଭିତରେ ନାଚିକୁଦି ଜବରଦସ୍ତ ନିର୍ଜ୍ଜନତାକୁ ତଡ଼ି ଭଗେଇ ଦିଅନ୍ତୁନି ନଇ ସେପାରିକୁ ? ଆ'ରେ ଝିଅ, ଆ' ଡେଇଁପଡ଼ ମୋ' କୋଳକୁ । କେତେ କାହାଣୀ ଶୁଣେଇବି ତୋତେ । ହେଲେ ତୋର ସେଇ ଆଙ୍ଗୁଠିଟା ତଳକୁ ଖସେଇ ଦେ' ପ୍ରଥମେ । ଦେଖୁନୁ ନା, ଏଠି କେମିତି ମୃତ୍ୟୁର ନିରବତା ବିଛି ହେଇ ପଡ଼ିଛି । ତୋତେ କ'ଣ ଭଲ ଲାଗୁଛି ? ମୁଁ ତ ସହି ପାରୁନି । । ଆ' ମୋ ସୁନାଝିଅ ! ଓହ୍ଲେଇ ଆସ ମୋ' ପାଖକୁ, ଖେଳିବା ସାଙ୍ଗ ହେଇ... ! ସେ କିନ୍ତୁ ତା' ବବୁରିବାଳକୁ ଲହରେଇ ଆଖି ଦେଖେଇ ଚୁପ୍ କରେ- 'ଦୁଷ୍ଟାମି ନାହିଁ । ଶୋଇପଡ଼ ଚୁପ୍‌ଚାପ୍ ।' ମା ଭଳି ଧମକାଏ । ମନ ମରିଯାଏ ଶୂନ୍ୟବାସୀଙ୍କର । ବାଧ ହେଇ ସଜାଡ଼ି ବସନ୍ତି ଘରଟାକୁ ଶୋଇବା ଉପଯୋଗୀ କରିବାକୁ ।

ଶୋଇବା ଘର, ମାନେ ସେଇ ରୋଗୀଦେଖା ଘରକୁ ଲମ୍ବା ତାରଟିଏ ଟାଣି ଦି' ଭାଗ କରିଦେଇଛି ସୁଇପର ଅରକ୍ଷିତ । ଆଉ ସେଥିରେ ସେ ନେଙ୍ଗାକନାର ପରଦାଟିଏ ଟାଣି ଦେଇଛନ୍ତି । ରାତିହେଲେ ରୋଗୀଦେଖା ଖଟିଆକୁ ଟାଣିଆଣି ସେଇ ବେଡ୍ ଉପରେ ନିଜ ଚାଦର ବିଛେଇଦେଇ ଶୋଇପଡ଼ନ୍ତି ରାତିଟା କୌଣସି ମତେ । ଅବଶ୍ୟ ସଦାନନ୍ଦ ଆଉ ଅରକ୍ଷିତକୁ ସେ ଆଦେଶ କରିଛନ୍ତି, ତମେ ଦୁହେଁ ପାଳିକରି ଶୋଇବ ଏଠି - କାରଣ ଭଲମନ୍ଦ ବେଳକୁ କେହି ନାହିଁ ପାଖରେ । ସେମାନେ ବି ମାନିଛନ୍ତି । କାରଣ ଗାଁ ଭିତରୁ ସେମାନେ ଖାଦ୍ୟ ନେଇ ଆସନ୍ତି ତାଙ୍କ ପାଇଁ ଦି' ଓଳି । ଏଠି ତ ହୋଟେଲ ନାହିଁ । ତିନିଚାରି ଜଣ କିରାଣୀ ଆଉ ଗ୍ରାମସେବକ ସହିତ ରଘୁ ଫାର୍ମାସିଷ୍ଟ ମିଶି ମେସ୍‌ଟିଏ କରିଛନ୍ତି ଗାଁ ଭିତରେ । ସେଇ ମେସ୍‌ରେ ସେ ମଧ୍ୟ ସାମିଲ୍ ହୋଇଛନ୍ତି । ସେମାନେ ଭାତ ଡାଲି ଶାଗ ଯାହା ଖାଆନ୍ତି ତାହା ହିଁ ଆଣିଦିଅନ୍ତି ଆସିଲା ବେଳେ । ସେଇତକରେ ଡାକ୍ତର ଶୂନ୍ୟବାସୀଙ୍କୁ ସ୍ନେହସାର, ପୁଷ୍ଟିସାର, ଲୌହସାର ଆଦି ଯେତେକ ଖାଦ୍ୟପ୍ରାଣ ଗୋଟେଇବାକୁ ପଡ଼େ । ଆଉ କିଛି ବି ଉପାୟ ନାହିଁ ।

ଶୂନ୍ୟବାସୀଙ୍କର ହଠାତ୍ ମନେ ହେଲା, ବହିପାଠ, ସ୍ୱାସ୍ଥ୍ୟ ନିୟମ ସହିତ ବାସ୍ତବ ସ୍ଥିତିର କୌଣସି ମେଳତାଳ ନାହିଁ । ସହରାଞ୍ଚଳରେ ଥିବା ଡାକ୍ତରବନ୍ଧୁମାନଙ୍କୁ ଏଇସବୁ ଅଗମ୍ୟ ଦୁର୍ଗମ ଗ୍ରାମାଞ୍ଚଳର ଦୁଃସ୍ଥିତ କଥା ମନଗଢ଼ା କାହାଣୀ ଭଳି ଲାଗେ । ସେମାନେ ଅବଶ୍ୟ ସହର ଭିତରେ ଓଡ଼ିଶାର ପ୍ରକୃତ ଆତ୍ମାକୁ କେବେବି ଉପଲବ୍ଧି କରି ନ ଥିବେ । ସ୍ୱାସ୍ଥ୍ୟ ଓ ପରିମଳ ବ୍ୟବସ୍ଥା ସମ୍ପର୍କରେ ଅହରହ ଉପଦେଶ ଦେଉଥିବା ଡାକ୍ତର ଶୂନ୍ୟବାସୀ

ସକାଳ ହେଲେ ନିତ୍ୟକର୍ମ ସମ୍ପାଦନ ପାଇଁ ମୁକୁଳା ପ୍ରକୃତିକୁ ହିଁ ବ୍ୟବହାର କରନ୍ତି । ପିଇବା ଗାଧୋଇବା ପାଇଁ ସ୍କୁଲରୁ ପାଣି ଆସେ । ନଳକୂପଟିଏ ବସେଇବା ପାଇଁ ସେ ଏଇଥର ଚେଷ୍ଟା କରିଛନ୍ତି । ସଫାପାଣି ନିହାତି ଦରକାର ଡାକ୍ତରଖାନା ପାଇଁ । ଶୂନ୍ୟବାସୀଙ୍କୁ ଦୁଃଖ ଲାଗିଲା, ଘରେ ଘରେ ସ୍ୱାସ୍ଥ୍ୟ ସେବା ପହୁଞ୍ଚେଇ ଦେବାର ପ୍ରତିଶ୍ରୁତିବଦ୍ଧ ସରକାରଙ୍କର ସକଳ ପ୍ରଯତ୍ନ ସତ୍ତ୍ୱେ, କାହିଁକି କେମିତି କେଜାଣି ରାଜ୍ୟର ଅନେକ ସ୍ୱାସ୍ଥ୍ୟକେନ୍ଦ୍ରରେ ମୌଳିକ ଭିତ୍ତିଭୂମିର ଅଭାବ ରହିଆସିଛି । ଏବଂ ଏସବୁ ଅସୁବିଧା ସତ୍ତ୍ୱେ ବି ସମାଜପ୍ରତି ପେଶାପ୍ରତି ପ୍ରତିବଦ୍ଧତା ଥିବା ଏବଂ ଚାକିରିକୁ ଆଶ୍ରା କରିଥିବା ଶୂନ୍ୟବାସୀମାନେ ଦାୟିତ୍ୱ ତୁଲେଇ ଆସୁଛନ୍ତି ମଧ । କ'ଣ ଆଉ ସେମାନେ କରିପାରିବେ, ବିଦ୍ୟାବୁଦ୍ଧିକୁ ସିନା ଆୟତ୍ତ କରିଛନ୍ତି- ନହେଲେ ସେମାନେ ଖୁବ୍ ଅସହାୟ, କିଂକର୍ତ୍ତବ୍ୟବିମୂଢ଼ !

ଶୂନ୍ୟବାସୀଙ୍କୁ ସତରେ ଅସହାୟ ଲାଗିଲା । ସଞ୍ଜ ମାଡ଼ି ଆସୁଛି । ଅନ୍ଧାରର ଛାଇ ଛାଇଆ ପଥର ସ୍କୁଲ ସେପାଖ ସଡ଼କ ଉପରେ ଦିଶିଲାଣି । ସ୍କୁଲଘର ବାରଣ୍ଡାରୁ ଧୂଆଁ ଆଉ ଦିଶୁନି । ମାଷ୍ଟ୍ରେ ବୋଧହୁଏ ରୋଷେଇ ସାରିଲେଣି । ତଥାପି ଲଣ୍ଠନ ଲାଗିନି । ଶୂନ୍ୟବାସୀ ମନେ ପକେଇଲେ, ଦେଶ ସ୍ୱାଧୀନ ହେବାର ସୁବର୍ଣ୍ଣ ଜୟନ୍ତୀ କେବେଠୁ ଗଲାଣି, ବରିଷ୍ଠ ହେଲାଣି ଭାରତମାତା । ହେଲେ ସବୁ ଗାଁ ବିଜୁଳିବତି ଉପଭୋଗ କରି ପାରିନାହାନ୍ତି । ସେଥିପାଇଁ ସବୁକ୍ଷେତ୍ରରେ ସରକାରଙ୍କୁ ବି ଦୋଷଦେଇ ହେବନି । ଏମିତି ଗାଁ ଅଛି, ସେଠି କିଛି ଅସାମାଜିକ ଗୋଷ୍ଠୀ ନିଜ ସ୍ୱାର୍ଥ ପାଇଁ ଗାଁର ବିକାଶରେ ପ୍ରତିବନ୍ଧକ ସୃଷ୍ଟି କରୁଛନ୍ତି ମଧ । ଭାବିଲେ ସତରେ ଦୁଃଖ ଲାଗେ ।

ଗଲା ସ୍ୱାଧୀନତା ଦିବସରେ ଓଝାମାଷ୍ଟ୍ରେ କଥା ପ୍ରସଙ୍ଗରେ ମନେ ପକେଇଥିଲେ-

"ବୁଝିଲେ ଡାକ୍ତରବାବୁ- ଶ୍ରାବଣର ମେଘଢ଼ଙ୍କା ଆକାଶ, ଚାରିପଟେ ଧାନକ୍ଷେତର ସବୁଜିମା, ପାଦତଳେ ଭିଜାମାଟିର ପ୍ରତିଶ୍ରୁତି, ପବନରେ ବି ସ୍ୱପ୍ନ ଥିଲା ସେଦିନ- ଯୋଉଦିନ ପ୍ରଥମ ତ୍ରିରଙ୍ଗା ଲାଲକିଲ୍ଲା ଉପରେ ଉଡ଼ିଲା । ଅହିଂସା ମାର୍ଗରେ ମୁକ୍ତି ସଂଗ୍ରାମ କରି ଜନ୍ମ ନେଇଥିଲା ଏଇ ଗଣତାନ୍ତ୍ରିକ ଉପମହାଦେଶ । ଦେଖିଲେ ସେମିତି ବିଶେଷ କିଛି ଉନ୍ନତି ହେଉନି । ବରଂ ଏବେ ସାମାଜିକ, ରାଜନୈତିକ, ସାଂସ୍କୃତିକ ଜନଜୀବନରେ ଅବକ୍ଷୟ ଜନିତ ଅନେକ ବ୍ୟାଧି ଜଳଜଳ ହେଇ ଦିଶୁଛି । ଗୋଟାମୋଟା କରି ଗଢ଼ିଥିବା ଦେଶଟାକୁ ଆମେ ହିଁ ପୁଣି ଭାଙ୍ଗିରୁଜି ଦେବାକୁ ବିଭିନ୍ନ ଆଳ ଦେଖେଇ... । ଭାବାବେଗରେ କଣ୍ଠରୁଦ୍ଧ ହେଇ ଆସିଥିଲା ଓଝାମାଷ୍ଟ୍ରଙ୍କର ।

ସତ କଥା । ଶୂନ୍ୟବାସୀ ଭାବିଲେ ସ୍ୱାଧୀନତାର ଅନ୍ୟନାମ ସମାନତା, ସ୍ୱଚ୍ଛତା ସଚେତନତା ସଦ୍‌ଭାବନା ଆଉ ପ୍ରଗତି । ହେଲେ ଆଜି କୋଟିକୋଟି ଲୋକଙ୍କ ସ୍ଥିତି ସମ୍ପର୍କରେ ପ୍ରଶ୍ନବାଚୀ ସୃଷ୍ଟି ହେଇଛି । ଚାରିଆଡ଼େ ଈର୍ଷା, ହିଂସା, ପ୍ରତିବଦ୍ଧତା ଅଭାବ । ଭାବୁଭାବୁ ଶୂନ୍ୟବାସୀ ବ୍ୟସ୍ତ ହେଇପଡ଼ିଲେ । କାହିଁକି ଯେ ଏଭଳି ପରିସ୍ଥିତି ସୃଷ୍ଟି ହେଉଛି କେଜାଣି ?

ଏମିତିକା କଥା ଶୁଣିଲେ ନନ୍ଦିନୀ ତ ରାଗିଯାଏ । ନନ୍ଦିନୀ ତାଙ୍କର ଧର୍ମପତ୍ନୀ । ବିଚାରୀ ବାଇଶିବର୍ଷ ବେଳୁ ତାଙ୍କ ହାତଧରି ସୁଖଦୁଃଖର ସାଥୀ ହୋଇ ରହିଛି । ନିଜେବି ସେ ସରକାରୀ ଚାକିରି କରିଛି । ଦୁହେଁ ସବୁବେଳେ ଅଲଗା ରହି ଆସିଛନ୍ତି । ଏକାଠି ପୋଷ୍ଟିଂ ହେବାର ଭାଗ୍ୟ ତାଙ୍କର ନାହିଁ । ସେଥିପାଇଁ ନନ୍ଦିନୀର ମନ ଦୁଃଖ । ତାଙ୍କ ନିପାରିଲାପଣ ଉପରେ ସେ ସିନା କେବେ ଆଙ୍ଗୁଠି ଉଠାଏନି ହେଲେ ନିଜେ ଶୂନ୍ୟବାସୀ ଅପରାଧବୋଧରେ ନଇଁ ପଡ଼ନ୍ତି । ସତରେ ଆଜି ଯୁଗ ପାଇଁ ସେ ଅପାରଗ । କେତେଦିନ ହେଲା ବିଚରା ଅସୁସ୍ଥ ହୋଇପଡ଼ିଛି । ପାଖରେ କେହି ନାହିଁ ।

ଶୂନ୍ୟବାସୀ ସେଇ ମାଛି ଅନ୍ଧାର ଭିତରେ ବ୍ୟତିବ୍ୟସ୍ତ ହୋଇ ପଡ଼ିଲେ । କ'ଣ କରିବେ । ଇଚ୍ଛାକଲେ ଚାକିରିଟା ବି ତ ଛାଡ଼ି ପାରିବେନି । ସେଇ ଦମ୍ଭ ତାଙ୍କର ନାହିଁ । ଭାବିଲେ, ଏମିତି ଧାଉଁଧାଉଁ ସରିଯିବ ଚାକିରି । କିଛି ସଜାଡ଼ି ପାରିବେନି ସଂସାରକୁ । କର୍ତ୍ତବ୍ୟ ଦାୟିତ୍ୱ କଥା ଭାବୁଭାବୁ ହିଁ ସକାଳରୁ ରାତି । ସାମାଜିକ ସମ୍ପର୍କ ଟିକକ ବି ସେ ରଖିପାରୁ ନାହାନ୍ତି । ସେଥିପାଇଁ ଅନେକଙ୍କ ମନ ଊଣା । କାହାକୁ କେମିତି ବୁଝେଇବେ । ନିଜ ଅସହାୟପଣ ଅନ୍ୟଆଗରେ ଖୋଲି କହିବାକୁ ବି ତ ଭଲ ଲାଗେନି । କହିଲେ ବି ଅନ୍ୟମାନଙ୍କୁ ବେଳ କାହିଁ ଶୁଣିବାକୁ । ମନ ବି ନାହିଁ । ଦୀର୍ଘଶ୍ୱାସ ନେଲେ ଶୂନ୍ୟବାସୀ । ଅନେକ ସ୍ୱପ୍ନ ସ୍ୱପ୍ନ ହୋଇ ହିଁ ରହିଗଲା ।

ଏବଂ ଏଇ ସଞ୍ଚିତ ସ୍ୱପ୍ନ ସବୁ ପ୍ରତ୍ୟେକଦିନ ସକାଳେ ଚୂନାଚୂନା ହୋଇ ଭାଙ୍ଗି ଚାଲିଛି । ସମୟ ସହିତ ଝରି ଚାଲିଛି ରେଣୁ ରେଣୁ ବାଲି ହୋଇ । ନିଃଶେଷ ହୋଇଯିବ ଦିନେ ଏମିତି । କିଛି ଆଉ ନଥିବ । ସେ ନଥିବେ, ନନ୍ଦିନୀ ନଥିବ କେହି ନଥିବେ । ଆଃ ! ! ଛାତି ଭିତରେ କି ଏକ ଯନ୍ତ୍ରଣା । ହୃଦ୍‌ଘାତର ଯନ୍ତ୍ରଣାଠୁ ବି ଅଧିକ ବେଦନାକ୍ତ ।

ହଠାତ୍ ତାଙ୍କର ମନହେଲା ସେ ଧାଇଁଯା'ନ୍ତେ କି । ଆଖି ପିଛୁଳାକେ ପହଞ୍ଚିଯାଇ ଚମକେଇ ଦିଅନ୍ତେ ନନ୍ଦିନୀକୁ । ହେଲେ ଯାଇ ପାରୁଛନ୍ତି କୋଉଠି । ତାଙ୍କ ଜୀବନ ଅଭିଶପ୍ତ ଗନ୍ଧର୍ବର । ତାଙ୍କ ଯିବା ପାଇଁ କେତେ ନିୟମ କାନୁନ୍ । ଅନେକ ଉଠାପକା ରାସ୍ତା । ସବୁ କଥାରେ, ସମସ୍ତଙ୍କୁ ସେ ଉତ୍ତରଦାୟୀ । ବର୍ତ୍ତମାନର ପରିସ୍ଥିତିରେ ତାଙ୍କର ଦାୟିତ୍ୱସମ୍ପନ୍ନ ବ୍ୟକ୍ତିପୁରୁଷ କୋଉଠି ବି ସୁସ୍ଥରେ ନିଶ୍ୱାସ ନେଇପାରେନା ।

ଶୂନ୍ୟବାସୀ ଭାବିଲେ, ଜୀବନଟା ସତେକି ଜଡ଼ ପାଲଟି ଯାଉଛି । ସ୍ଥାଣୁ । ମନଧରୁନି କୋଉଥିରେ । ନିଜ ଉପରେ ଅଯଥା ବିରକ୍ତ ଲାଗୁଛି । ତୁଟି ଯାଉଛି ଦମ୍ଭ । ଛିଃ ଲାଗୁଛି ଜୀବନ । ସକାରାତ୍ମକ ଚିନ୍ତାକୁ କେତେ ଟାଣି ଯାବୁଡ଼ି ଧରି ରଖିବେ ।

ପୁଣି ଆର ମୁହୂର୍ତ୍ତରେ ମନ ଅନ୍ୟରୂପ ଧରୁଛି । ଲାଗୁଛି, ଯାହାହେଲେ ବି ଜୀବନ ତ ଜୀବନ ହିଁ ନା । ଖଣ୍ଡିଆଖାବୁରା, ପଙ୍ଗୁ ବୋଲି ସେ କ'ଣ କେବେ ଘୃଣା ଆଖିରେ ଦେଖୁଛନ୍ତି

ନା ଫୋପାଡ଼ି ଦେଇଛନ୍ତି । ଓଲଟି ବୁଝେଇଛନ୍ତି- କିଏ ଜାଣେ ଏଇ ଖଣ୍ଡିଆଖାବୁରା ଜୀବନଟା ବି କେତେବେଳେ କାହା କାମରେ ଲାଗିବ । ତେଣୁ ଯୋଡବାଗର, ଯୋଡଠାଣିରେ ସେ ପେଶ୍ ହେଉ ପଛେ, ତାକୁ ସାମ୍ନା କରିବାକୁ ପଡ଼ିବ । କାରଣ ସେ 'ଜୀବନ' ।

ଶୂନ୍ୟବାସୀ ଏଥର ଭାବନା ଜଗତରୁ ଓହ୍ଲେଇ ଆସିଲେ ନିଜ ପାଖକୁ । ନିଜକୁ ନିଜେ ଆଶ୍ୱାସନା ଦେବାକୁ ଯାଇ ଭାବିଲେ- ଏଇ ଜୀବନ ତାଙ୍କ ପାଇଁ କେବେହେଲେ ସହଜ ହେଇନି କି ହେବନି ମଧ୍ୟ । କଣ୍ଟାଝଣ୍ଟା, ଖାଲଢିପ କଙ୍କରିଳ ରାସ୍ତାରେ ଧାଇଁ ଧାଇଁ କ୍ଳାନ୍ତ ହେଇ ପଡ଼ିଛି ଗାଡ଼ିଟା । ଅଟକି ଯାଇଛି, ଅଭିମାନ କରି । ତାକୁ ଯେମିତି ହେଉ ମନେଇ ମାନେଇ ଚଲେଇବାକୁ ପଡ଼ିବ । ଷ୍ଟାର୍ଟ ଦେବାକୁ ହେବ । ଝାଡ଼ିଝୁଡ଼ି, ସଫା କରି ପୁଣି ଦୌଡ଼େଇବାକୁ ହେବ ରାସ୍ତାରେ । ନନେଉ ପଛେ ପ୍ରତିଯୋଗିତାରେ ଭାଗ । ହେଲେ ଦୌଡୁଥାଉ ଅଚଳ ନହେଇ । ଅଚଳ ହେଇଗଲେ ତ ସବୁ ସରିଲା । କ୍ଳାନ୍ତି ଲାଗିଲେ ତ ନିଦ ଆସିଯିବ । ଅଘୋର ନିଦ ।

ତାପରେ ପୂର୍ଣ୍ଣଚ୍ଛେଦ । ଠପ୍ । ଅନ୍ଧାର । ଶୂନ୍ୟ.... ମହାଶୂନ୍ୟ.... ଶୂନ୍ୟବାସ । ହଠାତ୍ ଚମକି ଉଠିଲେ ଶୂନ୍ୟବାସୀ । ହାତ ବଢ଼େଇଲେ ଜୀବନକୁ ଛୁଇଁବା ପାଇଁ । ହଲେଇ ଝାଙ୍କି ଦେବା ପାଇଁ ପ୍ରୟାସ କରୁକରୁ ଦର୍ଶନର କୋଠି ଘର ଭିତରକୁ ସେ ଯେ ପଶିଯାଉଛନ୍ତି ଏବଂ ଜୀବନ ତାଙ୍କୁ ଡରଉଛି, ସେ ଜାଣିପାରୁଥିଲେ । ନହେଲେ ଏମିତି ଲଗାମଛଡ଼ା ହେଇ ଭାବିଯାଉଛନ୍ତି କାହିଁକି ? ।

ଏ ଯାଏ ଯେଉଁ ଜୀବନ ପଡ଼ିଉଠି ଆଣ୍ଠୁଗଣ୍ଠି ଛିଣ୍ଡେଇ ଯେମିତି ଭାବରେ ଆଗେଇ ଆସିଲାଣି ଜଙ୍କସନ ପର୍ଯ୍ୟନ୍ତ- ଷ୍ଟିଅରିଂରେ ହାତଟା ଥିଲା ବୋଲି ସିନା । ମୋଡ଼ ଉପରେ ମୋଡ଼ ନେଇ ଦୁହିଁଙ୍କୁ ଏଇ ବିନ୍ଦୁରେ ଆଣି ଛାଡ଼ିଛି । ଆଶ୍ୱସନା ତ ମିଳୁଛି । ଦୁହେଁ ଅଛୁ, ଏକୁଟିଆ ହେଇନୁ କି ଜଣିକିଆ ହେଇନୁ । ନହେଲେ... । ହେ ଭଗବାନ ! !

ତାଙ୍କୁ ସତକୁ ସତ ଡର ଲାଗିଲା । ଆଗପଛ ସେ ଚାରିଆଡ଼କୁ ଚାହିଁଲେ । ଅନ୍ଧାର ବିଲ୍‌ବିଲ୍ । ରାତି ହେଇଗଲାଣି । ସ୍କୁଲ ଘର ଦିଶୁନି । କଳାପଥର ଦିହରେ ଆହୁରି ଅନ୍ଧାର ଲେସି ହେଇଯାଇଛି । ସେ ନିଜେ ମଧ ମିଶି ଯାଇଛନ୍ତି ଅନ୍ଧାରରେ ।

ସେଇ ଅନ୍ଧାର ଭିତରୁ ନିଜକୁ ଖୋଜିଆଣି ଝାଙ୍କଟିଏ ଦେଲେ ଶୂନ୍ୟବାସୀ ଷ୍ଟାର୍ଟ ଦେବାକୁ ଏବଂ ମୁଣ୍ଡିଆ ଉପରୁ ନିଜକୁ ଉଠେଇଲେ ହାତଧରି । ଆଗକୁ.... ଯାପରେ ଆଉ କ'ଣ ? କିଏ ଜାଣିଛି ? ଖାଲି ଅପେକ୍ଷା କରୁଥା ଚାଲୁଚାଲୁ । ନିଦାଳିଆ, ଓଜନିଆ ଅପେକ୍ଷା ଆଲୁଅ ପାଇଁ ? ?



# ସମୁଦ୍ର ଦର୍ଶନ

ଅନେକ ଦିନ ପରେ.... ଆଜି ମୁଁ ଯାଇଥିଲି ସମୁଦ୍ରକୁ କିଛି ମାଗିବି ବୋଲି ମୋ' ପଛରେ ଢଳନ୍ତି ଦିନ । କ୍ଳାନ୍ତ ସୂର୍ଯ୍ୟର ଘର ବାହୁଡ଼ାଣି ବେଳ । ଢାଉଆ ରଙ୍ଗର ଛେରା ଢାଳି ଅପେକ୍ଷା କରିଥିଲା ଆକାଶୀକନ୍ୟା ମେଘ ଅଗଣାରେ । ନୀଳ ସମୁଦ୍ରର ଉଚ୍ଛୁଳା ପାଣି ଭିତରକୁ ବି ମାଡ଼ିଆସିଥିଲା ସେଇ ବିରାଗ ରାଗର ରଙ୍ଗ ଛୁଆଣି ।

ଅସୁମାରି ମଣିଷର ଭିଡ଼ ମୋ ଚାରିପଟେ । ପବନରେ ଢେଉଢେଉକା ବାସ୍ନା । ବିଚିତ୍ର ! ! ଏ ମହକ ଫୁଲର, ନା ଅତରର, ନା ସମୁଦ୍ରର ?

ବହୁରୂପ, ବହୁରଙ୍ଗର ରୋଶଣି କିନ୍ତୁ ଲାଗିଥିଲା ବେଳାଭୂମିରେ । କେତେ ଭାବ ଭାବନା, ଅନୁଭୂତି, ଅନୁଭବର ତରଙ୍ଗ ଉଚ୍ଛୁଳି ଉଠୁଥିଲା ଉଲ୍ଲସିତ ବାଲିଶେଯ ଉପରେ ।

ଆଗରେ ପ୍ରସନ୍ନମତି ସମୁଦ୍ର ଆଉ ତା'ର ଉତ୍ତାଳ ତରଙ୍ଗମାଳାର ଐଶ୍ୱର୍ଯ୍ୟମୟ ବିଭୂତି । ନିଜକୁ ହଜାଇ ଦେବାଭଳି ମୁହୂର୍ତ୍ତ ।

ମୁଁ କିନ୍ତୁ ହଜି ପାରୁନଥିଲି କି ହଜେଇ ପାରୁନଥିଲି ନିଜକୁ । କାରଣ ମୁଁ ନିଜେ ହିଁ କିଛି ହଜେଇ ଦେଇଥିଲି । ହଁ, ହଜେଇ ଦେଇଥିଲି...

ହଜେଇ ଦେଇଥିଲି ସେଇ ଦୁର୍ଲଭ ପଦାର୍ଥଟିକୁ । ଯାହାକୁ ଦିନେ ସମୁଦ୍ର ହିଁ ମୋତେ ଉପହାର ଦେଇଥିଲା ଓ କହିଥିଲା ଦୁର୍ଲଭ ବୋଲି ।

ସେଦିନ କିନ୍ତୁ ମୁଁ ତା'ର ଗୁରୁତ୍ୱ ବୁଝି ପାରି ନଥିଲି । ସହଜ ଭାବରେ ଗ୍ରହଣ କରିନେଇଥିଲି ମାତ୍ର । ଆଜିକି ମୁଁ ଜାଣୁଛି ତା'ଠୁଁ ସତରେ ଦୁର୍ଲଭ ଆଉ କିଛି ନଥିଲା ମୋ ପାଇଁ । ଅଥଚ ମୁଁ ଅର୍ବାଚୀନ ତାକୁ ସମୟର ଚୋରାବାଲିରେ କେଉଁଠି କେଜାଣି ହଜେଇ ଦେଲି ।

ଆଉ ଆଜି.... ତାକୁ ହିଁ ଖୋଜୁଖୋଜୁ ମୁଁ ଆସିଛି ପୁଣିଥରେ ସମୁଦ୍ର ପାଖକୁ ।

ମୁଁ ଠିଆ ହୋଇଥିଲି ଅଞ୍ଜଳିବଦ୍ଧ ହୋଇ ଧ୍ୟାନମୁଦ୍ରାରେ ।

ମୋ ଆଗରେ ଦିଗନ୍ତ ବିସ୍ତାରୀ ସୁନୀଳ ସମୁଦ୍ର । ପାଦତଳେ ସ୍ୱର୍ଣ୍ଣାଭ ବାଲୁକାରାଶି । ମଥା ଉପରେ ଚିତ୍ରିତ ଆକାଶ । ଚାରିପଟେ ଅଗଣିତ ଜୀବନର ଉର୍ମି । ଏବଂ ତା' ମଝିରେ ମୁଁ ଓ ମୋର କାମନା ।

ମୋର କାମନା ?

ସ୍ୱପ୍ନ ? ଅମୃତ ? ? ନା ଆଉ କିଛି ? ? ?

.......ଅନେକ ଦିନ ତଳେ ଏଇମିତି ଦିନେ ସମୁଦ୍ର ସହିତ ମୋର ସାକ୍ଷାତ୍ ହୋଇଥିଲା । ସିଏ ଏକ ଅଲଭ୍ୟ ମୁହୂର୍ତ୍ତ । ସେଦିନ କିନ୍ତୁ ଉଦୟଭାନୁର ରଙ୍ଗୋତ୍ସବ ଲାଗିଥିଲା ଆକାଶର ବିସ୍ତୃତ ଅଗଣାରେ । ପ୍ରାଚୀକନ୍ୟା ହାତରୁ ଅଳତା ଢାଳି ହୋଇ ସଞ୍ଚରି ଯାଇଥିଲା ସମଗ୍ର ଆକାଶର ନୀଳ ଚଟାଣରେ । ବାଉଳା ପବନ ତା'ର ଭିଜା ପଣତ ଉଡ଼େଇ ଉଡ଼େଇ କିତ୍‌କିତ୍ ଖେଳୁଥିଲା ଢେଉମାନଙ୍କ ସହିତ । ମୋ ଆଗରେ ମହିମାମୟ ସମୁଦ୍ରର ବିସ୍ତାରିତ ନୀଳିମା ଆଉ ତା'ର ସିନ୍ଦୂରିତ ପ୍ରବାଳ ଉଆସର ଆକର୍ଷଣ ।

ଯେଉଁଠି ଗୋଲାପୀ ସ୍ୱପ୍ନମାନେ ବନ୍ଦୀ ହୋଇ ରହିଥିଲେ ।

ମୋ ଭିତରେ ପ୍ରଜାପତିର ନିଶା । ଡେଣାମେଲା ଅଣନିଃଶ୍ୱାସ, ପ୍ରଗଲ୍‌ଭତା, ଢେଉମାନଙ୍କ ସହିତ ଖେଳିବାର ଅଦମ୍ୟ କାମନା । ନୂଆ ଅନୁଭୂତିର ମଧୁମାଳତୀ ଲେନ୍ଥା ଲେନ୍ଥା ଫୁଲର ସ୍ତବକ ଝୁଲେଇ ଲଟେଇ ପଡ଼ିଥିଲା ଚେତନାର ଚଉହଦୀରେ । ଉଦୟ ରାଗର ବର୍ଣ୍ଣବିଭା ମୋ ଆଖିର ପୁଞ୍ଜୀଭୂତ ନୀଳ ସ୍ୱପ୍ନକୁ ଆହୁରି ଶତଗୁଣିତ କରି ସଞ୍ଜୀବିତ କରୁଥିଲା, ମୁଁ ଅଥୟ ହୋଇ ଉଠୁଥିଲି ତା'ର ମଣିମୟ ଢେଉମାନଙ୍କୁ ଛୁଇଁବା ପାଇଁ । ସମୁଦ୍ରମୋତେ ସ୍ୱପ୍ନର ଲୋଭ ଦେଖାଉଥିଲା କେତେ ଭଙ୍ଗୀରେ । ତା' ଢେଉ ପେଟରେ ଥିବା ଅକଳନ୍ତି ଐଶ୍ୱର୍ଯ୍ୟର ବୈଭବ ମୋ' ଫୁଟନ୍ତ ମନକୁ ଉଚାଟ କରୁଥିଲା ତା' ପାଖକୁ ଯିବାକୁ ଛୁଇଁବାକୁ, ଅନୁଭବିବାକୁ ଏବଂ ସମର୍ପି ହେବାକୁ ।

ମୋ ଭିତରେ ଢେଉ ଭାଙ୍ଗିବାର ଅନନ୍ତନିଶା ! ତା' ନୀଳିମାକୁ ମୁଠେଇ ଧରିବାର ଅସୀମ କାମନା । ସ୍ୱପ୍ନ କିଣିବାର ଅଭିଳାଷ । ଅସୀମତାକୁ ଛୁଇଁବାର ଦୁରନ୍ତ ଆଗ୍ରହ ।

ମୁଁ ଚାହେଁ ସକଳ ଐଶ୍ୱର୍ଯ୍ୟର ଅଧିକାରିଣୀ ହେବାକୁ ।

ମୋ ମନକଥା ସତେକି ସେ ଶୁଣିପାରିଲା ।

ଉଛୁଳା ଢେଉ ହାତ ଠାରି କହିଲା, ହଁ ମୋ ପେଟରେ ଅସରନ୍ତି ସ୍ୱପ୍ନର ମୋତି ମାଣିକ । ଅକଳନ୍ତି ଐଶ୍ୱର୍ଯ୍ୟର ଖଣି ମୋ ଭିତରେ । ମୁଁ ରତ୍ନାକର, ଲକ୍ଷ୍ମୀକୁ ଧରିଛି ପେଟରେ । ଆଖି ମୋର ଝଲସି ଉଠିଲା । ତା' କଥା ଶୁଣି ମୁଁ କ୍ରମଶଃ ଉଚ୍ଚକିତ ହେଉଥିଲି । ବିଜ୍ଞପିତ ଠାଣିରେ ଏଥର ସେ ପଚାରିଲା, ପାରିବୁ କି ଢେଉ ଭାଙ୍ଗି ? ଛୁଇଁପାରିବୁ ମୋ ଅତଳ

ଡଙ୍କୁ ? ମନ୍ଥି ପାରିବୁ ମୋତେ ? ପାରିଲେ, ସବୁକିଛି ତୋର ହେବ । ମୁଁ ଚକିତ ହେଲି । ଆଖିରେ ବିସ୍ମୟ ଭରି ଚାହିଁଲି ତା' ଗଭୀର ଆଖିକୁ । ସେତେବେଳେ ଭାରି ଅନ୍ତରଙ୍ଗ ମନେହେଲା ସମୁଦ୍ର । ଭାରି ଆପଣାର । ଭୀରୁପଣ କଟିଯାଉଥିଲା ଧୀରେ ଧୀରେ । ସମ୍ଭାବନାର ସ୍ୱପ୍ନମାନେ ମୋ ଆଖି ସାମନ୍‌ରେ ଉନ୍ମୋଚିତ କରୁଥିଲେ ନିଜକୁ । ଗୋଟିଏ ଅଜୁହା ଉଲ୍ଲାସ ମୋତେ ଅଥୟ କରି ପକାଉଥିଲା । ଧୀରେଧୀରେ ମୁଁ ତାକୁ ଛୁଇଁବା ପାଇଁ ପାଖକୁ ଗଲି ଏବଂ ସେ ଅନନ୍ତ ଉଲ୍ଲାସରେ ତା' ହାତକୁ ବଢ଼େଇଦେଲା ମୋ ଆଡ଼କୁ ।

ତା' ହାତ ଧରୁଧରୁ ଉତ୍ତେଜନା ବଶତଃ ଅଜାଣତରେ ହିଁ ମୁଁ ପଚାରିଦେଲି.... ଆଉ କୌସ୍ତୁଭମଣି ? ଅମ୍ଳାନ ପାରିଜାତ... ଅଛି ? ?

ଢେଉର ଓଠରେ ଫେନିଳ ହସର ପାଖୁଡ଼ା ବିଞ୍ଚି ସେ କହିଲା... ଅଛି, ସବୁଅଛି । ଲକ୍ଷ୍ମୀ ବି, ସରସ୍ୱତୀ ବି । ସମସ୍ତେ ଅଛନ୍ତି ।

ଅମୃତ ? ?

ଅବଶ୍ୟ ଟିକିଏ ଚମକି ଉଠିଲା ସେ । କଥାର ପୁନରାବୃତ୍ତି କରିବାକୁ ଯାଇ କହିଲା ତା ବି ଅଛି । କହିଲି ତ ସବୁ ତୋର ହେଇଯିବ, ଗୋଟାପଣେ ମୁଁ ବି ତୋର ହୋଇଯିବି, ଯଦି ତୁ ଢେଉ ଭାଙ୍ଗି ପାରିବୁ । ଅଛି ଅଭ୍ୟାସ ?

ତାପରେ.... ମୁହୂର୍ତ୍ତକର ନିରବତା । ପୁଣି କହିଲା– ପ୍ରଥମେ ପ୍ରବାଳର ଉଆସ, ସ୍ୱପ୍ନର ଖଣି, ତା' ଭିତରେ ମଣିମୟ ସିଂହାସନ । ତା' ଭିତରେ ବିଜେ ଠାଣିରେ ଲକ୍ଷ୍ମୀ ଏବଂ ସରସ୍ୱତୀ । ତା' ପଛକୁ ଅମୃତ କଳସ ।

ମୋ ଭିତରେ ଉତ୍ତେଜନାର ଢେଉ ଭାଙ୍ଗୁଛି । ସତରେ ଗୋଟାଯାକ ସମୁଦ୍ର ମୋର ହେବ... ! ! ତରଙ୍ଗର ଚୂଡ଼ା ଭାଙ୍ଗୁଭାଙ୍ଗୁ ପଚାରିଲା ବିଶ୍ୱାସ ହେଉନି ?

ମୋ ଆଖିରେ ବିସ୍ମୟ । ପାରିବି ପାରିବିନିର ଉଠାପକା ଉଲ୍ଲାସ ।

ସେ କିନ୍ତୁ ନିଧଡ଼କ, ବିଶ୍ୱାସର ତୋଡ଼ାଏ ଢେଉଭଙ୍ଗାର ଶୁଭ୍ର ରଜନୀଗନ୍ଧା ବଢ଼େଇ ଦେଲା ମୋ ଆଡ଼କୁ । ମୋ' ଭିତରେ ବିଶ୍ୱାସ ଦାନା ବାନ୍ଧିଲା । ଏଥର ମନ ଯମୁନା ଉଛୁଳି ଉଠିଲା । ଆଶାର କଦମ୍ବ ଫୁଟି ବାସ୍ନା ଫିଙ୍ଗିବାକୁ ଲାଗିଲା ଚଉଦିଗକୁ ।

ଆଗରେ ମୋର ଚିର ଈପ୍‌ସିତ ମହିମାବନ୍ତ ସମୁଦ୍ର ଏବଂ ତା'ର ଆବେଗ-ପ୍ରବଣ ଉଲ୍ଲସିତ ଊର୍ମିମାଳା, ଦିଗନ୍ତ ବିସ୍ତାରୀ ଜମକରା ପ୍ରବାଳ ଉଆସ, ତା' ଭିତରେ ଅକଳନ୍ତି ସ୍ୱପ୍ନର ନାନ୍ଦନିକ ଐଶ୍ୱର୍ଯ୍ୟ... କୌସ୍ତୁଭ, ପାରିଜାତ, ଆଉ ଅମୃତ କଳସ ।

ମୋ' ଭିତରେ ରାଇର ଉଚ୍ଚାଟିତ ସ୍ୱପ୍ନ । କୌସ୍ତୁଭ, ପାରିଜାତକୁ ଭୋଗ କରିବାର ଅଦମ୍ୟ କାମନା । ଅମୃତ ପିଇ ଚିରଞ୍ଜୀବୀ ହେବାର ଚିରନ୍ତନ ଅଭିଳାଷ । ଲକ୍ଷ୍ମୀ ଓ ସରସ୍ୱତୀ ଉଭୟେ ମୋର କାମ୍ୟ ।

ମୁଁ ଏଥର ଦମ୍ଭର ପାହାଚ ଚଢ଼ିବାକୁ ଆରମ୍ଭ କଲି । ନିଶ୍ଚୟ ମୁଁ ଢେଉ ଭାଙ୍ଗିବି । ସମୁଦ୍ର ପହଁରିବି କାହାକୁ ମୋର ଡର ନାହିଁ । ତିମି ତିମିଙ୍ଗିଳ, କି ଜଳଚର ଅସୁର କେହିବି କିଛି କ୍ଷତି କରି ପାରିବେନି ମୋର । ନିଜକୁ ପ୍ରସ୍ତୁତ କରୁକରୁ ସେଦିନ ଉଦୟ ରାଗର ସିନ୍ଦୂରିତ ବିଭାରେ ମୁଁ ଗାଧୋଇ ହେଇ ପଡ଼ିଲି । ଅଧିବାସର ଅଭିମନ୍ତିତ ପବିତ୍ର ଉତ୍ତରୀ ପିନ୍ଧି ତେଇଁ ପଡ଼ିଲି ସମୁଦ୍ର ଗର୍ଭକୁ ।

ନୀଳ ଢେଉ ମୋ ହାତ ଧରି ତା' ପାଖକୁ ନେଇଗଲା । ଜହ୍ନର ନୀଳ ଜ୍ୟୋତ୍ସ୍ନାରେ ଆମେ ଢେର ଖେଳିଛୁ ଛୁଁ ଛୁଁ-କା ଖେଳ । ସେ ଧାଇଁଲା, ମୁଁ ଗୋଡ଼େଇଲି ତା' ପଛରେ । ଏମିତି ଅନେକ ସମୟ ଗଡ଼ିଗଲା... ଦିନ, ମାସ ହୋଇ ବର୍ଷ । ତା' ହାତରେ ଥିଲା ସ୍ୱପ୍ନପୁରୀର ଚାବି । ମୋ ଭିତରେ ଅମୃତର ନିଶା ।

ମୁଁ ଅମୃତ ଚାହେଁ । ଚିରଞ୍ଜୀବୀ ହେବାକୁ ଚାହେଁ । ଚାହେଁ କାଳଜୟୀ ହେବାକୁ । ଚାହେଁ ମଧ୍ୟ ସମୁଦ୍ରକୁ । ତା'ର ଅସୀମତାକୁ, ବ୍ୟାପ୍ତିକୁ । ତା'ର ଦିଗନ୍ତବିସ୍ତାରୀ ନୀଳିମାକୁ ମୋ ପଣତରେ ବାନ୍ଧି ରଖିବାକୁ ଚାହେଁ । ମୁଁ ବିସ୍ତାରିତ ହେଇଯିବାକୁ ଚାହେଁ । ସ୍ୱପ୍ନର ନୀଳକୁହୁଡ଼ିରେ ଡେଣାମେଲି ଉଡ଼ିବାକୁ ମୁଁ ଚାହେଁ । ଚାହେଁ ମୋ ଈପ୍‌ସିତ ଛବି ଆଙ୍କି ସମୁଦ୍ର ଢେଉରେ ଭସେଇଦେବାକୁ । ଆଉ ତା' ଢେଉ ପିଠିରେ ଗୀତ ଲେଖି ଆପଣା ମନର ତାନରେ ଗୁଣୁଗୁଣୁ ହେବାକୁ । ତା'ର ଅନନ୍ତ ନୀଳିମାର ଝଲମଲ ଦର୍ପଣରେ ମୁହଁ ଦେଖି ଦେଖି ନିଜକୁ ବିସ୍ମରିବାକୁ । ଭାବୁଭାବୁ ଆଖି ମୋର ବୁଜି ହେଇ ଆସୁଥିଲା ଗୋଟାଏ ଆବେଶରେ । ଅନେକ କଥା ମୁଁ କହି ଯାଉଥିଲି ମନେ ମନେ ।

ଏଥର ବି ମୋ କଥା ଶୁଣି ପାରିଲା ସମୁଦ୍ର ।

ସିଏ କ'ଣ ସତରେ ଅନ୍ତର୍ଯାମୀ ! !

ଟାଙ୍ଗୁଡ଼ାଏ ହସର ଢେଉ ଫିଙ୍ଗି କହିଲା, ମୁଁ ଜାଣେ ତୁ କ'ଣ ଭାବୁଛୁ ।

କ'ଣ ? ମୋ ଆଖିରେ ବିସ୍ମୟ ।

ସେ ପୂର୍ଣ୍ଣଚ୍ଛେଦ ପକାଇ କହିଲା, 'ତୁ ପାରିବୁ, ମୋର ବିଶ୍ୱାସ ଅଛି । ତୋ' ସ୍ୱପ୍ନକୁ ରୂପ ଦେଇପାରିବୁ ।'

ସତେକି ସମୁଦ୍ର ମୋର ଅବଚେତନର ମନୋଭୂମିକୁ ଛୁଇଁ ପାରୁଥିଲା । ମୋ ଅନ୍ତରର ନିଭୃତ ଅଭିଳାଷକୁ ପଢ଼ିପାରୁଥିଲା । ମୁଁ ବିସ୍ମୟାଭିଭୂତ ହୋଇ କେବଳ ତାକୁ ଚାହିଁ ରହିଥିଲି । ଏଥର ସେ ତା'ର ଢେଉର ମୁଣିକୁ ଖୋଲିଲା ନାଟକୀୟ ଭାବେ । ବାହାର କଲା ତା' ଭିତରୁ ଝକମକିଆ ସୁନେଲି ପଦାର୍ଥଟିଏ । ଆଖି ଝଲସିଗଲା ମୋର । ମୋ ହାତକୁ ବଢ଼ଉ ବଢ଼ଉ କହିଲା ନେ...ଏଥର ଝରିବ ଅମୃତ.... ଚିରସ୍ରାବୀ । ହଜେଇବୁନି କେବେ । ସଞ୍ଜ ସକାଳେ ଆରାଧନା କରିବୁ ନିଷ୍ଠାର ସହ ।

ମୁଁ ଚକିତ ହେଲି । ସ୍ୱପ୍ନ ଦେଖୁନି ତ ଆଉ । ଇଏ ତ କଲମଟିଏ, ହୀରାର । ମୁଁ କ'ଣ ... ଥର ଥର କରି ଛୁଇଁଲି, କଲମଟିକୁ... ଅଣ୍ଡାଳିଲି... ଅନୁଭବ କଲି ତା'ର ସ୍ଥିତିକୁ । ମୋ ସର୍ବାଙ୍ଗରେ ବିଚିତ୍ର ଏକ ଶିହରଣ । ରୋମାଞ୍ଚିତ ହେଲି । ସତେ ଯେମିତି କିଏ ମୋ' ଭିତରେ ଅସୀମ ଶକ୍ତି ଭରିଦେଲା । କୋଉଠି ଲୁଚେଇ ରଖିବି ଏଇ ଦୁର୍ଲଭ କଲମଟିକୁ ଯେ!!

ମୁଁ ଢେଉ ଭାଙ୍ଗିବାକୁ ଭିତରେ ପଶିଲି... ଆହୁରି ଭିତରକୁ... ଭିତରେ ଅମୃତ କଳସ ।

ନୀଳାଭ ଚାନ୍ଦୁଆର ଝିଲ୍‌ମିଲ୍ କରି ଆଡ଼େଇ ସମୁଦ୍ର ମୋ' ହାତଧରି ବାଟ କଢ଼େଇ ନେଲା । ଆଗରେ ତା'ର ସ୍ୱପ୍ନମଖା ପ୍ରବାଳ ଉଆସ...

ମୁଁ ଉଚ୍ଚକିତ ହେଲି । ମୋ ହାତ ପା'ନ୍ତାରେ ପ୍ରବାଳ ଉଆସ । ମୁଁ ଠିଆ ହେଇଛି ତା' ଆଗରେ । ବିଶ୍ୱାସ କରି ମଧ କରି ପାରୁନଥିଲି ମୁଁ । ହାତ ବଢ଼େଇ ପରଖୁଥିଲି ସତ-ମିଛ ।

ମୋତେ ଚାହିଁ ସମୁଦ୍ର ମିଟ୍‌ମିଟ୍ ହସୁଥିଲା ।

ହଠାତ୍ ମୁଁ ଚମକି ଉଠିଲି । ଉଆସର ଦ୍ୱାର ଖୋଲିଗଲା । ମୋ' ଭିତରେ ବସନ୍ତର କୁହୁତାନ କି ଚମତ୍କାର । ସତରେ ସ୍ୱପ୍ନପୁରୀ । ମୋ ଚାରିପଟେ ନୀଳ ହଳଦିଆ ରଙ୍ଗର ମିଶାମିଶି କୁହୁଡ଼ିର ଝିଲ୍‌ମିଲ୍ ଆସ୍ତରଣ । ମୋତେ କ୍ରମଶଃ ଆଚ୍ଛନ୍ନ କରି ପକାଉଥିଲା ସେଇ ମଣିମୟ ଦିବ୍ୟପ୍ରାସାଦ । ସତେ ଯେମିତି କୋଉ ମାୟାବିନୀର କାଉଁରିକାଠି ବୁଲି ଆସୁଛି ମୋ ଚାରିପଟେ । ମୁଁ ବୁଡ଼ି ଯାଉଥିଲି ଗଭୀରରୁ ଗଭୀରକୁ ଧୀରେଧୀରେ...

ସେଇ ଆଚ୍ଛନ୍ନତା ଭିତରେ ମୁଁ ଦେଖୁଥିଲି ଜଣେ ସୁଠାମ ବପୁବନ୍ତ ସୌମ୍ୟଦର୍ଶନ ପୁରୁଷଙ୍କୁ । ଚମତ୍କାର ଠାଣିରେ ହସିହସି ମୋତେ ସ୍ୱାଗତ ସମ୍ଭାଷଣ ଜଣାଉଥିଲେ... ମୁଁ ଚକିତ ହେଲି । ମୁଗ୍ଧ ହେଲି । ବିଭୋର ହେଲି ।

କିଛି ପଚାରିବା ପୂର୍ବରୁ ହିଁ ସମୁଦ୍ର କହିଲା-

ଏଇଟା ସ୍ୱପ୍ନପୁରୀ । ଏଠି ସ୍ୱପ୍ନସବୁ ଗଚ୍ଛିତ ଅଛି । ଆଉ ଇଏ ହେଉଛନ୍ତି ସ୍ୱପ୍ନବିକାଳି ପୁରୁଷ । ଏଥର ସେଇ ସୌମ୍ୟଦର୍ଶନ ପୁରୁଷ ଜଣକ ଓହ୍ଲେଇ ଆସିଲେ ତାଙ୍କର ରତ୍ନମୟ ସିଂହାସନ ଉପରୁ । ମୋ' ସାମ୍ନାରେ ଠିଆ ହେଇ ମୁଠାଏ ସ୍ମିତ ହସର ପ୍ରୀତି ପାଖୁଡ଼ା ବଢ଼େଇ ଅଭିବାଦନ କଲେ । ମୁଁ ପ୍ରୀତିଲଗ୍ନା, ଅଞ୍ଜଳିବଦ୍ଧା ହେଇ ଗ୍ରହଣ କରୁକରୁ ସେଇ ସ୍ୱପ୍ନ ବିକାଳିଙ୍କ ହାତରେ ଥିବା ସୁନାର କୁହୁକ କାଠି ମୋତେ ସ୍ପର୍ଶ କଲା । ମୁଁ ଅଭିଭୂତ । ଆଖି ଝଲସି ଉଠିଲା ତା'ର ଔଜ୍ଜ୍ୱଲ୍ୟରେ । ମୋ ଭିତରେ ତଡ଼ିତ୍‌ର ପ୍ରବାହ... ଉଲ୍ଲାସର ବନ୍ୟା... ଆବେଗର ଉଜାଣିରେ ମୁଁ ମୋହାବିଷ୍ଟ ହେଲି । ଏକ ଅଦ୍ଭୁତ ମାୟାର ବଳୟ ଭିତରେ ମୋ ଚେତନା ଆଚ୍ଛନ୍ନ ହେଲା ।

ମାତ୍ର କେଇଟା ମୁହୂର୍ତ୍ତରେ ସ୍ୱପ୍ନବିକାଳି ପୁରୁଷ ଜଣକ ମୋତେ ଆପଣାର କରିନେଲା ।

ମୁଁ ଧାଇଁଲି ସ୍ୱପ୍ନ ପଛରେ । ସ୍ୱପ୍ନପୁରୀର ମାୟାରେ ସବୁକିଛି ଭୁଲିଗଲି । ପଡ଼ିଗଲି ସ୍ୱପ୍ନଭଉଁରିରେ । ସ୍ୱପ୍ନର ସେଇ ରଜାପୁଅ ସଙ୍ଗେ ଘୂରି ବୁଲିଲି ସମୟର ଅନନ୍ତ ସମୁଦ୍ରରେ ନୀଳ ଢେଉ ଭାଙ୍ଗିଭାଙ୍ଗି । ସେ ମୋତେ ତ୍ରିଭୁବନ ଦେଖେଇଲା । ଆଖିରେ ସ୍ୱପ୍ନାଞ୍ଜନ ଲେପି ରୁପାର ହୁକକାଠି ଶୁଙ୍ଘେଇଲା । ମୋ' ଭିତରେ କୋଇଲି ଡାକୁଥିଲା । ଫୁଲ ଫୁଟି ବାସ୍ନା ଫିଙ୍ଗୁଥିଲା । ବସନ୍ତର ମତୁଆଲା ପବନ ମୋ ମନ- ନଉକାକୁ ଅସୀମ ସମୁଦ୍ରର ନୀଳ ଜଳରାଶିରେ ଭସେଇ ନେଉଥିଲା । ତା' ମନର ଭଉଁରିରେ ଛ'ଋତୁର ଆକଣ୍ଠ ତୃଷା । ରାତିର ଜହ୍ନ ମୋତି ଝାଡୁଥିଲା ଆକାଶ ଦେହରୁ । ଦିନର ସୂର୍ଯ୍ୟ ଖରାର ହୀରା ବିଞ୍ଚୁଥିଲା । ମୁଁ ନିଜକୁ ବିସ୍ମରୁଥିଲି । ଭୁଲିଗଲି ମୁଁ କାହିଁକି ଢେଉ ଭାଙ୍ଗିବାକୁ ଚାହିଁଥିଲି । କାହିଁକି ପଶିଥିଲି ସମୁଦ୍ର ଭିତରେ ? କାହିଁକି ? କାହିଁକି ?

ମୋ ପ୍ରଶ୍ନ ସମୁଦ୍ରପବନରେ ଅନୁରଣିତ ହୋଇ ମୋ ଚାରିପଟେ ଚକାଭଉଁରି ଖେଳିଲା । ମୁଁ ଆତ୍ମସ୍ଥ ହେଲି । ଧ୍ୟାନସ୍ଥ ହେଲି । ମନେପଡ଼ିଲା...

ମୁଁ ଅମୃତ କାମନା କରିଥିଲି । ମୃତ୍ୟୁଞ୍ଜୟୀ ହେବାକୁ ଚାହିଁଥିଲି । ସୃଜନର ସ୍ୱପ୍ନ ଦେଖୁଥିଲି । ମୁକ୍ତିର ସ୍ୱାଦ ଚାଖିବାର ଅଭିଳାଷ ଥିଲା । ଆକାଶରେ ଉଡ଼ିବାକୁ ଇଚ୍ଛାଥିଲା... କାହିଁ ? ? ମୋ ଭିତରେ ଲକ୍ଷେ ଅନୁରଣନ ।

ମୋ ଡେଣା ତ ଲୋଚାକୋଚା ହେଇଯାଇଛି । ମୋ ଚେତନା ସ୍ଥବିର ପାଲଟି ଯାଇଛି । କୁଢ଼କୁଢ଼ ହିମର ଶୀତଳତା ମୋ ଭିତରେ । ଆଉ ମୋ କଲମ... ଯେଉଁଟା ମୋତେ ଦିନେ ସମୁଦ୍ର ଦେଇଥିଲା... ଅମୃତ ଝରିବ ବୋଲି... ! ଖୋଜିଲି ଖୋଜି ହେଲି, ଖୋଜି ହେଲି ମୋ ଭିତର ବାହାର... କାହିଁ ? କୁଆଡ଼େ ଗଲା ? ଭୟରେ ଥରି ଉଠିଲା ଛାତି ଭିତରଟା । ମୁହୂର୍ତ୍ତକର ସୁଖ ପଛରେ ଧାଇଁଧାଇଁ ତାକୁ ହଜେଇ ଦେଇଛି ଅନନ୍ତ ସମୟର ଚୋରାବାଲିରେ । ସମୟର ଖାତାରେ ଫର୍ଦ୍ଦଫର୍ଦ୍ଦ ଅପଚୟର ହିସାବ, ମୋ ନିଜ ଅପାରଗପଣକୁ ଖେଞ୍ଚା ମାରୁଛି ।

ମୋ ସ୍ୱପ୍ନ, ମୋ କାଳଜୟୀ ହେବାର ଆଶା, ମୋ ଅମୃତ କଳସର କାମନା... ସବୁ ସ୍ୱପ୍ନ ହେଇ ରହିଗଲା ତା ହେଲେ ! !

ସେଇ ମୁହୂର୍ତ୍ତରୁ ଏଇ ମୁହୂର୍ତ୍ତ ପର୍ଯ୍ୟନ୍ତ ଯେତେସବୁ ଘଟଣା ଦୁର୍ଘଟଣା- ସବୁ ମିଛ ଥିଲା ! ! ସବୁ ମରୀଚିକା ! !

ସମୟ ମୋତେ ପ୍ରତାରିତ କଲା । ନା, ମୁଁ ନିଜେ ନିଜକୁ ?

ସଞ୍ଜ ମାଡ଼ି ଆସୁଛି ଏଥର । ମୋ ପଛ-ଆକାଶଟା ଗେରୁଆ ପିନ୍ଧିଲାଣି ।

ମୁଁ ମଧ୍ୟ ମୋ ଦେହ ଆଉ ମନର ନୀଳାମ୍ବରକୁ ଖୋଲିଦେଇ ସମୁଦ୍ରର ଉଚ୍ଛୁଳା ବୁକୁ ଉପରେ ମେଲିଦେଲି । ଏଣିକି ମୁଁ ଏକା । ଆଉ ସବୁ ମିଛ, ସମସ୍ତେ ମିଛ । ସବୁଖେଳ ମିଛ ବାଲିଘର ଭଳି । ଏଇ ଅଛି ଏଇ ନାହିଁ । ଗୋଟାଏ ଢେଉ ଭସେଇ ନେବ ଅନନ୍ତଗର୍ଭକୁ !

ଚିହ୍ନ ବର୍ଣ୍ଣ ନଥିବ ତମେ ଦିନେ ଥିଲ ବୋଲି । ସମୟ ପଛରେ ଧାଇଁବାଟା ହିଁ ମିଛ । ତେବେ ସତ କିଏ ? ମୋ ଭିତରେ ଅନନ୍ତ ପ୍ରଶ୍ନବାଚୀ । ମୁଁ ସମୁଦ୍ରକୁ ଚାହିଁଲି.... ଚାହିଁଲି ଦିଗନ୍ତକୁ । ଲାଗିଲା, ସତ କେବଳ ଏଇ ନିଃସୀମ ଅନ୍ଧାର.... ମୋ ସାମ୍ନାର ଏଇ ସମୁଦ୍ର ତଳେ ଲୁଚି ରହିଛି । ଆସିବ ଅନ୍ଧାର । ସଞ୍ଜ ଗାଢ଼ ହେଲେ । ଆଉ ଟିକକ ପରେ... ଛାଇ ଦିଶିଲାଣି ତା'ର ।

ମୁଁ ଆତୁର ହେଲି । ବିକଳ ହେଲି । ମା'କୁ ନଦେଖି ଅବୋଧ ଶିଶୁ ଯେମିତି ବିକଳ ହୁଏ । ମୋ ଭିତରେ ସମୁଦ୍ରର ସମୁଦ୍ରେ ଆଲୋଡ଼ନ ।

ତା'ପରେ ଯୁଗେ.... ସମୟର କ'ଣ ମାପ ଅଛି ? ?

କେବେ ମଣିଷ ମୃତ୍ୟୁଞ୍ଜୟ ହେଇଛି ? ତା' ଭାଗରେ ଅମୃତ କାହିଁ ?

ତଥାପି...

ସ୍ଥବିର ସମୟର ହାତ ଧରି ପୁଣିଥରେ ମୁଁ ଆସିଛି ସମୁଦ୍ର ପାଖକୁ । ଆଗରେ ପ୍ରସନ୍ନମତି ସମୁଦ୍ର । କ'ଣ ମାଗିବି ? ?

ସ୍ୱପ୍ନ ? ଆଉ ରାତି କାହିଁ ?

ସୂର୍ଯ୍ୟର ଘର ବାହୁଡ଼ାଣି ପର୍ବ । ଚାରିପଟେ ନେତିନେତିର ଢାଉଥା ବଳୟ । ଆକାଶ ମଥାରୁ ଗଣ୍ଡିଙ୍କଟା ଭଳି ବହଳ ଅନ୍ଧାର ମାଡ଼ି ଆସୁଛି ମୋଡ଼ିମୋଡ଼ି ହେଇ ସମୁଦ୍ରର ଛାତି ଉପରକୁ । ମୁଁ କିନ୍ତୁ ଠିଆ ହେଇଛି ଧ୍ୟାନସ୍ଥ ମୁଦ୍ରାରେ । ମୋ ସାମ୍ନାରେ ମହିମାମୟ ମହୋଦଧି । ତା'ର ଗୁରୁ ଗମ୍ଭୀର ପ୍ରକାଶ । ଠାଣିରେ ସ୍ଥିରତା । ସେଦିନର ଆବେଗ ପ୍ରବଣତା ନାହିଁ ଆଉ । ମୋ ଚେତନା ଭିତରେ ଗୋଟାଏ ଶୂନ୍ୟପଣ ଖାଁ ଖାଁ କରୁଛି ମରୁଭୂମି ଭଳି । ସବୁ ରୂପ ଅରୂପ ପାଲଟି ଯାଉଛି । ସବୁ ଲେଖା ଅଲେଖା ହେଇଯାଉଛି । ସବୁ ଭାବର ବିଭବ ଗୋଟିଏ ବିନ୍ଦୁରେ ସ୍ଥିର ହେଇ ଯାଉଛି ।

ମୁଁ ଦେଖୁଛି... ଆଖି ବୁଜି, ସମସ୍ତ ଚେତନାକୁ ଠୁଳିଭୂତ କରି ଦେଖୁଛି- ଅନନ୍ତ ସମୁଦ୍ରର ବ୍ୟାପ୍ତି ଭିତରେ ଭାସି ଉଠିଲା ନୀଳିମ ବିନ୍ଦୁଟିଏ ଢଳଢଳ ହୋଇ । ଆଶ୍ଚର୍ଯ୍ୟ ଚକିତ ହେଇ ମୁଁ ଚାହିଁ ରହିଲି ଅପଲକ ଦୃଷ୍ଟିରେ ।

ଅନନ୍ତ ରହସ୍ୟର ଦ୍ୱାର ଉନ୍ମୋଚିତ ହେଇ ଯାଉଥିଲା ମୋ ଚେତନା ଭିତରେ । ଦେଖୁଦେଖୁ ଅସୀମ ସମୁଦ୍ରଟା ରୂପାନ୍ତରିତ ହେଇଗଲା ଅଭିନବ ଏକ ସୁନୀଳ ବିଗ୍ରହରେ । ଏବଂ ସେଇ ଇନ୍ଦ୍ରନୀଳ କ୍ରମଶଃ ପରିବ୍ୟାପ୍ତ ହୋଇ ଛାଇଗଲା ଆକାଶ ଆଉ ମୋ ଆଖି ଆଗର ପୃଥିବୀକୁ ।

ମୋ ଆଖି ଆଉ ପାଉନି । କିଛି, ଦେଖିପାରୁନି ମୁଁ ।

କେବଳ ଦେଖୁଛି ତା' ଛାତିରେ ଝଟକୁଛି ମୋ ଈପ୍ସିତ ସେଇ କୌସ୍ତୁଭମଣି ଝୁଲୁଛି

ଅମ୍ଳାନ ପାରିଜାତର ଅପୂର୍ବ ମାଳା । କସ୍ତୁରୀ ଚନ୍ଦନର ଦିବ୍ୟଗନ୍ଧ ମୋ ଚେତନାକୁ ଯେମିତି ଆଚ୍ଛନ୍ନ କରି ପକେଇଲା । ଅଭିଭୂତ ମୁଁ । ମୋହିତ ହୋଇ ଯାଉଥିଲି । ଏକ ଅନିର୍ବଚନୀୟ ତୁରୀୟ ସ୍ଥିତି ଭିତରେ ମୋ ପାର୍ଥିବ-ଚେତନା ତଳେଇ ଯାଉଛି ଧୀରେଧୀରେ । ମୋ ଚାରିପଟର ସୁଦୃଢ଼ ନିଃଛିଦ୍ର ଭୌତିକ ପରିଖା ଭୁଶୁଡ଼ି ପଡୁଛି । ମୁଁ ବୁଡ଼ିଯାଉଛି ନିଃସୀମ ସମୟର ଅନନ୍ତ ଗର୍ଭରେ, ତା'ର ଅତଳ ତଳେ । ସମ୍ଭାଳି ପାରୁନି ନିଜକୁ, ଭାସିଯାଉଛି ବିନ୍ଦୁଟିଏ ହେଇ । ଯୁଗ ଯୁଗ ଧରି ଲାଗି ରହିଥିବା ପରସ୍ତ ପରସ୍ତ 'ମୁ ପଣ'ର ଭୌତିକ ପାଟଶାଢ଼ୀକୁ ଟାଣିଓଟାରି ଫୋପାଡ଼ି ଦେଉଛି । ଅଣାୟତ୍ତ ମୁଁ । ହାତ ଟେକିଦେଲି । ହାତ ଟେକିଦେଲି ମୁଁ ବ୍ରଜକିଶୋରୀଙ୍କ ଭଳି । ଆତ୍ମ ସମର୍ପଣର ମୁହୂର୍ତ୍ତ । କାନରେ ବାଜୁଛି ଏକ ମୃଦୁମନ୍ଦ ମଧୁର ଧ୍ୱନି । ଉସେଇ ନେଲା ଭଳି, ବୁଡ଼େଇ ଦେଲା ଭଳି ଉଡ଼େଇ ନେଲା ଭଳି । ଯେମିତି ଆଉ କେଉଁ ପୃଥିବୀରୁ ଭାସି ଆସୁଛି ସମୁଦ୍ରର ଅନନ୍ତ ସ୍ରୋତରେ... ଢେଉ ଭାଙ୍ଗି ।

ମୁଁ ଶୁଣିବାକୁ ଚାହୁଁଛି ସମସ୍ତ ଇନ୍ଦ୍ରିୟ ଦେଇ ଅନୁଭବିବାକୁ ହେଲେ ମୁଁ କାହିଁ ? ?

ସମୁଦ୍ର କ'ଣ କିଛି କହୁଥିଲା ବୋଧେ ।

ମୁଁ କିନ୍ତୁ କିଛି ଶୁଣିପାରୁନଥିଲି ।



# ଏକଲାପଣ

ହଁ ଇଏ ବନ୍ଦୀ ଜୀବନ । ବନ୍ଦୀ ନୁହେଁ ତ ଆଉ କ'ଣ ? କେହି ନାହିଁ କୁଆଡ଼େ । ସକାଳରୁ ସଞ୍ଜ, ସଞ୍ଜରୁ ରାତି, ପୁଣି ସକାଳ । ଦିନେ ନୁହେଁ, ସପ୍ତାହେ ନୁହେଁ । ମାସ ମାସ ହେଇ ଏମିତି କେତେ ବର୍ଷ.... ହିସାବ ନାହିଁ । ସମୟକୁ କେହି କ'ଣ ହିସାବ କରିପାରେ ? ଯିଏ ଅପ୍ରତିହତ ଆଉ ନିରବଚ୍ଛିନ୍ନ.... କେହି ବି ତ ବିଶ୍ୱାସ କରି ପାରିବେନି । କାହାର ବିଶ୍ୱାସ ହେଉନଥିବ ମଧ୍ୟ । ମୁଁ କିନ୍ତୁ ସତ ହିଁ କହୁଛି । ଏଇମିତି ବର୍ଷବର୍ଷ ହୋଇ ଅନେକ ବର୍ଷ... ଅନେକ ଶ୍ରାବଣ ବର୍ଷ ଯାଇଛି । ଆଉ ମୁଁ ମୋ ଭିତରେ ଏମିତି ଏକୁଟିଆ ନିଃସଙ୍ଗ ନିର୍ବାସିତ ଜୀବନ କଟେଇ ଆସିଛି । ତମେ ପଚାରିବ ହୁଏତ, କାହିଁକି ମୁଁ ଏଇମିତି ନିର୍ବାସିତ ଜୀବନକୁ ବରି ନେଇଛି ? ଅବଶ୍ୟ ମୋ ଇଚ୍ଛାରେ ନୁହେଁ, ଅନ୍ୟର ଇଚ୍ଛାରେ ବି ନୁହେଁ....ତଥାପି ମୁଁ କହିପାରିବିନି ।

କେଉଁ ଅପରାଧ ପାଇଁ ମୋର ଏଇ ଶାସ୍ତି ମୁଁ ଜାଣେନା । ତେବେ ଅନେକ ଅନେକ ବର୍ଷ ଧରି ସତକୁସତ ମୁଁ ବନ୍ଦୀର ଜୀବନ ହିଁ କଟାଉଛି । ଏଇ ଧଳାଧଳା ଦର୍ପଣ ଭଳି ଚିକ୍‌ଚିକ୍ କରୁଥିବା ପ୍ଲାଷ୍ଟରପ୍ୟାରିସ୍ ଦିଆ ଚିକ୍କଣ କାନ୍ଥର ବଡ଼ବଡ଼ ଘର ଭିତରେ । ଯେଉଁଠି ନିଃସଙ୍ଗତାର ବି ଗୋଡ଼ ଖସିଯିବ ଟିକିଏ ଅସତର୍କତା ହେଲେ । ସେଇ ଚଉଖୁଣ୍ଟିଆ ଫୁଲଫୁଟା ମାର୍ବଲର ଚମକୁଥିବା ଚଟାଣରେ ମୁଁ ଏକାଏକା ନିଜ ମୁହଁକୁ ଦେଖୁଛି ।

ଏଠି ସକାଳର ଆଲୁଅ କାଚ ଝରକା ବାଟେ ପଶିଆସି ମୋ ସହିତ କଥା କହିବାର ପ୍ରୟାସ କରେ । ଆଉ ରାତିର ବେଣୀ ଅନ୍ଧାର ଝରକା କାଚର ସେପାଖେ ରହି ମୋ ଆଖିରୁ ଲୁହ ପୋଛେ । ବଡ଼ବଡ଼ ସେଲ୍‌ଫ, ଆଲମାରି, ଫିଜ୍, ଡାଇନିଂଟେବୁଲ, ଡ୍ରେସିଂ ମିରର, ଖଟ, ଡିଭାନ୍, ସୋଫା, ଟି.ଭି., ରେଡ଼ିଓଗ୍ରାମ, ସୁସଜ୍ଜିତ କିଚେନ ଆଉ ଭିସିଆର ଭଳି ଦାମୀ ଦାମୀ ଆଭିଜାତ୍ୟସମ୍ପନ୍ନ ଜିନିଷମାନ ଏଇ ଧଳା ରଙ୍ଗର ବଡ଼ବଡ଼ କାନ୍ଥଥିବା ଘର ମୋତେ ବନ୍ଦୀ କରି ରଖିଛନ୍ତି ।

ମୁଁ ପବନ ଖୋଜେ । ସିଲିଂଫ୍ୟାନର୍ ସୁଇଚ୍ ଟିପେ । ନିଶୂନ ଘର ଭିତରେ ସାଇଁସାଇଁ ପବନ ଛାଟିହେଇ ମୁଣ୍ଡ ପିଟେ । ହେଲେ ମୁକୁଳା ପବନ... ମୁଁ ଯାହା ସାଙ୍ଗେ ହାତ ଧରାଧରି ହୋଇ ଖେଳିବାକୁ ଚାହେଁ, ସିଏ ଏଇ ଘର ଭିତରକୁ ପଶି ପାରେନା । ଅନ୍ଧାର ଆସେ... ମୁଁ କିନ୍ତୁ ଆଲୁଅ ଦେଖିବାକୁ ଚାହେଁ, ପୁଣି ସୁଇଚ୍ ଅନ୍ କରେ । ତଡ଼ି ହୋଇଯାଏ ଅନ୍ଧାର ଝରକା ସେ ପାଖକୁ । ତରଳ ରୁପାର ଆଲୁଅ ଅଜାଡ଼ି ହୋଇଯାଏ ଘର ଚଟାଣ ଉପରେ । ମୁଁ ଆକାଶ ଦେଖିପାରେନା, ଜହ୍ନ ଦେଖି ପାରେନା, ଚୋପିଚୋପିକା ପର୍ଯ୍ୟାପ୍ତ ତାରା ଦେଖିପାରେନା । ଅଥଚ ଏଇମାନଙ୍କୁ ହିଁ ମୁଁ ଦେଖିବାକୁ ଚାହେଁ ।

ଏଇଟା ମୋର ପିଲାଦିନର ସଉକ । ଆକାଶ, ଜହ୍ନ ଆଉ ତାରା ଏମାନେ ମୋ ମନରେ ସ୍ୱପ୍ନ ବୁଣି ଦିଅନ୍ତି । ମୁଁ ସ୍ୱପ୍ନ ଦେଖିବାକୁ ବି ଭଲପାଏ । ଆଜି କିନ୍ତୁ ମୁଁ ଆକାଶ ଦେଖିବାକୁ ଚାହିଲେ, ଧାଇଁ ଯିବାକୁ ପଡୁଛି ଏକ ନିର୍ଦ୍ଦିଷ୍ଟ ତିନିଫୁଟ ଲମ୍ବା ଆଉ ଦେଢ଼ଫୁଟ ଚଉଡ଼ାର ଚାଖଣ୍ଡେ ବୋଲି ବାଲ୍‌କୋନି ପାଖକୁ । ସେଠୁ ଚାହିଁଲେ ଆକାଶଟା ଚିରୁଡ଼ାଏ ରୁଟି ଭଳି ହିଁ ଦିଶେ । ସେଇ ଚିରୁଡ଼ାକ ଆକାଶରେ ବି ମନର ସାଇତା ସରାଗ ବୋଲି ମୁଁ ବିବର୍ତ୍ତିତ ଋତୁ ପର୍ଯ୍ୟାୟରେ ଆକାଶର ରୂପକୁ କଳ୍ପନା କରେ । ବିନ୍ଦୁରେ ସିନ୍ଧୁର କଳ୍ପନା କଲାଭଳି । ଅଥବା ପାଣି ଭିତରେ ଅଣନିଶ୍ୱାସୀ ମାଛ ନିଃଶ୍ୱାସ ଟିକିଏ ପାଇଁ ପାଣି ଉପରକୁ ମୁଣ୍ଡ ଟେକିଲା ପରି, ମୁହୂର୍ତ୍ତେ ମୁହୂର୍ତ୍ତେ ମୁଁ ନିଃସଙ୍ଗତାର ସମୁଦ୍ର ଭିତରୁ ମୁଣ୍ଡ ଟେକି ଟିକିଏ ନିଃଶ୍ୱାସ ନିଏ, ସେଇ ଦେଢ଼ଫୁଟ ଚଉଡ଼ା ଆଉ ତିନିଫୁଟିଆ ଲମ୍ବାର ନିର୍ଦ୍ଦିଷ୍ଟ ବାଲକୋନି ଉପରେ ।

ଦେଖେ, ବଡ଼ବଡ଼ ଅଟ୍ଟାଳିକା ସବୁ ଆକାଶକୁ ଛୁଇଁଲାଭଳି ଠିଆ ହେଇଛନ୍ତି ହାତଟେକି । ଭଳିକି ଭଳି । ସତେକି ମୟଦାନବର ହାତଗଢ଼ା ଅନିନ୍ଦ୍ୟ ପ୍ରାସାଦ ସବୁ । ସେଠି ବି ମଣିଷ ନଥିବା ନିଶୂନ୍ ବାଲକୋନି । ନହେଲେ କଦବା କ୍ୱଚିତ୍ ପରୀ କିନ୍ନରୀ ଭଳି ଆଖିଝଲସା ମଣିଷ ବାଲକୋନି ଧାରରେ ତାରା ଭଳି ଫୁଟି ଦପ୍‌ଦପ୍ କରନ୍ତି । ତଳେ ଉପରେ ସବୁଠି ଫୁଲ ଟବ୍, ସୁଦୃଶ୍ୟ । ସବୁ ଋତୁକୁ ଏକାଠି ସିମେଣ୍ଟ୍ ଚଟାଣ ଆଉ କମକରା ପାରାପେଟ ଓ ପାଚେରି ଭିତରେ ବନ୍ଦୀ କରି ରଖିବାର ପ୍ରଚଣ୍ଡ ଅହଂକାର । ପ୍ରକାର ପ୍ରକାରର ଫୁଲ । ନାଲି, ନେଳୀ, ହଳଦିଆ, ଗୋଲାପୀ ଶାଢ଼ୀର ଓଢ଼ଣା ଭିତରୁ ଚୁପ୍‌ଚାପ୍ ଚାହିଁ ରହିଥା'ନ୍ତି ଆକାଶକୁ । ଠିକ୍ ମୋରି ଭଳି । ଅଥବା କେବେ କିମିତି ପାଖ ବାଲକୋନିର ଫୁଲକୁମାରୀମାନଙ୍କ ସହିତ ଆଳାପ କରିବା ପାଇଁ ହାତ ଲମ୍ବେଇ ଦେଇଥା'ନ୍ତି ପାରାପେଟି ସନ୍ଧିରୁ । ମୁଁ ଆଳାପ କରିପାରେନା ସେମାନଙ୍କ ସହିତ; ଆଭିଜାତ୍ୟର କମକରା ପାଚେରି ବାଟ ଓଗାଳେ । ମୁଁ କେବଳ ଦେଖେ, ଆଉ ମଣିଷ ଖୋଜେ ।

ମଣିଷ ଖୋଜୁଖୋଜୁ ହଠାତ୍ ଥରେଥରେ ଦେଖେ, ସେଇ ମୟ ତିଆରି ପ୍ରାସାଦମାନଙ୍କ ଭିତରୁ ଫୁଲସଜ୍ଞାର ମାଛି ଅନ୍ଧାରରେ ଚୁପ୍‌ଚାପ୍ ଫୁଲ ଫୁଟିଲା ପରି କିମ୍ବା ସଞ୍ଜୁଆ ଆକାଶରେ

ପଢ଼ିଲୁ ତାରା ମୁହଁ ଦେଖେଇଲା ଭଳି ତୁନିତାନି ମଣିଷ କେଇଟା ମୁହଁ ଦେଖାନ୍ତି, ସଞ୍ଜସକାଳେ ସମୟକଣ୍ଟରେ କଣ୍ଟିଲା ଭଳି । ପୋର୍ଟିକରେ ଗାଡ଼ି ଲାଗେ । ପଲକ ପଡ଼ିବା ଆଗରୁ କିମିଆ କଲାପରେ ରଜାଝିଅ ରଜାପୁଅମାନେ ନିମିଷକେ ଉଭେଇଯା'ନ୍ତି । ପକ୍ଷୀରାଜ ଘୋଡ଼ାରେ ଚଢ଼ି । ରାସ୍ତାଉପରେ ସାଇଁସାଇଁ ଗାଡ଼ି ଚାଲେ । ଗତିର ଯୁଗ ଇଏ । ଗତି ହିଁ ଜୀବନ । ଗତି ସୂଚାଇଦିଏ ତୁମେ କେତେ ପାରିବାର । ଗତି ଦେଖେଇ ଦିଏ, ସାବ୍ୟସ୍ତ କରେ ରାସ୍ତା ଗୋଟାଟା ତା'ର, ସେଇଯିବ । ସତରେ ! ସେମାନଙ୍କର ସବୁ ଜୀବନ ଅଛି । ମୁଁ ବି ତ ଗତିକୁ ଭଲପାଏ, ଗତି ଚାହେଁ । ପାରିଲା ପୌରୁଷର ଆରାଧନା କରିବାକୁ ମନ ଡାକେ । କିନ୍ତୁ ଆଜି ମୁଁ ଛଟପଟ ହେଉଛି ଏଇ ଫ୍ରିଜ୍‌କଲା ଜୀବନକୁ ନେଇ ।

ମୁଁ ମଣିଷ ଖୋଜେ । ହତାଶ ହେବା ଆଗରୁ ଝରକା ଖୋଲି ବାହାର ପୃଥିବୀକୁ ଚାହିଁବାକୁ ପ୍ରୟାସ କରେ । ହେଲେ... ମୋ ପୃଥିବୀ ଯେ ସଙ୍କୁଚିତ, ନିର୍ଦ୍ଧାରିତ । ମୋ ଫ୍ଲାଟ୍‌ର ପାଚେରିକୁ ଲାଗି ଘରଟିଏ, ବେଶ୍ ବଡ଼ । ବୋଧେ ଅନେକ କୋଠରି ତା' ଭିତରେ । ମଣିଷ ବି ଅନେକ ଥିବେ । ମୁଁ ଦେଖିପାରେନି । କେବଳ ବୁଢ଼ାଟିଏ, ପଙ୍ଗୁ । ନିତିଦିନ ତାକୁ ହିଁ ମୁଁ ଦେଖେ । ହୁଏତ ଷ୍ଟ୍ରୋକ୍‌ରେ ସମୟ ତାକୁ ଅପାରଗ କରିଦେଇଛି । କଥା କହିପାରେନା, ଠାରେ । ସତର ଅଠର ବର୍ଷର ଚାକର ଟୋକାଟିଏ ସକାଳୁ ଓ ସଞ୍ଜରେ ତାକୁ ନିର୍ଦ୍ଦିଷ୍ଟ ଚଉକିଟି ଉପରେ ବସେଇ ଦେଇଯାଏ, କିଛି ସମୟ । ବୁଢ଼ା ଚାହେଁ ଉପରକୁ । ବୋଧହୁଏ ମୋରି ବାଲ୍‌କୋନିକୁ, ହୁଏତ ମଣିଷ ଦେଖିବ ବୋଲି । ମୁଁ ଉହୁଁକି ତାକୁ ଚାହେଁ । ସେ ତା'ର ବଙ୍କାହେଇ ଯାଇଥିବା ଓଠରେ ହସେ । ମୋତେ ଲାଗେ, ଠିକ୍ ଏଇ ବାଲକୋନିର ଧାରେଧାରେ ଟବ୍‌ମାନଙ୍କରେ ଫୁଟି ସମୟ ଧାସରେ ମୁରୁଝେଇ ପଡ଼ିଥିବା ବାସି ଫିକାରଙ୍ଗର ଫୁଲମାନଙ୍କ ଭଳି ସେଇ ହସ, ନିର୍ଜୀବ, ନିସ୍ତେଜ । ବିଚରା ବୁଢ଼ାଟି ମୋତେ ଚାହିଁରହେ ବାଲୁବାଲୁ କରି । ଯେମିତି ମୋତେ ହିଁ କିଛି କହିବ ଅଥବା ମୋତେ ହିଁ ଅପେକ୍ଷା କରିଛି ଦେଖିବ ବୋଲି । କିଛି କହିପାରୁନଥିବାର ଯନ୍ତ୍ରଣା ତା' ମୁହଁ ଆଉ ଆଖିରୁ ମୋ ଆଡ଼ିକି କ୍ରମଶଃ ସଂକ୍ରମି ଆସେ । ମୋ' ଭିତରେ ଯନ୍ତ୍ରଣାର କାନ୍ଦୁଅ ଚକଟିବାର ଅନୁଭୂତିକୁ ମୁଁ ଅନୁଭବ କରେ । ଭାବେ, ଦିନଥିବ ବୁଢ଼ାଟିର ସବୁକିଛି ଥିବ । ପ୍ରତିଷ୍ଠା, ପ୍ରତିପତ୍ତିର ଭିତ୍ତି ଉପରେ ମଜଭୂତ ଥିବ ସ୍ଥିତି । ସମସ୍ତେ ଚାହିଁ ବସିଥିବେ ତା' ଇସାରାକୁ । କିନ୍ତୁ ଆଜି..... ସମୟ ସବୁ କାଢ଼ି ନେଇଛି । ଏବେ ସିଏ କେଡ଼େ ଏକୁଟିଆ, ଅସହାୟ ଆଉ ଅପାଂକ୍ତେୟ ବି ।

ମୋତେ ଉଦାସ ଲାଗେ । ହଠାତ୍ ମୁଁ କେମିତି ଭିନ୍ନ ଏକ ମଣିଷ ହେଇଯାଏ । ମୁହଁ ବୁଲାଇନିଏ ମୁଁ । ତାକୁ ଦେଖିବାକୁ ଭଲ ଲାଗେନି । ରାସ୍ତାକୁ ଚାହେଁ ବେକ ଲମ୍ବେଇ । ସେଠିଥିବା ବୁଢ଼ା ଆମ୍ବ ଗଛର ଡାଳରେ ସାଇକେଲ ଟାୟାରକୁ ଯୋଡ଼ି ଯୋଡ଼ିକା ବଙ୍କାଟେଢ଼ା

ଦୋଳିଟିଏ ବାନ୍ଧିଦେଇଛି ବିଚରା ଗରିବ ବାପ- ତା' ଏକୋଇରବଳା ପୁଅକୁ ଦୋଳିରେ ବସେଇ ଝୁଲେଇବ ବୋଲି । ହୁଏତ ତା'ର ସବୁ ସୁଖସମ୍ଭାବନାକୁ ସେ ଗୁନ୍ଥି ଦେଇଛି ସେଇ ଟାୟାରଯୋଡ଼ା ଝୁଲନ୍ତ ଦୋଳିରେ । ବାପୁଡ଼ା ଧୋବା ଆମ୍ବଗଛର ଟୋପିଟୋପିକା ଛାଇତଳେ କାଠକେବିନ୍ ଭିତରେ କେତେ ଅବା ସୁଖ ସମ୍ଭାବନା ସଞ୍ଚି ରଖିଥିବ ତା' ବିଶିକେସନ ପାଇଁ ! ତଥାପି... ମୋ ଆଖି ତାକୁ ଖୋଜେ । ସିଂଘାଣି ସାଲୁବାଲୁ ଦରନଙ୍ଗଳା କାଳିଆମୁଗୁନି ଭଳି ଗୁବୁଲିଗାବୁଲି ସେଇ ଧୋବା ପିଲାଟିର ପ୍ରାଣ ଉଚ୍ଛୁଳା ହସନ୍ତ ମୁହଁକୁ ଦେଖିବା ପାଇଁ । ହେଲେ... ମୋ ପାଇଁ ତ ଥୁଆ ହେଇଛି ଏକ ନିର୍ଦ୍ଦିଷ୍ଟ ନିର୍ଦ୍ଧାରିତ ଭାଗ୍ୟ ଗାର କାଟିଲା ଭଳି, ବହିରେ ଦାଗ ଦେଲାଭଳି ।

ମୋ ଆଖି ଧୋବାପୁଅଟିର ହସନ୍ତ ମୁହଁ ଦେଖିବା ଆଗରୁ ଆମ୍ବଗଛର ଡାଳରେ ହିଁ ଅଟକି ରହେ ସବୁଦିନ ଭଳି । ସେଠି ସେଇ ଡାଳରେ ଏକୁଟିଆ ଦରଭଙ୍ଗା ନୀଡ଼କୁ ଆଶ୍ରାକରି, ସେଇ ଡାଳରେ ତୁନିତାନି ଜଗି ବସିଥାଏ କୁଆଟିଏ । ସିଏ ବି ପଙ୍ଗୁ । ଗୋଟିଏ ଗୋଡ଼ । ଅନ୍ୟଗୋଡ଼ଟି ମୋଡ଼ିମାଡ଼ି ହୋଇ ପଶିଯାଇଛି ପେଟର ଭିତର ଆଡ଼କୁ । ଡେଣାଟିକୁ ବି ଅନ୍ୟ କୁଆମାନେ ବୋଧହୁଏ ଖୁମ୍ପିଖାମ୍ପି କ୍ଷତାକ୍ତ କରିଦେଇଛନ୍ତି ନିଷ୍ଠୁର ଭାବେ । ଜୋରଯାର ମୁଲକ ତା'ର- ସେଇ ହିଁ ବଞ୍ଚିବ- ସଂସାରର ନିୟମ ଇଏ ।

ଆହା ! ବିଚରା ଏକା ବସିଚି । କେତେବେଳେ କିମତି ଖଣ୍ଡିଉଡ଼ା ଦେବାର ପ୍ରୟାସ କରୁକରୁ କ୍ଳାନ୍ତହୋଇ ବସି ପଡୁଛି । ଜୀବନ ସଂଗ୍ରାମର ଶେଷ ନାହିଁ । ତା' ଚାରିପାଖ ପୃଥିବୀରେ ଖାଦ୍ୟ ଆଉ ସମ୍ଭାବନାମାନେ ବିଛାଡ଼ିହେଇ ପଡ଼ିଛନ୍ତି ଅଥଚ, ତା' ପାଖକୁ ଦାନାଟିଏ ପହଞ୍ଚିପାରୁନି । ପାରିଲାର ଏଇ ପୃଥିବୀ, ବିଚରା ଖାଇଚି କି ନାହିଁ କେଜାଣି । ମୋ' ଛାତି ଭିତରଟା ଦକିଚକଟି ହେଇଯାଏ କି ଏକ ଅବ୍ୟକ୍ତ ଯନ୍ତ୍ରଣାରେ ।

ମୁଁ କିନ୍ତୁ ଦେଖିବାକୁ ଚାହେଁନା । ନିଃସଙ୍ଗତାକୁ ବି ମୁଁ ସଙ୍ଖୋଳିବାକୁ ଚାହେଁନା । ଚାହେଁନା ମଧ ଏଇ ନିର୍ଜୀବ, ମୃତପ୍ରାୟ ଜୀବନମାନଙ୍କୁ ନିତିଦିନ ନିରେଖିବାକୁ ମୋତେ ଏଣିକି ଅସହ୍ୟ ଲାଗେ । ତେଣୁ ମୁଁ ଘରର ଦୁଆର ଝରକା ବନ୍ଦ କରିଦିଏ ।

ଘରର ଦୁଆର ଝରକା ସିନା ବନ୍ଦ କରିଦିଏ, ହେଲେ ମନର କାବଟ ତ ବନ୍ଦ କରି ପାରେନା । ଛୋଟା କେମ୍ପିକୁଆ ହେଉ କି ପାରାଟିଏ ହେଉ, ପଙ୍ଗୁ ପକ୍ଷାଘାତ ଗ୍ରସ୍ତ ସେଇ ବୁଢ଼ାଟି ହେଉ କିମ୍ବା ଚଉବାହାକୁ ଡାକିଡାକି ଭିକ୍ଷା ମାଗୁଥିବା ଅନ୍ଧ କୁମ୍ଭୀପାଟୁଆ ନିଧି ମଉସା ହେଉ, ସେମାନଙ୍କ ମୁହଁରେ ମୋ ଅସହାୟତା ଫୁଟିଉଠେ ଯେମିତି । ମୋତେ ମୁଁ ଦେଖେ । ମୋ ମନର ମୁକୁଳା ଦରଜା ବାଟେ ନିର୍ଜନତା ଆଉ ନିଛାଟିଆପଣ ହାତ ଧରାଧରି ହୋଇ କିତ୍‌କିତ୍ ଖେଳନ୍ତି । ଆବିଷ୍କାର କରେ ନିଜକୁ ।

..... ମୁଁ ଦୀର୍ଘଶ୍ୱାସ ଛାଡ଼େ ।

ସତରେ ମୁଁ ମଣିଷ ଦେଖିବାକୁ ଚାହେଁ । ଜୀବନ୍ତ ଝଲଝଲ, ପ୍ରାଣୋଚ୍ଛଳ । ଅଫୁରନ୍ତ ପ୍ରାଣରସରେ ଭରା ଜୀବନ । ମୁଁ କିନ୍ତୁ ଜୀବନ ଖୋଜି ପାଏନା । ମନମାଫି ଜୀବନ । ଜହ୍ନରାତି ଭଳି ଜୀବନ । ଏହି ସହର ମୋତେ ସେଇ ଜୀବନ ଟିକିଏ ଦେଇପାରେନା । କେବଳ କୁତ୍‌କୁତ୍ ଅସହାୟତା, ଫସଲକଟା କିଆରିର ଖାଁ ଖାଁ ନିଶୂନତା ଆଉ ବୋଝବୋଝ ଏକଲାପଣକୁ ଅଜାଡ଼ି ଦିଏ ମୋ ଚାରିପାଖେ । ମୁଁ ଅଣନିଃଶ୍ୱାସୀ ହୋଇଯାଏ । ଦୁର୍ବିସହ ଲାଗେ ଏ ଜୀବନ । ନିର୍ଜନତା ସହିତ କେତେକଥା କହିବି ? ମୁଁ ମଣିଷଟିଏ । ଗୋଟାଏ ମନ ହୃଦୟ, ଆଉ କିଛି ଇଚ୍ଛା, କିଛି ସ୍ୱପ୍ନଥିବା ମଣିଷଟିଏ । ଅଥଚ ସମସ୍ତେ ବନ୍ଦୀ ହୋଇଯାଇଛନ୍ତି । ଏଇ ସତର ବାଇ ପନ୍ଦରର ନିଖୁଣ ମାପକରା ବଡ଼ବଡ଼ ଚିକ୍କଣ ପାଲିସ୍ କରାଘର- ଅସୁରୁଣୀର କିମିଆ ଜାଲରେ ଯେମିତି ବନ୍ଦୀ ହୋଇଯାଇଛନ୍ତି । ମୁଁ ମୁକ୍ତି ଖୋଜୁଛି ମୁକୁଳିବାକୁ ଚାହୁଁଛି । ସତରେ ମୁଁ ବଡ଼ ଏକା । ଏକାନ୍ତ ଭାବେ ଏକା ଏକୁଟିଆ । ଏଇ ମୁହୂର୍ତ୍ତରେ ଯା ଠୁ ବଳି ନିଷ୍ଠୁର ସତ୍ୟ ବି ତ ଆଉ କିଛି ନାହିଁ ।



# ପ୍ରିଡେଟର

ବୃନ୍ଦନଗର ଷ୍ଟେଟ୍‌ବ୍ୟାଙ୍କ୍‌ର ଇଭିନିଂ ବ୍ରାଞ୍ଚ ଛ'ଟା ବାଜିଲେ ତା'ର ଟ୍ରାନ୍‌ଜାକସନ୍ ବନ୍ଦ କରିଦେବେ । ଟଙ୍କା ଉଠେଇ ହେବନି । ଅଥଚ ଟଙ୍କାଟା ଜରୁରୀ ଦରକାର । ରାତିପାହିଲେ ସାନପୁଅ ପୁଣେ ଯିବ । ସେ ଏମ୍‌ବିଏରେ ଆଡ୍‌ମିସନ୍ ହେଇଛି । କାଲି ରବିବାର, ଛୁଟିଦିନ । ସୋମବାର ସକାଳୁ ଟ୍ରେନ୍ । ପାଞ୍ଚଟା ବାଜି ସାରିଲାଣି ହାତ ଘଣ୍ଟାରେ । ତରତର ହୋଇ ତାପସ ସ୍କୁଟରରେ ଷ୍ଟାର୍ଟ ଦେଲା । ଯେମିତି ବି ହେଉ ତାକୁ ଟ୍ରାନ୍‌ଜାକସନ୍ ଆୱାର ଭିତରେ ପହଞ୍ଚିବାକୁ ହେବ । ଅନ୍ତତଃ କିଛି ଗୋଟାଏ ଉପାୟ ତ କରିହେବ । ବ୍ରାଞ୍ଚ ମ୍ୟାନେଜର ଦାସବାବୁ, କ୍ୟାସିୟର ସୀତାଂଶୁ ତା'ର ବନ୍ଧୁ । ଭଲ ସମ୍ପର୍କ ଅଛି । କହିଲେ, କଥା ରହିବ । ସାହାଯ୍ୟ କରିବେ । କାଲିଠୁ ଜଣେଇ ଦେଇଛନ୍ତି । ଲୋନ୍ ମଞ୍ଜୁର ହୋଇଯାଇଛି । ଗୋଟାଏ ସମସ୍ୟାର ସମାଧାନ ତ କିଛିଟା ହୋଇଯାଇଛି । ରିକନ୍‌ର ପାଠପଢ଼ା ଚାରିବର୍ଷ ପାଇଁ ଅନ୍ତତଃ ଆଉ ଚିନ୍ତା ନାହିଁ । ତେବେ ଟ୍ରାନ୍‌ଜକସନ୍ ବନ୍ଦ ହେବା ପୂର୍ବରୁ ନିହାତି ସେଠି ଯାଇ ପହଞ୍ଚିବାକୁ ହେବ ।

ବୃନ୍ଦନଗର ପହଞ୍ଚିବାକୁ ନିହାତି କମ୍‌ରେ ଅଧଘଣ୍ଟାଏ ତ ଲାଗିବ ନିଶ୍ଚେ । ଟ୍ରାଫିକ୍ ଯେମିତି ହୁ ହୁ ହେଇ ବଢ଼ିଚାଲିଛି, ଟିକିଏ ଅସାବଧାନତା ହେଲେ କଥା ସରିଲା । କଲିକତା ଓ ଦିଲ୍ଲୀ ସହିତ ତାଳ ଦେଲାଣି ଆମ ଭୁବନେଶ୍ୱର । ଯଦି ମଝିରେ କୋଉଠି ଟ୍ରାଫିକ୍ ଜାମ୍ ହେଇଗଲା ତ ଅଟକିଯାଅ । ସମସ୍ତେ ଚାହୁଁଛନ୍ତି ଆଗକୁ ଯିବେ ଏବଂ ଆଗେ ଯିବେ । ଫ୍ଲାଇଓଭରଟିଏ କଲେ ହୁଅନ୍ତାନି, ନାହିଁ, ପଇସା ନାହିଁ ସରକାରଙ୍କର କୁଆଡ଼େ ।

କୁଆଡ଼ିକି ନ ଚାହିଁ ଏକାଲୟରେ ତାପସ ସ୍କୁଟରର ଗିୟର ଅଦଳବଦଳ କରୁକରୁ ଭାବୁଥିଲା ଓ ଭାବୁଭାବୁ ସିଧା ଆସି ବ୍ରେକ୍ ଦେଲା ଇଭିନିଂ ବ୍ରାଞ୍ଚ୍ ସାମ୍ନାରେ । ଦୀର୍ଘଶ୍ୱାସଟିଏ ନେଇ ସ୍କୁଟର ଷ୍ଟାଣ୍ଡ୍ ମାରି ହାତ ଘଣ୍ଟାକୁ ଚାହିଁଲା- ଯା' ହେଉ ପହଞ୍ଚିଗଲା ଠିକ୍ ଟାଇମ୍‌ରେ । ପନ୍ଦର ମିନିଟ୍ ଆହୁରି ଅଛି ତା' ହାତରେ ।

ଆବଶ୍ୟକୀୟ କାଗଜପତ୍ର ଡିକିରୁ କାଢ଼ି ଏକା ଧଡସ୍‌ରେ ସେ ବ୍ୟାଙ୍କ୍ ଆଡ଼କି ମୁହାଁଇଲା । 'ତାପସ୍', ଏଇ ତାପସ୍... ହାଲୋ....

ପଛରୁ ବୋଧେ କିଏ ଡାକୁଛି ତା' ନାଁ ଧରି । ଯାଃ, ଏତିକିବେଳକୁ ହିଁ ବାବୁଙ୍କୁ ଡାକିବାର ଥିଲା ! ଛାଡ଼, ନ ଚାହିଁଲେ ଗଲା । ଆଗ କାମ, ଯିଏ ଡାକୁଛି ଡାକୁଥାଉ । ସେ ତ ଚାହିଁବନି, ଦି'ଚାରି ପାହୁଣ୍ଡ ଆଗେଇଗଲା ତାପସ ମୁଣ୍ଡପୋତି ତରବରରେ, ଆଗରେ କାଉଣ୍ଟର୍ ।

ପୁଣି ଶୁଭିଲା 'ତାପସ୍'... କିଏ ଡାକୁଛି ସତକୁ ସତ ତା' ନାଁ ଧରି । 'ହାଲୋ'.... 'ତାପସ୍'... ପୁଣି ଶୁଭିଲା 'ତାପସ୍'... ଧ୍ୟାନ ଭାଙ୍ଗିଲା । ଫେରି ଚାହିଁଲା ପଛକୁ ସେଇ ଏକା ଧଡ୍‌ସରେ ଅନ୍ୟମନସ୍କ ଭାବେ, ଟିକିଏ ବିରକ୍ତିରେ । ନ ଡାକିଲେ ପଛରୁ ହୋଇନଥାନ୍ତା– ର ଭାବ । ମଣିଷ ତରବରରେ ଅଛି, ଅଥଚ.... ଚାହିଁଲା ତାପସ୍... କିଛି ଦୂରରେ ଜଣେ ମଧ୍ୟବୟସର ଯୁବକ, ବାଇକ୍ ଉପରେ ବସି ଗୋଡ଼ରେ ବ୍ରେକ୍ ଦେଇ ଠିଆ ହେଇ ତା'ରି ମୁହଁକୁ ଚାହିଁ ହସୁଛି । ହଠାତ୍ ଚିହ୍ନିପାରିଲାନି ତାପସ୍ । ହେଲେ ତା'ର କାହିଁକି ମନେହେଲା କୋଉଠି ସେ ଦେଖିଛି ଏଇ ମୁହଁକୁ । କିଏ ? ? କାଉଣ୍ଟର ପାଖାପାଖି ସିଧା ପହଞ୍ଚି ଯାଉଥିବା ଆଗଭୁରିଆ ମନଟାକୁ ହଠାତ୍ ପୁଣିଥରେ ପଛକୁ ଫେରାଇ, ତା' ସହିତ ସାମିଲ ହେବା ପାଇଁ ନିଶ୍ଚୟ ମୁହୂର୍ତ୍ତ କେଇଟା ଲାଗିଲା ।

"କ'ଣ, ଚିହ୍ନିପାରୁନୁ କିରେ ଭାଇ'.. । ଚିହ୍ନା ଚିହ୍ନା କଣ୍ଠସ୍ୱର । ସଚେତନ ହେଲା ତାପସ୍ ।

ନିଜ ଭିତରେ ଝାଡ଼ିଝୁଡ଼ି ହେଇ ଏଥର ସେ ଠିଆହୋଇ ମୁରୁକୁନ୍ଦ ହସୁଥିବା ମଣିଷଟାକୁ ନିବିଷ୍ଟ ଭାବେ ନିରୀକ୍ଷଣ କଲା ।

ଏ ଭିତରେ ଯୁବକ ଜଣକ ବାଇକ୍‌ର ଷ୍ଟାର୍ଟ ବନ୍ଦ କରି ଷ୍ଟାଣ୍ଡ୍ ମାରି ଆଖିରୁ ଚଷମା କାଢ଼ିଲା । ଆରେ !! ସତକୁ ସତ ଚମକି ପଡ଼ିଲା ତାପସ । ଇଏ ତ ଶୋଭନ । ବନ୍ଧୁ ଶୋଭନ ଆଚାର୍ଯ୍ୟ । ହଁ, ତ । ଏକଦମ୍ ଶୋଭନ । ଆଶ୍ଚର୍ଯ୍ୟ ! ଏଠି କିମିତି !

ଅଜାଡ଼ି ହେଇ ପଡ଼ିଲେ ଦୁଇ ବନ୍ଧୁ ଖୁସିରେ ଉଛୁଳା ଢେଉ ପରି । ଛାତିରେ ଛାତିକୁ ଲଗେଇ– ଗଦ୍‌ଗଦ୍ ହେଇ ଶୋଭନ୍ ପଚାରିଲା "କେମିତି ଅଛୁରେ ତାପସ୍, ଚିହ୍ନିପାରିଲୁନି ନା ?"

ଟିକିଏ ଅପ୍ରସ୍ତୁତ ବୋଧ କରୁକରୁ ତାପସ କହିଲା, 'ଅନେକ ବର୍ଷ ପରେ ତ ଦେଖା, ଭେରି ସରି ହଠାତ୍ ଚିହ୍ନିପାରିନି । ଅନ୍ୟମନସ୍କ ବି ଥିଲି । ମୁହୂର୍ତ୍ତେ ଡେରି ଲାଗିଲା ଯାହା । କୋଉଠି ଅଛୁ ଏବେ କ'ଣ କରୁଛୁ ଯେ... ? ଅନେକ ପ୍ରଶ୍ନ । ସବୁ ପ୍ରଶ୍ନର ଉତ୍ତର ଏକାଥରକେ ଶୁଣି ପକେଇବାକୁ ଉଭୟେ ଉଦ୍‌ଗ୍ରୀବ । ତାପସ୍ ପ୍ରଶ୍ନର ଉତ୍ତର ଦେଉଦେଉ, ଶୋଭନ ତା'.

ହାତଧରି ଟାଣିଲା- ଚାଲ କଫି ହାଉସ୍‌କୁ । କଫି ଖାଉଖାଉ କଥା ହେବା ସେଇଠି । ଖୁସିର ମୁହୂର୍ତ୍ତମାନେ ହାତ ଧରାଧରି ହେଇ ଚାଲୁଚାଲୁ ଅଧୀର ହେଇ ପରସ୍ପରକୁ ସମ୍ଭାଷଣ କରୁଥିଲେ ।

... ତା'ହେଲେ ତୁ ବର୍ତ୍ତମାନ କଲିକତାରେ ନା, କେମିତି ଚାଲିଛି ବ୍ୟବସାୟ । ତୁ ଏକା ନା ଆଉ କିଏ ପାର୍ଟନର୍ ଅଛି ? ରୁମାଲରେ ମୁହଁ ପୋଛୁପୋଛୁ ହଠାତ୍ ଯିମିତି ତାପସ୍‌ର ମନେ ପଡ଼ିଗଲା ପୁରୁଣା ଦିନର କଥା ଓ ପଚାରିଲା- "ଆଚ୍ଛା ଶୋଭନ୍, ତମେସବୁ, ମାନେ ତୁ, ହୀରକ, ସୁକାନ୍ତ ସବୁ ମିଶି ବ୍ୟାଙ୍କ୍ ପରୀକ୍ଷା ଦେବା ପାଇଁ ପ୍ରସ୍ତୁତ ନା, କ'ଣ ହେଲା ତା'ହେଲେ, ଗଲନି କି ?"

ସେସବୁ ଅନେକ କଥାରେ ତାପସ୍ – ପକେଟ୍‌ରୁ ସିଗାରେଟ୍ ପ୍ୟାକେଟ୍ କାଢ଼ି ତାପସ ଆଡ଼କୁ ଦେଖେଇ ନିଜେ ସିଗାରେଟ୍‌ରେ ନିଆଁ ଧରାଉଧରାଉ କହିଲା ଶୋଭନ୍, ନେ ଧର ଗୋଟିଏ..." । ମୁଁ କ'ଣ ସିଗାରେଟ୍ ଖାଏ କି, ତୋର ମନେନାହିଁ ? କହିଲା ତାପସ୍ ।

ଆରେ ସତେ ତ । ତୁ ପାନ ଖାଉଥିଲୁ... ଠିକ୍ ନା ? ଏଇଠି କୋଉଠି ତ ଥିଲା ପାନଦୋକାନ... ଆଗକୁ ପଛକୁ ଚାହିଁଲା ଶୋଭନ ପାନ ଦୋକାନ ଖୋଜିବାକୁ । ତୁ ମୋଟେ ବ୍ୟସ୍ତ ହ' ନା ତ । ମୋ ପାଖରେ ପାନ ଅଛି । ଉଭୟେ କଥା କହୁକହୁ ପହଞ୍ଚି ଯାଇଥିଲେ କଫି ହାଉସ୍ ଭିତରେ । ଓ୍ୱେଟରକୁ ଦି' କପ୍ କଫି ବରାଦ କରି ପୁଣି ଉଭୟେ ବୁଡ଼ିଗଲେ ସ୍ମୃତିଚାରଣରେ । ଅନେକ ଗପ, ଅନେକ କଥା, କେତେ ବିଚାର । ଗରମ କଫିର ବାମ୍ଫ ଭିତରେ ବିଭୋର ହୋଇଗଲା ଅତୀତ । ଉଭୟେ ଫେରି ଯାଉଥିଲେ ସେଇ ଛାଡ଼ି ଆସିଥିବା ପୁରୁଣା ଦିନକୁ- ସିଧା ଓୟୁଏଟିର କ୍ୟାମ୍ପସ୍ ଭିତରକୁ- ତା'ର ଲେକଚର୍ ଥିଏଟର, ଲାବରୋଟରି ଲମ୍ୱାଲମ୍ୱା କରିଡ଼ର, ପ୍ରଫେସର୍ ମହାନ୍ତିଙ୍କ ଚାମ୍ବର, ଡିନ ଡକ୍ଟର ଦଣ୍ଡପାଟଙ୍କ ଲେକ୍‌ଚର କ୍ଲାସ୍, ଚଉଖୁଣ୍ଟିଆ ଗ୍ରୀନ୍ ଫିଲଡ୍, ବାଟ ଦେଇ ହଷ୍ଟେଲ୍ ନମ୍ବର ଥ୍ରୀକୁ ଏବଂ ତା' ଭିତରେ ରୁମ୍ ନମ୍ବର 'ସେଭେନ୍' ।

ପାଖ ରୁମ୍‌ରେ ରହୁଥିଲେ ହୀରକ ସେନାପତି, ଶୋଭନ ଆଚାର୍ଯ୍ୟ । ବେଳେବେଳେ ନମ୍ବରଟୁ ହଷ୍ଟେଲରୁ ନୟନକିଶୋର ଆସୁଥିଲା । ପରୀକ୍ଷା ପ୍ରସ୍ତୁତିବେଳେ ସମସ୍ତେ ମିଶି ପ୍ରିପେୟାର କରୁଥିଲେ ପଢ଼ା, ଆଲୋଚନା କରୁଥିଲେ । ରହିଯାଉଥିଲା ନୟନ ଚାରି ଛ' ଦିନ ଲେଖାଏ ବନ୍ଧୁଙ୍କ ସାଥିରେ । ଭାରି ମଜାର ଦିନ ସେସବୁ ସ୍ମୃତି ପଖଳା- ସତେଜ ।

ରୁମ୍ ନମ୍ବର ସେଭେନ୍‌ରେ ତା' ସହିତ ରହୁଥିଲା ସୁକାନ୍ତ ସୁନ୍ଦରରାୟ । ଦେଖିବାକୁ ଯିମିତି ସୁନ୍ଦର, ତା' କଣ୍ଠଟି ତା'ଠୁ ଆହୁରି ଚମତ୍କାର । ଭଲ ଗାଉଥିଲା । ନିତି ସଞ୍ଜରେ ଆସର ଜମୁଥିଲା ଗୀତର । କେତେବେଳେ ମଉଜ ମଜଲିସ୍, ହସଖୁସି ତ କେତେବେଳେ ଅନ୍ତାକ୍ଷରୀ ଜମୁଥିଲା ବେଶ୍ । ନୟନ ଟେବୁଲ୍ ଉପରେ ତବଲା ସଂଗତ କରୁଥିଲା । ସୁକାନ୍ତର ହାରମୋନିୟମ୍ ଥିଲା । ତା' ଛଡ଼ା ନିଜେ ତାପସ ଭଲ କ୍ୟାରିକେଚର କରେ- ହସେଇ

ହଷ୍ଟେଲ ପେଟ ଫଟେଇ ଦିଏ ସଭିଙ୍କର । ଯେଉଁଠି ବି ଥାଉ ସେ ପରିବେଶକୁ ଜମେଇ ରଖିଥିବ । ସେଇଥିପାଇଁ ସମସ୍ତେ ତାକୁ ଖୋଜନ୍ତି- ସମସ୍ତଙ୍କ ପ୍ରିୟ ସେ ।

ଅନେକ ବର୍ଷ ହୋଇଗଲାଣି । ତଥାପି ସବୁ ମନେଅଛି । ସ୍ମୃତିର ଚାବି ଖୋଲିଦେଲେ ହିଁ ସବୁ ଛୁଟିଆସିବେ କିଡ୍‌କିଡ୍ ହେଇ । ହଷ୍ଟେଲ ରହଣି ବେଳର ଯେତକ ସବୁ ଅନୁଭୂତି, ଏକାଠି ପଢ଼ାପଢ଼ି, ଖିଆପିଆ, ଶୁଆବସା, ଗଛବୃକ୍ଷ କ୍ଷେତମାଟି-ଖତସାର ସବୁ ଏକାଠି । କିମିତି ଯେ କଟିଯାଉଥିଲା ସମୟ ଜାଣି ହେଉନଥିଲା । ବାପା ମା' ଭାଇଭଉଣୀ, ଘରଦ୍ୱାର କିଛି ମନେପଡୁନଥିଲା- କଟିଯାଇଥିଲା ଏମିତି ହେଇ ଚାରିବର୍ଷ । ଜୀବନଜଞ୍ଜାଳର ହା ହୁତାଶ, ଦୀର୍ଘଶ୍ୱାସ ଭିତରେ । ଉଲ୍ଲାସ ବିଭୋର ଚାରିବର୍ଷ କିଛି କମ୍ ନୁହେଁ । ସେଇ ଚାରିବର୍ଷକୁ ତ ଆଉ ଭେଟି ହେବନି ।

ତୋର ମନେଅଛି ନା ଶୋଭନ, ପରୀକ୍ଷା ସରିଲାପରେ ଯୋଉଦିନ ଆମେ ସବୁ ହଷ୍ଟେଲ ଛାଡ଼ି ଆସିଥିଲେ ସବୁଦିନ ପାଇଁ । କଫି କପ୍‌ର ଧୂଆଁଳିଆ କୁହେଳିକୁ ଚାହିଁଚାହିଁ ତାପସ କହିଲା । ଏକାଠି ଖାଇଥିଲେ ହୋଟେଲରେ, ସିନେମା ମଧ ଦେଖିଥିଲେ, 'ନର୍ଗିସ ଅଭିନୀତ ମଦର ଇଣ୍ଡିଆ' । ଏବଂ ଚାଲିଚାଲି ଫେରିଥିଲେ ହଷ୍ଟେଲକୁ ଶେଷ ରାତିଟା ଏକାଠି କଟାଇବା ପାଇଁ । ରାତିଟା ତ ଗପରେଗପରେ କଟିଗଲା । ଆମେ କେହି ଶୋଇନଥିଲେ....

"ହେଲେ କ'ଣ ସବୁ ଗପିଥିଲେ କିଛି ମନେପଡୁନି ଏବେ"- କଫି କପ୍‌ରେ ଶେଷ ଚୁମକ୍ ଦେଇ ଶୋଭନ କହିଲା ।

ଭବିଷ୍ୟତ ସମ୍ପର୍କରେ ସଂକ୍ଷିପ୍ତ ଯୋଜନା କିଏ କ'ଣ କରିବାକୁ ଚାହେଁ- ଭାରି କଷ୍ଟ କିନ୍ତୁ ଲାଗୁଥିଲା । ଓଜନ ଧରିଯାଉଥିଲା ମନଟା । କାନ୍ଦି ହେଉନଥିଲା ଯଦିଓ ଛାତି ଭିତରଟା କିନ୍ତୁ ବର୍ଷା ଜମି ରହିଥିବା ମେଘ ଭଳି ଲଟକି ରହିଥିଲା ଅଧାବାଟରେ କାନ୍ଦୁଣ୍ଡମାନ୍ଦୁଣ୍ଡ ହୋଇ । ମୁକୁଳା ଜୀବନ ସରିଯାଉଥିଲା ତ, ହାଲୁକାପଣ କଟିଆସୁଥିଲା ବି ଏଣିକି ବନ୍ଧନ, ଦାୟିତ୍ୱ, କର୍ତ୍ତବ୍ୟବୋଧର ଲମ୍ୱାଧାଡ଼ି ମାଡ଼ି ଆସିବେ ଆଗପଛ ହୋଇ । ଅନେକ ବିଚାର, ଆଲୋଚନା, ଯୁକ୍ତିତର୍କ ଚାଲିଥିଲା ସେଇ ରାତିରେ । ଗମ୍ଭୀର ପରିବେଶ ବିଦାୟର ମୁହୂର୍ତ୍ତ ଯେତିକି ପାଖେଇ ଆସୁଥିଲା, ଆମେ ସମସ୍ତେ ନିଜକୁ ସହଜ କରିବାକୁ ଚେଷ୍ଟା କରୁଥିଲେ- ତଥାପି ଧରାପଡ଼ିଯାଉଥିଲେ ଯେ ଆମେ ସମସ୍ତେ ନିଜ ଆଖି ଲୁହକୁ ଲୁଚାଉଛୁ । ତୋର ମନେଅଛି ନା ଶୋଭନ-

କଥାକୁ ବଦଳେଇ ଦେଇ ଶୋଭନ କହିଲା, "ସୁକାନ୍ତ ଗୋଟାଏ ଚମତ୍କାର ମ୍ୟାଜିକ୍ ଦେଖେଇଥିଲା ଆମକୁ ସେଇ ଅନ୍ଧାରିଆ ରୁମ୍ ଭିତରେ, ପରିବେଶକୁ ହାଲୁକା କରିବା ପାଇଁ, ମନେ ଅଛି ନା ?"

'ତୋର ବି ତ ମ୍ୟାଜିକ୍‌ଟା ହବି ଥିଲା ନା ଶୋଭନ୍... ପଚାରିଲା ଆଖିରେ ଚାହିଁଲା ତାପସ୍ ଶୋଭନ ମୁହଁକୁ- ରଖିଛୁ ସେଇ ଅଭ୍ୟାସ ?'

'ସେଇଟା ହିଁ ମୋ ପାଇଁ କାଳ ହୋଇଗଲାରେ'- ମୁହଁରେ ମେଞ୍ଚାଏ ଅଂଧାର ଲେସି ଶୂନ୍ୟ ଦୃଷ୍ଟିରେ ଛାତକୁ ଚାହିଁ ଉତ୍ତର ଦେଲା ଶୋଭନ ।

'ମାନେ' ! ବୁଝି ପାରିଲିନି ତ, ତାପସ୍ ଆଖିରେ ବିସ୍ମୟ- କ'ଣ କହିବାକୁ ଚାହୁଁଛି ଶୋଭନ୍ । 'ତୁ ଏବେ ପଚାରିଥିଲୁ ନା, ମୁଁ କାହିଁକି ଚାକିରି କଲିନି ?'

ପ୍ରଶ୍ନବାଚୀର ଚିହ୍ନ ଆଙ୍କି ତାପସ୍ ଚାହିଁ ରହିଲା ବାଦଲଘେରା ଶୋଭନର ସୁନ୍ଦର ମୁହଁକୁ । ଭଲ ପ୍ରସ୍ତୁତ କରିଥିଲି ବ୍ୟାଙ୍କିଙ୍ଗ୍ ପାଇଁ । ଲିଖିତ ପରୀକ୍ଷାରେ କୃତକାର୍ଯ୍ୟ ବି ହୋଇଥିଲି । ଇଣ୍ଟରଭ୍ୟୁ ପାଇ କଲ୍ ବି ପାଇଥିଲି । ଯାଇଥିଲି ଆହ୍ଲାବାଦ । ମୋ ସହିତ ହାରକ ଓ ସୁକାନ୍ତ ବି ଯାଇଥିଲେ... କିଛି ମୁହୂର୍ତ୍ତ ପଜ୍ ନେଲା ଶୋଭନ୍ । ତାପସ କହିଲା- 'ସେମାନେ ବି ତ କ୍ୱାଲିଫାଇ କରିଥିଲେ ଇଣ୍ଟରଭ୍ୟୁରେ !' ଲମ୍ୱା ନିଃଶ୍ୱାସ ନେଇ ଶୋଭନ କହିଲା, 'ହଁ, ସବୁ ତ ଠିକ୍‌ଠାକ୍ ଚାଲିଥିଲା ସେତେବେଳ ଯାଏଁ । ଇଣ୍ଟରଭ୍ୟୁ ଆରମ୍ଭ ହେଲା, ସବୁ ପ୍ରଶ୍ନର ଉତ୍ତର ଦେଇଥିଲି । ଖୁସି ଲାଗୁଥାଏ- ପରୀକ୍ଷକମାନେ ବି ଖୁସିଥା'ନ୍ତି- ସରି ଆସୁଥାଏ ସାକ୍ଷାତ୍‌କାର- ଠିକ୍ ସେତିକିବେଳକୁ ଜଣେ ମେମ୍ୱର ହଠାତ୍ ମୋ' ଫର୍ମଟାକୁ ଓଲଟେଇ ପୋଲଟେଇ ପ୍ରଶ୍ନ କଲେ- 'ଓ୍ୱେଲ ମିଷ୍ଟର ଶୋଭନ, ତୁମେ ଏଠି ଲେଖିଛ ଯେ, ମ୍ୟାଜିକ୍ ହେଉଛି ତୁମର ହବି,' ପାସ୍‌ଟାଇମ୍ ? ଆଖିରେ ତାଙ୍କର କୌତୂହଳ ଫୁଟି ଉଠିଥିଲା 'ୟେସ୍ ସାର୍'- ମୁଁ ଉଲ୍ଲସିତ ହେଇ କହିଥିଲି ।

ତା'ପରେ ହସିହସି ଅନ୍ୟ ମେମ୍ୱରମାନଙ୍କ ମୁହଁକୁ ଚାହିଁ ସେ କହିଲେ- ତା'ହେଲେ ଆଜି ଏଇ ମୁହୂର୍ତ୍ତରେ ମିଷ୍ଟର ଶୋଭନ୍ ଆମକୁ କିଛି ମ୍ୟାଜିକ୍ ଦେଖାଇ ଚମତ୍କୃତ କରିବେ ନିଶ୍ଚୟ, ଏବଂ ମୋ ଆଡ଼କୁ ଚାହିଁ କହିଲେ, 'ଓ୍ୱେଲ୍, ଆମକୁ କ'ଣ ମ୍ୟାଜିକ୍ ଦେଖେଇବ ବୋଲି ଭାବୁଛ ୟଙ୍ଗମ୍ୟାନ୍- କେନ୍ ୟୁ ଭେନିସ୍ ୟୁଅର ସେଲ୍‌ଫ, ନିଜକୁ ଉଭାନ କରିଦେଇ ପାରିବ ?'

ନୋ, ନିଜକୁ ତ ଭେନିସ୍ କରିପାରିବିନି ସାର୍, ହେଲେ ଛୋଟମୋଟ କୌଣସି ପଦାର୍ଥକୁ ଭେନିସ୍ କରିଦେଇପାରିବି, ଆପଣଙ୍କ ଅନୁମତି ମିଳିଲେ । ବୁଝିଲୁ ତାପସ୍, ପ୍ରସନ୍ନ ମୁଦ୍ରାରେ ସାଙ୍ଗେସାଙ୍ଗେ ପରୀକ୍ଷକ ଜଣକ ନିଜ ପକେଟ୍‌ରୁ ଗୋଟିଏ କଏନ୍ ଏବଂ ହାତରେ ଧରିଥିବା କଲମଟିକୁ ଦେଖେଇ କହିଲେ- 'ବାଛି ନିଅ ତୁମେ ଏଥିରୁ ଗୋଟିଏ ।'

ମୁଁ ସାଙ୍ଗେସାଙ୍ଗେ ଖୁସି ମନରେ କଏନ୍‌ଟିକୁ ବାଛି ନେଲି ଏବଂ ଅପଲକ ଦୃଷ୍ଟିରେ ଚାହିଁଥାନ୍ତି ସେମାନେ ମୋ ହାତକୁ.... ମୁଁ ଭେନିସ୍ କରିଦେଲି କଏନ୍‌ଟିକୁ କୌଶଳରେ । ଭାରି ତାରିଫ୍ କଲେ ସମସ୍ତେ ମୋ ଖେଳ ଦେଖି । ଏତେ ପ୍ରଶଂସା କରିଥିଲେ ଯେ, ମୋର ମନେ ହୋଇଥିଲା, ମୋ ଚାକିରିଟା ଥୁଆ ହୋଇଗଲା- ଆଉ ଚିନ୍ତା ନାହିଁ । ମୋ ପରେ ପରେ ପାଳି ପଡ଼ିଥିଲା ସୁକାନ୍ତର । ଜାଣେନା ମୌଖିକରେ ସେ କେତେ ଭଲ କରିଥିଲା,

ହେଲେ ମ୍ୟାଜିକ୍ ତା'ର ବି ତ ନିଶା ଥିଲା । ତାକୁ ବି ସେମାନେ ପ୍ରଶ୍ନ କରିଥିଲେ ସେଇ ସମ୍ପର୍କରେ ଏବଂ କହିଥିଲେ ଗୋଟାଏ କିଛି ଖେଳ ଦେଖାଇବାକୁ । 'ସୁକାନ୍ତ ଖେଳ ଦେଖେଇଥିଲା ?' ତାପସ୍ ପଚାରିଲା ଆଖିରେ କୌତୂହଳ ନେଇ । ମୋଷ୍ଟାଏ ଗୋବରକୁ ଫୁଲମାଳରେ ରୂପାନ୍ତରିତ କରି ସେ କୁଆଡ଼େ ପରୀକ୍ଷକଙ୍କୁ ଚକିତ କରି ଦେଇଥିଲା ଓ ସେମାନେ ନିର୍ବାକ ହେଇଯାଇଥିଲେ ଆଶ୍ଚର୍ଯ୍ୟରେ । ଫଳ ବାହାରିଲା ।

ସୁକାନ୍ତ ଚାକିରି ପାଇଥିଲା ଜଣେ ବ୍ୟାଙ୍କ୍ ଅଫିସର୍, ଏକ୍ସପର୍ଟ ଥିଲେ- କହିଲେ- ଜଣେ ବ୍ୟାଙ୍କ୍ ଅଫ ବରୋଦାରେ ଏବଂ ଅନ୍ୟଜଣକ ଆହ୍ଲାବାଦ ବ୍ୟାଙ୍କ୍‌ରେ ପାଇଥିଲେ । ଅନ୍ୟଜଣଙ୍କର ନାମ ତାଲିକା ଭିତରେ ନାଁ ନଥିଲା । କହିଲେ, 'ତୁମେ ବ୍ୟାଙ୍କରେ ଚାକିରି କରି ଯଦି କୌଶଳରେ ଟଙ୍କା ସବୁ ଭ୍ୟାନିସ୍ କରିଦେବ ତ କଥା ସରିଲା, ଏଣୁ ତୁମଭଳି ମ୍ୟାଜିସିୟାନଙ୍କୁ ବ୍ୟାଙ୍କ୍ ଚାକିରି ଦେବାକୁ ଭୟ କଲା । କିନ୍ତୁ ୟଙ୍ଗମ୍ୟାନ୍ ରିଏଲି ୟୁ ଆର ଜିନିୟସ୍ । କହୁକହୁ ସେ ହସି ଉଠିଲେ ହୋହୋ ହେଇ । କାରଣ ଯାହାବି ହେଉରେ ତାପସ୍, ମୁଁ କିନ୍ତୁ ଚାକିରି ପାଇଲି ନାହିଁ । ତଥାପି ମୁଁ ସାହସ କରି ପଚାରିଥିଲି- "ସାର ସୁକାନ୍ତ ବି ତ ଚମତ୍କାର ମ୍ୟାଜିସିୟାନ୍ ! ସେ କହିଲେ- ୟେସ୍, ସିଏବି ଗୁଡ୍ ମ୍ୟାଜିସିୟାନ ନୋ ଡାଉଟ୍, ତେବେ ସେ ବ୍ୟାଙ୍କ୍‌ର ଆସେଟ୍ ହେଇପାରିବେ । ଛାର ଗୋବରକୁ ଯିଏ ଫୁଲମାଳରେ ପରିଣତ କରିଦେଇପାରେ, ଆବଶ୍ୟକ ସ୍ଥଳେ ଗୋଡ଼ିମାଟିକୁ ବି କାମରେ ଲଗେଇ ଦେଇପାରିବେ - ବୁଝିପାରିଲେ ତ ?

କଥାର ଆଇରନିକୁ ମୁଁ ବୁଝି ପାରିଥିଲି ତାପସ୍ । ମୋ ନିଶା ହିଁ ମୋ ପାଇଁ ପ୍ରିଡେଟ୍‌ର ସାଜିଲା । ଯାହାକୁ ମୁଁ ଏତେଦିନ ଧରି ଶ୍ରଦ୍ଧାରେ ପୋଷି ସାଇତି ରଖିଥିଲି, ଅନ୍ୟକୁ ଆନନ୍ଦ ଦେବି ବୋଲି ସେ ହିଁ ମୋତେ ପ୍ରତାରିତ କଲା । କାହିଁକି ଦୋଷ ଦେବି ଅନ୍ୟମାନଙ୍କୁ କହ । ଜାଣେନା, ଏଟା ମୋ ନିର୍ଦ୍ଧାରିତ ଭାଗ୍ୟ ନା ମୋର ଅଜ୍ଞତା ଅଥବା ଅପରାଗତା । ତେବେ ମୁଁ ଓ ମୋ' ଭାଗ୍ୟ... ଶୋଭନ ସିଗାରେଟ୍ ଲଗେଇବା ପାଇଁ ଲାଇଟର ମାରୁମାରୁ କଥା ପୂରଣ କରିବାକୁ ଯାଇ କହିଲା, ସବୁବେଳେ କୌଣସି ନା କୌଣସି 'ପ୍ରିଡେଟର' କବଳରେ ହିଁ ପଡ଼ିଆସିଛି, ତୋର କ'ଣ ମନେ ନଥିବ କି ଆମ ପରୀକ୍ଷା ବେଳର କଥା...

ମୋର ମନେ ପଡ଼ିଗଲା ହଠାତ୍ ଶୋଭନ କଥା ଶୁଣି ସେସବୁ ଦିନର କଥା । ଆମର ଶେଷବର୍ଷ ସେଇଟା । ଏଣ୍ଟୋମୋଲଜି ପ୍ରାକ୍ଟିକାଲ ଥାଏ । ଲାବୋରୋଟିରିରେ ଦେଖେଇ ଦେବାକୁ ହେବ, ବାଛିଦେବାକୁ ପଡ଼ିବ ଯେ ଗଛଲତାମାନଙ୍କର ହିତକାରୀ କୀଟପତଙ୍ଗ ସବୁ କିଏ ଏବଂ ଅହିତକାରୀ କିଏ ? ପ୍ରଶ୍ନ ଥାଏ ଏଇଟା- 'ଫାଇଣ୍ଡ ଆଉଟ୍ ଦି ଇନ୍‌ସେକ୍ଟ ଆଣ୍ଡ ପେଷ୍ଟସ' । ଏଇସବୁ ଇନ୍‌ସେକ୍ଟମାନଙ୍କୁ ପରୀକ୍ଷା ପୂର୍ବରୁ ନିଜ ପ୍ରଚେଷ୍ଟାରେ କଲେକ୍ଟ କରିବାକୁ ପଡ଼େ । ସେଥିପାଇଁ ପରୀକ୍ଷା ପୂର୍ବରୁ ମଶାରି କନାରେ ତିଆରି ବେଲୁନ୍ ଯନ୍ତା ଧରି କ୍ଷେତ୍ର,

ବଗିଚା, ମଇଦାନମାନଙ୍କରେ ଘଣ୍ଟାଘଣ୍ଟା ଧରି ଇନ୍‌ସେକ୍ଟମାନଙ୍କ ପଛରେ ଗୋଡ଼େଇବାକୁ ପଡ଼େ ଧରିବା ପାଇଁ ଏବଂ କଲେକ୍ସନ ବକ୍ସରେ ଯତ୍ନର ସହିତ ପିନ୍ କରି ସ୍ପେସିମେନ ସବୁକୁ ଚିହ୍ନେଇ ଦେବାକୁ ହୁଏ କିଏ କ'ଣ । ଯିଏ ଅଧିକ କଲେକ୍ଟ କରି ଚିହ୍ନେଇ ଦେଇପାରେ ତା'ର ମାର୍କ ସେତିକି ଅଧିକା ହୁଏ । ରୀତିମତ ଇଏ ଗୋଟିଏ ପ୍ରକାରର ପ୍ରତିଯୋଗିତା ।

ସେଥର, ମୁଁ , ସୁକାନ୍ତ ଏବଂ ଶୋଭନ ମିଶି ଅନେକ ପରିଶ୍ରମ କରି ସ୍ପେସିମେନ୍ ଯୋଗାଡ଼ କରିଥିଲୁ । ସତରେ ସବୁଠୁ ବେଶି ଶୋଭନ ହିଁ କଲେକ୍ଟ କରିଥିଲା । ଆମ ଭିତରେ କିନ୍ତୁ ହୀରକ ସବୁଠୁ ଚତୁର ଥିଲା । ଆମ ସହିତ ମିଶି କଲେକ୍ଟ କରିବାର ଅଭିନୟ ମାତ୍ର କରୁଥିଲା । ଆମେ ଜାଣିପାରୁଥିଲୁ । ପାଠପଢ଼ାରେ ବି ଏତେଟା ପାରଙ୍ଗମ ନଥିଲା । ତଥାପି ଟଙ୍କା ଦଶଟା କି ପନ୍ଦରଟା ବିଭାଗୀୟ ପିଅନକୁ ଧରେଇ ଦେଇ ବସିଯାଉଥିଲା ଚୁପ୍‌ଚାପ୍ । ଯଦିଓ ଏହା ପରୀକ୍ଷାର୍ଥୀଙ୍କ ପାଇଁ ଏକ ଧର୍ତ୍ତବ୍ୟ ଅପରାଧ ଥିଲା, ତଥାପି କେହିକେହି କରୁଥିଲେ ଏଭଳି ଉପାୟ । ଆମେ ସବୁ ବୋକା ଏ ସମ୍ପର୍କରେ ଜାଣିନଥିଲୁ ମୋଟେ ।

ପରୀକ୍ଷା ଦିନ ଆସିଲା । ଶୋଭନର ପାଳି ପଡ଼ିଲା । ଆମେ ସମସ୍ତେ ନିଜ ନିଜର ସ୍ପେସିମେନ ନେଇ ଦାଖଲ କଲୁ । ପ୍ରଫେସର ଦାସ ଶୋଭନକୁ ପ୍ରଶ୍ନ କରୁକରୁ ସ୍ପେସିମେନ୍ ବକ୍ସ ଖୋଲିଦେଲେ ଦେଖିବା ପାଇଁ କାହାର କେତେ କଲେକ୍ସନ୍ ହେଇଛି । ଆଶ୍ଚର୍ଯ୍ୟ ! ସମସ୍ତଙ୍କୁ ଚକିତ କରିଦେଇ ଫଡ଼୍‌ଫଡ଼୍ କରି ଉଡ଼ିଗଲା ଟିକିଏ ବଡ଼ଧରଣର ପତଙ୍ଗଟି ଏରୋପ୍ଲେନ୍ ଭଳି ଭୁଁ ଭୁଁ କରି । ତା' ପିଠିରେ ପିନ୍ ହେଇଥିବା କଣ୍ଟାଟି ମଧ୍ୟ ଲାଗି ରହିଥିଲା ଇଣ୍ଡିକେଟର ଭଳି ଅଥବା ସେଇ ମୁହୂର୍ତ୍ତରେ କ୍ରୁଶବିଦ୍ଧ ଯିଶୁଙ୍କର ଭ୍ରମ ଜନ୍ମେଇବାରେ ସାହାଯ୍ୟ କରିଥିଲା କହିଲେ ଭୁଲ ହେବନି । "ଇଏତ ପ୍ରିଡ଼େଟର ଶୋଭନ, ପ୍ରିଡ଼େଟର ! ! ଚିତ୍କାର କରିଥିଲେ ପ୍ରଫେସର ଦାସ ଭୂତ ଦେଖିଲା ଭଳି । ତୁମ ସ୍ପେସିମେନ୍‌ମାନେ କାହାନ୍ତି ଶୋଭନ୍ ? ?

ବିବାକ୍ ବିମୂଢ଼ ହେଇ ଚାହିଁଥିଲା ଶୋଭନ । କିଛି ଉତ୍ତର ନଥିଲା ତା' ପାଖରେ । ଗଣିଗଣି ସେ ସମସ୍ତଙ୍କଠୁ ବେଶି ସତେଇଶଟି ସ୍ପେସିମେନ ପିନ୍ କରିଥିଲା । କାହାନ୍ତି ସେମାନେ ? ? ତା' ସାମ୍ନାରେ ପରୀକ୍ଷକ ଓ ପ୍ରଶ୍ନ । କାନ୍ଦୁଣ୍‌ମାନ୍ଦୁଣ ଅବସ୍ଥା ଶୋଭନର । କି କୈଫିୟତ ଦେବ ? ଚାରିଦିନ କାଳ ଖରାରେ ବୁଲିବୁଲି ସତେଇଶଟା ସ୍ପେସିମେନ ସଂଗ୍ରହ କରି ସବୁକୁ ଅଠାରେ ଚିପ୍‌କେଇ ପିନ୍ କରି ଚିହ୍ନିତ କରି ରଖିଥିଲା ସାରା ରାତି । ମନେମନେ ଭାବିଲା, କିଏ କ'ଣ ବଦମାସି କରି ବକ୍ସ ଭିତରେ ପୂରେଇ ଦେଇଛି 'ପ୍ରିଡ଼େଟର'ଟାକୁ ? ସନ୍ଦେହ ହେଲା ହେଲେ ପ୍ରମାଣ ତ ନାହିଁ, କାହାକୁ ଅବିଶ୍ୱାସ କରିବ ? ହେ ଭଗବାନ ! ! କେଡ଼େ ବୋକା ସେ । ଜୀବନର ପ୍ରଥମ ଯୁଦ୍ଧରେ ପ୍ରଥମ ପାହାଚରେ ହିଁ ଝୁଣ୍ଟି ପଡ଼ିଲା । ଜୀବନସାରା ଆହୁରି ପଡ଼ିଛି, କେମିତି ଚିହ୍ନିବ କାହାକୁ କିଏ ତା'ର ପ୍ରିଡେଟର୍- ଭକ୍ଷକ ! ସେ ହାରିଗଲା ।

ପ୍ରଫେସର ଦାସ ବିରକ୍ତିସୂଚକ ସ୍ୱରରେ କହିଲେ 'ତମେ ଏଇ ପ୍ରିଡେଟରଟାକୁ ପୋଷି ରଖିଥିଲ ଶୋଭନ, ରାତିସାରା ଗୋଟିଗୋଟି କରି ଚରିଯାଇଛି ସଭିଙ୍କୁ, ଦେଖୁନ, ଦ୍ୱାର ଖୋଲୁଖୋଲୁ କେମିତି ଉଡ଼ିଗଲା ବିଜୟୀ ସେନାପତି ଭଳି । କ'ଣ ଆଉ କରିପାରିବ ତୁମେ ଜୀବନରେ ? ତା'ପରେ ଦାର୍ଶନିକଙ୍କ ଭଳି କହିଲେ 'ଚିହ୍ନ ଶୋଭନ, ଚିହ୍ନ । ଜୀବନକୁ ଚିହ୍ନ । ଦିସ୍ ଇଜ୍ ଲାଇଫ୍ । ଫାଇଟ୍‌ଦେବା ପୂର୍ବରୁ ହିଁ ତମେ ହାରିଗଲ । ୟୁ ଆର ଡିଫିଟେଡ୍ ।

ପ୍ରଫେସର ଦାସଙ୍କ କଥାର ବ୍ୟଞ୍ଜନାକୁ ସେଦିନ ଶୋଭନ ଛଳଛଳ ଆଖିରେ କେତେ ମାତ୍ରାରେ ବୁଝିଥିଲା କେଜାଣି, ବିକଳ ହୋଇ ପ୍ରଫେସରକୁ କନ୍‌ଭିନ୍ସ କରିବା ପାଇଁ ପ୍ରୟାସ ବି କରିଥିଲା- 'ବିଶ୍ୱାସ କରନ୍ତୁ ସାର୍, ମିଛ କହୁନି ସଟେଇଶଟାକୁ ପୂରାପୂରି ପିନ୍ କରି ଲେଖିରଖିଛି ପାଖରେ । କିନ୍ତୁ ଏଇଟା... ।' ଆଖିରେ ଅନ୍ଧାର ଛାଇଯାଇଥିଲା । ପରୀକ୍ଷାରେ ଭଲ କରିନଥିଲା ଶୋଭନ । ହୁଏତ, ଦୟାକରି ପ୍ରଫେସର ଦାସ ପାସ୍ ମାର୍କଟିଏ ଦେଇ ପଠେଇ ଦେଇଥିଲେ । କହିଥିଲେ, "ଚିହ୍ନି ଶିଖ ଶୋଭନ ଏଇ ଜଗତଟା ଏତେ ସହଜ ନୁହଁ, ନଚେତ୍ ହାରିଯିବ ।"

ସେଥର ହୀରକ ସବୁଠୁ ଭଲ ରେଜଲ୍ଟ କରିଥିଲା, ଆଉ ଆମେ ସମସ୍ତେ ଶୋଭନକୁ ବୋକାମିର ମଜା ଉଠେଇବାକୁ ଯାଇ 'ପ୍ରିଡେଟର' କହି ଚିଡଉଥିଲୁ ଅନେକ ଦିନ ପର୍ଯ୍ୟନ୍ତ । ଇଏ ସେଇ ଶୋଭନ । ଶୋଭନ ଆଚାର୍ଯ୍ୟ । ବୋକା, ସରଳ ଅଥଚ ସ୍ୱଚ୍ଛ, ସିଧାସଳଖ, ସହଜ, ଅବ୍ୟବସ୍ଥିତ ଏବଂ ଅସୁରକ୍ଷିତ ।

ଜୀବନ ସଂଘର୍ଷର ଚଉଛକିରେ ଠିଆହୋଇ ଆଜିବି ଜାଣିପାରୁନି, ସେ କ'ଣ କରିବ, କୁଆଡ଼େ ଯିବ । ରାସ୍ତା ତ ସରିନି, ଆହୁରି ଅନେକ ବାଟ ଅଛି । ଦାୟିତ୍ୱ ବି ଥିବ ହୁଏତ । ପିଲାଏ ଉଡୁରି ନଥିବେ । ସେମାନଙ୍କ ଭବିଷ୍ୟତ ବାଟ ଓଗାଳୁଥିବ । ସିଏବି ହୁଏତ ଆସିଛି ବ୍ୟାଙ୍କଲୋନ୍ ପାଇଁ- ସମଦଶା, ଭାବିଲା ତାପସ୍ । ଏବଂ ଲମ୍ବା ନିଃଶ୍ୱାସଟିଏ ନେଇ ହଠାତ୍ ପଚାରିଦେଲା ମଧ୍ୟ ।

.... ଆଉ ପିଲାଏ- କ'ଣ ସବୁ ପଢ଼ିଲେଣିରେ ? କାହାର ?

"ତୋର, ଆଉ କାହାର । ତୋ କଥା ହିଁ ପଚାରୁଛି ।

ମ୍ଳାନ ହସର ରେଖାଟିଏ ଫୁଟିଉଠିଲା ଶୋଭନ ଓଠରେ । ଓଜନିଆ ନିଃଶ୍ୱାସଟିଏ ଛାଡ଼ି କହିଲା, ମୁଁ ଆଉ କେତେବେଳେ ସଂସାର କଲି ।

ମାନେ । ।

"ମାନେ ଆଉ କ'ଣ, ଯେତେବେଳେ ନିଜର ସ୍ଥାୟୀ ପରିଚୟଟିଏ, ନିର୍ଦ୍ଦିଷ୍ଟ ଠିକଣା ଖଣ୍ଡେ ଯୋଗାଡ଼ କରିପାରିନି, ସେଠି ସଂସାର ପାତିବାର ସ୍ୱପ୍ନ ବା ଦେଖିବି କେଉଁ ସାହସରେ ? ଆଉ ଶ୍ୱେତାଙ୍ଗିନୀ ? ଶ୍ୱେତାଙ୍ଗିନୀ କଥା ପଚାରି ଦେଇ ତାପସ ନିଜକୁ ଅପ୍ରସ୍ତୁତ ମଣିଲା ।

କାରଣ ଶୋଭନ ମନରେ କଷ୍ଟଦେବା ତା'ର ମୋଟେ ଉଦ୍ଦେଶ୍ୟ ନଥିଲା । ତା' ପ୍ରଶ୍ନରେ ଶୋଭନର ମୁହଁ ହଠାତ୍ ବିଷଣ୍ଣ ହେଇଉଠିଲା ତ । ଶ୍ୱେତାଙ୍ଗିନୀ କଥା ତା'ର ନିଶ୍ଚୟ ପଚାରିବାର ଉଚିତ ନଥିଲା । ନିଜକୁ ଅପରାଧୀ ଅପରାଧୀ ଲାଗିଲା । ହଜିଲା ଅତୀତ । ହଜିଯିବା ହିଁ ଉଚିତ । କିନ୍ତୁ ଦିନ ଥିଲା, ଶୋଭନ ପାଇଁ ଶ୍ୱେତା ପାଗଳ ହେଇଯାଉଥିଲା । ଅନେକ ପ୍ରେମପତ୍ର ଲେଖୁଥିଲା । ତାକୁ ଛାଡ଼ି ସେ ବଞ୍ଚିପାରିବନି ବୋଲି କିଛି କମ୍ ଇମୋସନାଲ ଚାପ ପକଉନଥିଲା ଶ୍ୱେତା । ଶୋଭନ କିନ୍ତୁ ପ୍ରଥମରୁ ନିସ୍ପୃହ ଥିଲା । କହୁଥିଲା, ତା' ଦେଇ ପ୍ରେମଫ୍ରେମ ହେଇପାରିବନି । ଏଯାଏ ନିଜ କ୍ୟାରିଅର ଗଢ଼ିପାରିନି । ଏସବୁ ଶ୍ୱେତାର ପାଗଳାମି । ଦିନେଦିନେ ଦି'ପହରିଆ ନିଦ ନଯାଇ ବନ୍ଧୁମାନଙ୍କ ଆଗରେ ଶ୍ୱେତାର ଚିଠି ଖୋଲି ପଢ଼ି ଶୁଣାଉଥିଲା । ଅଷ୍ଟାଦଶୀ ଶ୍ୱେତାର ପ୍ରେମପତ୍ରରେ ବାସ୍ତବତା ଅପେକ୍ଷା ଭାବପ୍ରବଣତା ବେଶି ଥିଲା । ବେଶ୍ ପିଲାଳିଆ । ସାଙ୍ଗମାନେ ମିଶି ଶୋଭନକୁ ଶ୍ୱେତାଙ୍ଗିନୀ ନାଁରେ ଚିଡଉଥିଲେ । ଶ୍ୱେତା ଭେଟନାରୀ କଲେଜର ସର୍ଜନ ପ୍ରଫେସର ମହାପାତ୍ରଙ୍କ ଏକୁଟିଆ ଝିଅ- ସେରେନ୍ଧ୍ରୀ, ଗେଲବସରୀ । ଶୋଭନ କହୁଥିଲା, ମୋ ପାଇଁ ସେ ଜନ୍ମ ହେଇନି । କେବଳ ଝିଅଟା ଯାହା ଭଲଲାଗୁଛି ।

ତେବେ ତାପସର ଯାହା ମନେପଡ଼ୁଛି, ପଛକୁ ପଛକୁ ଶୋଭନର ଦୁର୍ବଳତା ଆସିଯାଇଥିଲା ଶ୍ୱେତାଙ୍ଗିନୀ ପ୍ରତି । କୋଉ ଗୋଟାଏ ଦୁର୍ବଳ ମୁହୂର୍ତ୍ତରେ ଏକଥା ସ୍ୱୀକାର କରିବାକୁ ଯାଇ ଶୋଭନ ହିଁ କହିପକେଇଥିଲା । ଆଗ ପଢ଼ିସାରି ଚାକିରିଟିଏ ଯୋଗାଡ଼ କରେ । ନହେଲେ ଉଦ୍‌ବାସ୍ତୁ ଜୀବନରେ ଅଳିଅଳୀ ରାଜଜେମାଙ୍କୁ ନେଇ ଥଇଥାନ କରିବି କୋଉଠି ?

-"କାହିଁକି, ଶ୍ୱେତା ତ ଗୋଟିଏ ଝିଅ, ବାପ ବେଶ୍ ବଡ଼ ଲୋକ ଅସୁବିଧା କ'ଣ ?" ମାନେ ? ତୁ କ'ଣ କହିବାକୁ ଚାହୁଁଛୁ, ଗାରଡ଼େଇ ଚାହିଁଥିଲା ଶୋଭନ ତା' ମୁହଁକୁ ।

ସେ ଜାଣିପାରିଲା, ଶୋଭନର ସ୍ୱାଭିମାନକୁ ସେ ଆଘାତ ପହଞ୍ଚେଇଛି । ତେବେ ଶ୍ୱେତା ଯେ ଶୋଭନକୁ କଥା ଦେଇଥିଲା ଯେ ସେ ଅପେକ୍ଷା କରିବ ତା' ପାଇଁ । ଅପେକ୍ଷା କଲା କି ନାହିଁ ଜାଣିବା ଇଚ୍ଛାଥିଲେ ବି ତାପସ ପଚାରିବାକୁ ଚାହିଁଲାନି । ଚୁପ୍‌ଚାପ୍ କିଛି ମୁହୂର୍ତ୍ତ କଟିଗଲା ସେମିତି । ହୁଏତ ଶୋଭନ ଭିତରେ କିଛିଟା ହଲଚଲ ସୃଷ୍ଟି ହୋଇଥିଲା । ସେ ଜୋରଜୋର୍‌ରେ ସିଗାରେଟ୍ ଫୁଙ୍କି ଚାଲିଥିଲା । ସତେଯେମିତି ସେ ଅତୀତକୁ ଧୂଆଁ କରିଦେବାକୁ ଚାହୁଁଛି । ଏଥର ଶୋଭନ ଖାଲି କଫି କପ୍‌ରେ ପାଉଁଶ ଝାଡ଼ି ତାପସ ମୁହଁକୁ ଚାହିଁଲା ଶୂନ୍ୟ ଦୃଷ୍ଟିରେ ଏବଂ କିଛି ମୁହୂର୍ତ୍ତ ପରେ ଶବ୍ଦଟିଏ ମାତ୍ର ଉଚ୍ଚାରିତ ହେଲା ତା'ପାଟିରେ 'ଶ୍ୱେତା' !! ଯେମିତି ଉଚ୍ଚାରଣଟା ଭୁଲି ଯାଇଥିଲା ଅନେକ ଦିନରୁ । ହସିଲା ଶୋଭନ- ରହସ୍ୟମୟ ହସ । ଆଖିରେ ପ୍ରଶ୍ନବାଚୀ ନେଇ ତାପସ ଚାହିଁଲା ଶୋଭନ ମୁହଁକୁ । ଶୋଭନ

ସେମିତି ଶୂନ୍ୟକୁ ଚାହିଁ ରହିଲା, ଶ୍ୱେତା ହୀରକର ମଣିମୟ ପ୍ରସାଦରେ ବନ୍ଦୀ- ତେବେ ଛାଡ଼ ସେକଥା- କଥା ବୁଲାଇବାକୁ ଚେଷ୍ଟା କଲା ଶୋଭନ ଏବଂ ସ୍ଥିର ଭାବେ କହିଲା, ସେସବୁ ପୁରୁଣା କଥା, ଗତଜନ୍ମର । ଭୁଲିଯାଇଛି ମନେରଖିବା ଅନାବଶ୍ୟକ ଭାବି । ତେବେ ହୀରକ ଗୋଟିଏ ଭଲ ପୋଷ୍ଟରେ ଅଛି । ବ୍ୟାଙ୍କ୍ ଅଫ୍ ଇଣ୍ଡିଆର ଜଣେ ଦାମୀ ଅଫିସର । କଥା ଭିତରେ ତାପସ ଲକ୍ଷ୍ୟ କରୁଥିଲା ଶୋଭନ କଣ୍ଠସ୍ୱର କେମିତି ଥଣ୍ଡାଳିଆ ଲାଗୁଛି, ବରଫ ମିଶିଲା ଭଳି ।

ଅତୀତଟାକୁ ଶୋଭନ ଭୁଲିଯାଇଛି । ଥୋଇଦେଇଛି, ଗତ ଜନ୍ମର ଷ୍ଟୋର ଭିତରେ । ସତରେ କ'ଣ ଶୋଭନ ଭୁଲିଯାଇଥିବ ? ଭୁଲିଯାଇଥିବ ଶ୍ୱେତାଙ୍କିନୀକୁ ?। ଦେଖିଥିବା ସ୍ୱପ୍ନମାନଙ୍କୁ ? ସୁଖ-ଦୁଃଖ, ମାନ-ଅପମାନ, ଗ୍ଲାନି-ହତାଶା, ପରାଭବ-ପରାଜୟ ସବୁକୁ ? ନିତି ସୂର୍ଯ୍ୟ ଉଇଁଲାଠୁ ଅସ୍ତ ହେବା ଯାଏ ସାମ୍ନା କରୁଥିବ ଜୀବନର ଯେତେସବୁ ଘଟଣା ଦୁର୍ଘଟଣା ଭିତରେ ତା' ରକ୍ତମାଂସର ସତ୍ତା ସତରେ ଭୁଲିଯାଇଥିବ ସବୁକୁ !

କେଜାଣି ! ସନ୍ଦେହ ହେଲା ତାପସର । ଯଦି ଭୁଲିଯାଇଥାନ୍ତା, ତେବେ କାହିଁକି ଏମିତି ବିତରାଗ ସନ୍ନ୍ୟାସୀର ଜୀବନଚର୍ଯ୍ୟାକୁ ବରଣ କରି ଆଧ୍ୟାତ୍ମିକମାର୍ଗୀ ହୁଅନ୍ତା ? ସଂଘର ଆଶ୍ରୟ ନିଅନ୍ତା ? ଗେରୁଆ ନ ପିନ୍ଧି ମଧ ମନକୁ ଗୈରିକ କରି ଯାଯାବରୀ ଜୀବନଯାପନ କରୁଥା'ନ୍ତା ? ଦିନର ଆଲୁଅରେ ଜୀବନ ସଂଘର୍ଷର ଛେଲୁଆ ଧରି ସଞ୍ଜ ନଇଁଲେ ସତ୍‌ସଂଘରେ ବସି ପ୍ରବଚନ ଶୁଣୁଥା'ନ୍ତା । ।

ଶୋଭନ ଛଳନା କରୁଛି । ନିଜ ସହିତ । ନିଜ ପ୍ରବଣତା ସହିତ ।

ଏଥର ଶୋଭନ ପ୍ରଶ୍ନ କଲା ତାପସକୁ, "କହିଲୁନି ତ ଏଯାଏ, ତୋ' ଖବର କ'ଣ ?" ଶୁଣିଥିଲି, ତୁ କୁଆଡ଼େ ଏ ଭିତରେ ବିଦେଶ ଯାଇ ସ୍ୱତନ୍ତ୍ର ଜ୍ଞାନକୌଶଳ ଶିଖି ଆସିଛୁ । କୁଆଡ଼େ ଯାଇଥିଲୁରେ ?

'କାନାଡ଼ା' । ସଂକ୍ଷିପ୍ତ ଉତ୍ତରଟିଏ ରଖିଲା ତାପସ ।

ଏବେ କୋଉଠି ? ସଙ୍ଗେସଙ୍ଗେ ଉତ୍ତରଦେଲା ତାପସ, "ମାଟି ଉପରେ, ଆକାଶ ତଳେ," ତୋରି ସାମ୍ନାରେ ତ ବସିଛି । କଣ୍ଠରେ ବୋଝେ ବ୍ୟଞ୍ଜନା ଥିଲା । ନାହିଁ ଥଟ୍ଟା କରୁନି, କୋଉ କମ୍ପାନୀରେ ଥିବୁ ତ...

ଥିଲି କେବେ ଅଏକ ଓଡ଼ିଶାରେ । ଭୁଶୁଡ଼ିଗଲା କମ୍ପାନୀ ଅସମୟରେ । ସ୍ୱପ୍ନ ସବୁ ଅଙ୍କୁର ହେବା ଆଗରୁ ମାଟି ବନ୍ଧ୍ୟା ପାଲଟିଗଲା । ଏଇଟିକକ ଆଗରୁ ଶୋଭନ ଜୀବନକୁ ନେଇ ତର୍ଜମା କରୁଥିଲା ତାପସର ଯୁକ୍ତିବାଦୀ ମନ ଉପରେ ହଠାତ୍ ଯିମିତି ଶିଉଳି ମାଡ଼ିଗଲା ଏବଂ ସେଇ ଖସଡ଼ା ଭାଗ୍ୟର ପଥର ଉପରେ ଅଥୟ ପାଦ ଦି'ଟା ଖସୁଖସୁ ଗୋଟାଏ ଅବଲମ୍ବନ ପାଇଁ ହାତ ବଢ଼ାଉଥିଲା ସତେ ଯେମିତି ।

ତା'ପରେ ଶୋଭନ ପଚାରିଲା ।

ତା'ପରେ ଆଉ କ'ଣ, ଶୂନ୍ୟଥାଳ ଧରି ରାସ୍ତାକୁ ଓହ୍ଲେଇବା କଥା । ହେଲେ, ନିଜକୁ ନିଜେ ବ୍ୟଙ୍ଗ କରିବାକୁ ଯାଇ ଉଚ୍ଚାରଣ କଲା 'ପ୍ରିଡେଟର' । ସେଇ 'ପ୍ରିଡେଟର' । ଜୀବନସକାଳର ଖଣ୍ଡିଉଡ଼ା ଦେଉଥିବା ଯେତେକ ଆଶା, ସ୍ୱପ୍ନ, ସମ୍ଭାବନାରୂପୀ ପତଙ୍ଗମାନଙ୍କୁ ଖୁଣ୍ଟିଖୁଣ୍ଟି ଚାକୁଳେଇ ଦେଇ ଉଡ଼ିଯାଇଛି ଭାଗ୍ୟରୂପୀ 'ପ୍ରିଡେଟର' । ଆଉ କାହାକୁ ଦୋଷ ଦେବ ସେ । ତଥାପି ନିଜକୁ ଦମ୍ଭ ଦେବା ସ୍ୱରରେ କହିଲା ମୁଁ ହତାଶ ହେଇନିରେ ଶୋଭନ । ହତାଶ ହେବା ପାଇଁ ଜୁ' ନାହିଁ ମୋର । ତୋ' ଭଳି ମୁଁ ସନ୍ନ୍ୟାସୀ ନୁହେଁ । ଦି' ଦି'ଟା ପୁଅ ପାଠ ପଢ଼ିବାକୁ ଘରେ ସ୍ୱପ୍ନ ବୁଣୁଥିବା ସ୍ତ୍ରୀ । ମୁଁ ପ୍ରତିଶ୍ରୁତିବଦ୍ଧ ସ୍ୱାମୀଟିଏ, ବାପଟିଏ, କାହାକୁ ଆଡ଼େଇ ପାରିବିନି । ସମାଜ ମୋତେ କ୍ଷମା କରୁ କି ନ କରୁ, ମୁଁ ନିଜ ପାଖେ ନିଜେ ଉତ୍ତରଦାୟୀ ହେଇଯିବି । ଜୀବନକୁ ପାଣି ଛଡ଼େଇ ହେଉ କି ନିଆଁକୁ ଡେଇଁ ହେଉ ପ୍ରତିଶ୍ରୁତି ପାଳନ କରିବାକୁ ହିଁ ହେବ । ମୋତେ ଯଦି ବେକରେ କ୍ରସ୍ ଝୁଲେଇବାକୁ ପଡ଼େ ବି ମୁଁ ପଛେଇବାନି । ମୋ' ପାଇଁ ଜୀବନ ଯେତିକି ସତ, ଜୀବନ ବଞ୍ଚିବାଟା ବି ସେତିକ ସତ । ଏଇ ବଞ୍ଚିବା ପାଇଁ ପାଥେୟ ଦରକାର । 'ଟଙ୍କା' ସ୍ୱପ୍ନ ଖାଇ ତ ଆଉ ବଞ୍ଚିହେବନି, ତାପସ ନିଃଶ୍ୱାସ ନେଇ କଥା ବନ୍ଦ କରି । ଶୋଭନ ଦେଖୁଥିଲା ଭିନ୍ନ ଏକ ତାପସକୁ । ତା' ସ୍ମୃତି ଅଗଣାରେ ଠିଆ ହେଇଥିବା ସେଇ ପୁରୁଣା କମେଡ଼ି କମେଡ଼ି ଜୋକର୍ ଭଳି ଲାଗୁଥିବା ସରଳ ସ୍ୱଚ୍ଛନ୍ଦ ତାପସ ନୁହେଁ ବରଂ ଆଉ ଜଣେ ଜୀବନବାଦୀ ତାପସ । ଭାବିଲା, ଜୀବନର ଚେହେରାକୁ କେମିତି ବଦଳେଇ ଦେଇଛି ସମୟ । ଚକିତ ହେଲା ।

ତାପସ କହିଲା, ବୁଝିଲୁ ଶୋଭନ ଗୋଟାଏ ସ୍ୱୟଂସେବୀ ସଂସ୍ଥାର ଅର୍ଗାନାଇଜର ଡକ୍ଟର ରାୟ ଥରେ ପ୍ରପୋଜାଲ ଦେଲେ- "ଗୋଟାଏ ଖ୍ରୀଷ୍ଟିୟାନ ମିସନାରୀ ସଂସ୍ଥା ସାହାଯ୍ୟ କରିବା ପାଇଁ ରାଜି ଅଛି, ତେବେ ଟିକିଏ ଅସୁବିଧା ଯେ, ସେମାନେ କେବଳ ଖ୍ରୀଷ୍ଟିୟାନମାନଙ୍କୁ ହିଁ ସାହାଯ୍ୟ କରନ୍ତି, କିନ୍ତୁ ତୁମେ..."

କଥାର ବ୍ୟଞ୍ଜନା ମୁଁ ବୁଝି ପାରିଥିଲିରେ, ମୁଁ ଅରାଜି ନଥିଲି । ଭୋକ ଉପାସରେ କପର୍ଦ୍ଦକଶୂନ୍ୟ ହୋଇ ପିଲାଙ୍କ ଭବିଷ୍ୟତ ସହିତ ଖେଳିବା ଅପେକ୍ଷା, କ୍ରସ୍‌ଟିଏ ଛାତିରେ ଝୁଲେଇଦେଲେ କି ଥରେ ଦି'ଥର ଚର୍ଚ୍ଚକୁ ଯାଇ ଯିଶୁଙ୍କ ନାଁ ନେଲେ ମୋ' ସମସ୍ୟାର ଯଦି ସହଜ ସମାଧାନ ହେଇଯିବ ମୁଁ ପଛେଇବି କାହିଁକି ? ମୋ ଧର୍ମ ତ ମୋର, ମୋ ଅନ୍ତରତମ ଦେବତାଙ୍କୁ ମୁଁ ଚିହ୍ନିଛି, ମୋତେ ବି ସେ ଚିହ୍ନିଛନ୍ତି । ନାମ ତାଙ୍କର ଅନ୍ତର୍ଯାମୀ । ଭେକ ବଦଳିଗଲେ କ'ଣ ମୋ ଭିତରର ମଣିଷଟା ବଦଳିଯିବ, ତୁ କହିଲୁ ଦେଖି...

ହେଲେ ଶୈଳ - ମୋ ସ୍ତ୍ରୀ, ମୋଟେ ରାଜି ହେଲାନି, କହିଲା, ତମ ଜାତକ କହୁଛି, ଆଉ ବର୍ଷ ଦି'ଟା ଅପେକ୍ଷା କର, ଶୁଭ ଦୃଷ୍ଟି ପଡ଼ିଯାଉ ଗ୍ରହମାନଙ୍କର, ସାଫଲ୍ୟ ଲେଉଟି

ଆସିବ ତୁମ ପାଦତଳକୁ । କ'ଣ ଆଉ କରିବି, ଧମକ ଦେଲା, ଜୀବନ ହାରିବି । ସେଇଥିପାଇଁ ତ ଆସିଛି ବ୍ୟାଙ୍କ୍‌ଲୋନ୍ ପାଇଁ । କାଲି ସକାଳ ଟ୍ରେନ୍‌ରେ ପୁଅ ଯିବ ପୁଣେ ଇଂଜିନିୟରିଂ ପଢ଼ିବାକୁ । ଅଥଚ ଦେଖ୍ ଗପୁଗପୁ ବ୍ୟାଙ୍କ୍ ଟାଇମ୍ ଓଭର ହେଇଗଲା । ମନେ ରହିଲାନି ଅତୀତ ଭିତରେ ପଶିଗଲା ପରେ, ଆଜିବି ସେ ମୋତେ ଠକିଦେଲା । ଆଚ୍ଛା ଶୋଭନ, ତୋ' ମ୍ୟାଜିକ୍ କୌଶଳ ପ୍ରୟୋଗ କରି ଏଇ ସମୟକୁ ବାନ୍ଧି ରଖିପାରନ୍ତୁନି ? ଅନର୍ଗଳ କହିଯାଉଥିଲା ତାପସ ।

ଶୋଭନ ବ୍ୟସ୍ତ ହେଇ କହିଲା, ଆଇ ଆମ୍ ସରି ତାପସ୍ । ଭେରି ସରି । କିନ୍ତୁ ଶୋଭନ ଠିକ୍ ବୁଝିପାରୁଥିଲା, ଇଏବି ଗୋଟାଏ ପ୍ରକାରର ଛଳନା । ନିଜର ଦୁଃସ୍ଥିତି, ଦୁଃସମୟକୁ, ଦୁର୍ଭାଗ୍ୟ ଓ ଅସହାୟତାକୁ ଘୋଡ଼େଇବାର- ତାକୁ ଦେଖାଇବାର କୌଶଳ । କ'ଣ ନା ବାହାଦୁରି, ହାରିନି କି ହାରିବନି । ଯେମିତି ଅନ୍ଧାର ଦେଖି ଭୟରେ ଜଡ଼ସଡ଼ ହୋଇଯାଉଥିବା ଅବୋଧ ଶିଶୁଟିଏ ଦୂରରୁ କୋଉଠି ଟିକିଏ ଆଲୁଅର ସ୍ଥିତି ଦେଖି ସାହସ ଗୋଟାଉ ଗୋଟାଉ କହି ପକାଏ 'ଜମା ମୋତେ ଡରଲାଗୁନି' ବୋଲି । ଏଇ 'ଡରଲାଗୁନି'କୁ ବାରମ୍ବାର କହିବା ଭିତରେ ନିଜକୁ ଆଶ୍ୱସ୍ତ କରୁଥାଏ ସେ ନିର୍ଭୀକ । ଠିକ୍ ସେମିତି ତାପସ, ନିଜକୁ ନିଜେ ଆଶ୍ୱାସୁଛି ।

ଶୋଭନର ଦରଦୀ ଛାତିଟା ଆନ୍ଦୋଳିତ ହୋଇଉଠିଲା । ଆହା, ମଣିଷ ସତରେ କେଡ଼େ ଦୟନୀୟ । କେତେ ଅସହାୟ ଜୀବନଟିଏ ।

ତଥାପି ପରିବେଶକୁ ହାଲୁକା କରିବାକୁ ଯାଇ ସିଏ ବି ଉଚ୍ଚାରଣ କଲା ସେଇ ପରିଚିତ ଶବ୍ଦ ପ୍ରିଡେଟର । ଆମେ ସମସ୍ତେ ତା' କବଳରେ ପଡ଼ିଯାଇଛୁ ନାଁରେ ତାପସ ?

ହସି ପକେଇଲା ଜୋକର ତାପସ ଶୋଭନ ସହିତ ମିଶି ନିଜକୁ ନିଜେ ବ୍ୟଙ୍ଗ କଲା ଭଳି । ଦୁହେଁ ସଚେତନ ହେଲା ବେଳକୁ ସମୟ ବଡ଼ବଡ଼ ପଞ୍ଝା ପକେଇ ମାଡ଼ି ଯାଉଥିଲା ଆଗକୁଆଗକୁ ।



# ମୁଁ ସରଦେଇ, ମୋ' ଚଟିଘର

ସମୁଦ୍ର ମୋର ଅତି ପ୍ରିୟ । ସମୁଦ୍ରକୁ ମୁଁ ଭଲପାଏ । ଅନେକ ସ୍ୱପ୍ନ ଭିତରୁ ସମୁଦ୍ର ମୋର ଅନ୍ୟତମ ସ୍ୱପ୍ନ । ତା'ର ନୀଳିମା, ବିସ୍ତୃତି ଓ ସର୍ବୋପରି ତା'ର ସାମଗ୍ରିକ ରୂପ ମୋତେ ବିଭୋର କରେ । ପାଗଳ ଲାଗେ ମୋତେ । ମୋ' ପାଇଁ କିନ୍ତୁ ସମୁଦ୍ର ଏତେ ସହଜଲଭ୍ୟ ନଥିଲା । ମୁଁ ପାହାଡ଼ ଦେଶର ଝିଅ ତ ।

ହେଲେ ସେଇ ସୁଯୋଗ ମୋ' ପାଇଁ ଦିନେ ଆଣି ଦେଇଥିଲା, ମୋର ସରଳ ଅବୋଧ ଶୈଶବ । ମୋ' ଆଇ ଆଉ ମାମୁଙ୍କ ସହ ପୁରୀ ଆସି ସମୁଦ୍ର ଦେଖିଥିଲି । ଯଦିଓ ମୁହୂର୍ତ୍ତକ ଲାଗି ତା'ର ଅସୀମତା, ମୋ' ଶୈଶବର ଚେତନାକୁ ସ୍ତବ୍ଧ ଚକିତ କରି ଦେଇଥିଲା ଅବଶ୍ୟ ପରବର୍ତ୍ତୀ ସମୟରେ କିମିତି କ'ଣ କିମିଆଁ କଲା ସେଇ ସମୁଦ୍ର କେଜାଣି, ମୋ' ଅଜାଣତରେ ହିଁ ମୁଁ ବାନ୍ଧି ହୋଇଗଲି ତା' ଭାବର ଡୋରିରେ । ତା'ର ଉଦ୍‌ବେଳିତ ଲହଡ଼ିମାଳା ସହିତ ତାଳଦେଇ ମୋ' ଚଞ୍ଚଳଚପଳ ଶୈଶବ ବି ନାଚିଉଠିଥିଲା ସେଦିନ । ସେଇ ସେ ଶୈଶବରୁ ଆଜିଯାଏ ସମୁଦ୍ର ପାଇଁ ମୋ' ପ୍ରତୀକ୍ଷାର ଶେଷ ହୋଇନି । ସମୟ ପାଇଲେ ହିଁ ମୁଁ ଧାଏଁ ତା' ପାଖକୁ । ସତ କହିଲେ ସମୁଦ୍ର ଦେଖିବା ବାହାନାରେ ପୁରୀ ଆସିବା ପାଇଁ, ମୁଁ 'ସଂସାର' ନାଁରେ ସମୁଦ୍ର ସହିତ ସନ୍ଧି କରିଛି । ସନ୍ଧି କରୁକରୁ ନିଜ ଅଜାଣତରେ ହଜିଯାଇଛି ତା' ଅସୀମ ନୀଳିମା ଭିତରେ । ବୋଳିହେଇଯାଇଛି ତା' ନୀଳିମାକୁ ମୋ' ଦେହମନ ଚେତନାରେ । ଆଜି କିନ୍ତୁ ସମୁଦ୍ର ମୋତେ ଏତେ ପ୍ରଲୁବ୍ଧ କରୁନି । ମୋ' ବୟସ୍କ ଚେତନା ତା' ଭିତରେ ଦେଖୁଛି ଅନ୍ୟ ଏକ ରୂପକୁ । ମାପୁଛି ତା'ର ଗଭୀରତାକୁ । ତା ବିସ୍ତୃତି ଭିତରେ ଅନନ୍ତ ଜୀବନର ବ୍ୟଞ୍ଜନା ଫୁଟିଉଠୁଛି ।

ଅନୁଭବ କରୁଛି ଏକ ମହାଭାବର ପରିପ୍ରକାଶକୁ ।

ସମୁଦ୍ରର ସହର ଏଇ ପୁରୀ ।

ପୁରୀ ପ୍ରତି ମୋର ଅଦ୍ଭୁତ ଆକର୍ଷଣ – କହିଛି ତା ମୋ' ପ୍ରିୟମଣିଷର ଗାଁ ବୋଲି ବି ନୁହେଁ । ଏଇ ଆକର୍ଷଣ ପିଲାଟି ଦିନରୁ । ଯେତେବେଳେ ବୁଝି ନ ପାରିବାର, ଭାବି ନ ପାରିବାର ବୟସ । ଆଜି ଏକଥା କେହି ବିଶ୍ୱାସ କରୁ ବା ନ କରୁ, ଏହାହିଁ ସତ । କେହି କେହି ମୋତେ ପଚାରିପାରନ୍ତି, କାହିଁକି ମୋର ଏଇ ଦୁର୍ବଳତା ? ମୋ' ପାଖରେ ତା'ର ସହଜ ଉତ୍ତର କିଛି ନାହିଁ । ଥିଲେ ବି, ମୋ' ବୟସ୍କ ଚେତନା ହାତଧରି ବାଟ ଓଗାଳିପାରେ । ଭାବିଲେ ତ, ପୁରୀ, ଛୋଟ ନାଁଟିଏ, ସହଜ ଉଚ୍ଚାରଣ, ବିଶେଷ ଅର୍ଥ ବ୍ୟଞ୍ଜିତ ହୁଏନା । ଅଥଚ ଭାବରେ କେଡ଼େ ଗଭୀର । ଏକ ଅନୁପମ, ବ୍ୟକ୍ତ ନିଃସର୍ଗ ଘେନାଘେନିର ବିଚିତ୍ର ବିଳାସ ଭୂମି- ଏଇ ପୁରୀ । ଏଠି ସବୁ ଅଛି । କାରଣ 'ସେ' ଅଛି । ଅଛି ସସୀମ ଜୀବନର ଅସୀମ ଉଲ୍ଲାସ । ଅଫୁରନ୍ତ ଆନନ୍ଦ । କୋଳାହଳମୟ ଶ୍ରୀମନ୍ଦିରର ଅକଳନ୍ତି ଆଧ୍ୟାତ୍ମିକ ଐଶ୍ୱର୍ଯ୍ୟ । ସମୁଦ୍ରର ଅସୀମତା ସହିତ ସୂକ୍ଷ୍ମ ଚେତନାର ଅଭିନବ ଆତ୍ମଘୋଷଣା କରୁଥିବା 'ବଡ଼ଦାଣ୍ଡ' । ଯିଏ ମନ ଆଉ ଶରୀରକୁ ବୋଧମୟ କରିବାର ଅତୀନ୍ଦ୍ରିୟ ଆହ୍ୱାନ ଦେଇଆସୁଛି କାଳରୁ କାଳାନ୍ତର ଯାଏ । ଆତ୍ମକୈନ୍ଦ୍ରିକତାକୁ ଆଡ଼େଇ ଦେଇ ବିଶ୍ୱପ୍ରାଣତାର ଅନ୍ୟ ରୂପ ଏଇ 'ବଡ଼ଦାଣ୍ଡ' ହାତ ବଢ଼େଇଛି ଅନନ୍ତ ଆକାଶ ଆଡ଼କୁ । କହୁଛି, ଆସ ସମସ୍ତେ ମୋ' ପାଖକୁ । ହଜିଯାଅ ମୋ' ଭିତରେ । ପୋଛିଦିଅ ନିଜ ଭିତରୁ ଯେତେସବୁ ଅହଂକାର, ମୁଁପଣର ଗରିମା ।

ଆଉ ଏପଟେ ମହାକାଳର ଜୟଗାନ କରୁଥିବା ଭସ୍ମ ବିଲେପିତ 'ସ୍ୱର୍ଗଦ୍ୱାର' ଅନବରତ ସବୁ ମିଛ, ସବୁ ଅନିତ୍ୟର ଉଦ୍‌ଘୋଷଣା କରି, ଅଳୀକ ଜୀବନର ଶୂନ୍ୟତାକୁ ପ୍ରତିଷ୍ଠା ବି ଦେଇଛି ଶୂନ୍ୟବାଦୀ ସାଜି ।

ଅନ୍ୟ ପ୍ରକାରେ କହିଲେ 'କିଛି ନାହିଁ'ର କାଙ୍ଗାଳପଣ ଭିତରେ 'ସବୁ ଅଛି'ର ଗରିମାମୟ 'ଥିଲାପଣ' ବସ୍ତୁବାଦୀ ଆର୍ତ୍ତ ମଣିଷକୁ ନିତ୍ୟ ଅଭିଭୂତ କରୁଛି । ଅସରନ୍ତି ଦୁଃଖର ସମୁଦ୍ରରେ ଉବୁଟୁବୁ ହେଉଥିବା 'ମୁଁ' ନାମକ ସରାଟି 'ସବୁକିଛି'କୁ ହଜାଇସାରି ମଧ୍ୟ ପୁଣି 'ସବୁକିଛି'କୁ ଖୋଜି ପାଇବାର ଅନନ୍ତ ବ୍ୟାକୁଳତା ସଭିଙ୍କୁ ଅଥୟ କଲାଭଳି, ହୁଏତ ମୋତେ ବି ଅଥୟ କରିଛି ବୋଲି ପୁରୀକୁ ମୁଁ ଏତେ ପ୍ରାଣଦେଇ ଭଲପାଇଛି ? ଏଇଟା ହିଁ କି ମୋର ଦୁର୍ବଳତା ? ମୁଁ ଜାଣେନା କିନ୍ତୁ । ଅଥଚ ଉତ୍ତର ଖୋଜିବା ପାଇଁ ହଜାରେ ବାର ପ୍ରଶ୍ନ କରିଛି ନିଜକୁ ।

ଏଇ ଶ୍ରୀକ୍ଷେତ୍ର ମୋ' ଚେତାନାର ଚନ୍ଦନବିନ୍ଦୁ । ଉଚ୍ଚରିତ ପ୍ରଣବର ଆଦ୍ୟ ଓଁକାର । ଆଞ୍ଜୁଳାଏ ତୁଳସୀର ପ୍ରାଣ ଉଲ୍ଲାସକାରୀ ବାସ୍ନା ଅଥବା ମହକିତ ଦୟଣାର ଚିତ୍ତଉଲ୍ଲାସୀ ମୁଠାଏ ସୁଗନ୍ଧ !

ଏଠି ଅଛି ଶୂନ୍ୟତା, ଶୂନ୍ୟବ୍ରହ୍ମ ! ପୁଣି ଅଛି ପୂର୍ଣ୍ଣତା, ପୂର୍ଣ୍ଣବ୍ରହ୍ମ ! ମୁକ୍ତିର ଦ୍ୟୋତନା

ଏଠି । ପରମପ୍ରାପ୍ତି ବି ଏଇଠି । ସବୁ ମିଶାମିଶିର ପ୍ରତୀକଟିଏ ଏଇ ଶ୍ରୀକ୍ଷେତ୍ର ପୁରୀ । ସବୁ ଦର୍ଶନ, ସବୁ ଚିନ୍ତନ, ସବୁ ଭାବ ଭାବନାର ଊର୍ଦ୍ଧ୍ୱରେ ଏଇ 'ମହାଭୂମି' ନିତ୍ୟଗୋଲକ ।

ଏଇ 'ମହାଭୂମି' ସହିତ ମୋର ସମ୍ପର୍କ ଯୋଡ଼ି ହୋଇଥିଲା ସେଇ ସେ ବାଳୁତ ବୟସରେ । ସେତିକିବେଳେ ମୋର ସମୁଦ୍ର ସହିତ ପ୍ରଥମ ଭେଟ ଏବଂ ଶ୍ରୀମନ୍ଦିର ଦର୍ଶନ ବି । ସମସ୍ତଙ୍କ ଦେଖାଦେଖି ମୁଁ ବି ମୁଣ୍ଡରେ ମାରିଥିଲି ବଡ଼ଦାଣ୍ଡର ଧୂଳିକୁ । ପ୍ରଣିପାତ କରିଥିଲି ପିଲାମନ ନେଇ ଏବଂ ସର୍ବୋପରି ଭେଟ ହୋଇଥିଲା ବଡ଼ବଡ଼ ବୃତ୍ତାକାର ଦୁଇଟି ଆଖିଥିବା ସେଇ ଅଦ୍ଭୁତ ରୂପ ସହିତ । ଯାହାଙ୍କୁ ପରବର୍ତ୍ତୀ ସମୟରେ 'ଅରୂପ', 'ନିରାକାର' ବୋଲି ଚିହ୍ନିଲି । ଆଗରୁ ଯେ ଏ ରୂପ ମୁଁ ଦେଖିନଥିଲି, ତା' ନୁହେଁ । ଆମ ଗାଁ ମନ୍ଦିରରେ ବି ଦେଖିଛି, ହେଲେ ଏଇଠି ଯୋଉ ଐଶ୍ୱର୍ଯ୍ୟମୟ ପ୍ରାସାଦର ରତ୍ନସିଂହାସନରେ ଆସୀନ ବିରାଟ ବିଶ୍ୱରୂପ, ମୋତେ, ମୋ' ବାଳୁତ ଚେତନାକୁ ସ୍ତବ୍ଧ ଓ ତଟସ୍ଥ କରିବା ସଙ୍ଗେସଙ୍ଗେ ଭିନ୍ନ ଏକ ଜଗତକୁ ନେଇ ଯାଇଥିଲା । ମୁଁ ମୋ' ଭିତରେ ନଥିଲି ନିଶ୍ଚୟ ।

ନହେଲେ ମୋ' ଆଇମା' ମୋତେ ଝାଙ୍କିଦେଇ କୁହନ୍ତା କାହିଁକି "ଚାହିଁଛୁ କ'ଣ ବୋକୀଙ୍କ ଭଳି ? ଇଏ ପରା ବଡ଼ଠାକୁର, ଜଗତନାଥ । ପ୍ରଣାମ କର । ମନପ୍ରାଣ ଲଗେଇ ଯାହା ମାଗିବୁ ସେ ଦେବେ । ମାଗ୍ ଯାହା ମାଗିବୁ ।"

ମନ୍ତ୍ରଚାଳିତ ପରି ମୁଁ ତା'ର ସବୁକଥା ମାନି ଆଖିବୁଜି କଳ୍ପନା କରିଥିଲି ସେଇ ବିରାଟ ରୂପକୁ । ଡର ଲାଗୁଥାଏ ଆଖିବୁଜିଲେ । ଏତେବଡ଼ ବିରାଟ ଯେ, ଆକାଶକୁ ମାଡ଼ିଯାଉଥାଏ ସତେକି ! ଆଖି ଖୋଲି ହୋଇଯାଉଥାଏ । ସେଇ ଅବସ୍ଥାରେ ହିଁ ମୁଁ ମାଗିଥିବି କିଛି । କ'ଣ ମାଗିଥିବି ? ମାଗିବା କ'ଣ ଜାଣିଥିଲି ଯେ ! ପିଲାମନ, ପୁଣି କ'ଣ ଅଭାବ ଥିଲା ? ବାପା ମା'ଙ୍କ ସ୍ନେହସରାଗ, ଫ୍ରକ୍, ଖେଳନା, ବହିକଲମ, ଭାଇଭଉଣୀ, ସାଙ୍ଗସାଥୀ ସମସ୍ତେ ଥିଲେ, ସବୁ ଥିଲା । କ'ଣ ଆଉ ମାଗିଥିବି ? ଆଜି କିଛି ମନେପଡୁନି ଆଉ ।

ତେବେ ସେଇ ଥିଲା ମୋର ପ୍ରଥମ.ପରିଚୟ ଜଗନ୍ନାଥଙ୍କ ସହିତ । ସେଇ ଶୈଶବରୁ ଆଜିଯାଏ ମୋ' ଚେତନା ଭିତରେ ସେ ସେଇମିତି ଥାପି ହେଇଅଛନ୍ତି । ଆଖିବୁଜିଲେ ହିଁ ଅନୁଭବ କରିପାରୁଛି ସେଇ 'ଅରୂପରୂପ'ଙ୍କୁ ।

ଆଜିକାଲି କିନ୍ତୁ ମୁଁ ନିତି ଯାଉଛି ତା' ପାଖକୁ । ଯାଉଛି ତା' ଦୁଆରକୁ କିଛି ମାଗିବି ବୋଲି । ଅନେକ ଅକୁହା କଥାକୁ କହିବି ବୋଲି । ସଂସାର ଭିତରେ ବାନ୍ଧି ହେଇ ସଂସାରୀ ବୋଲାଉଛି ଯେତେବେଳେ, ଫର୍ଦ୍ଦଫର୍ଦ୍ଦ ଅଭାବର କାଗଜ ମୋ' ଭିତରେ । ଅଥଚ ମୁଁ ଜାଣେ, ମାଗିଲେ ସେ କେବେ ଦିଏନା । ତମେ ନିଜକୁ କେବଳ ସମର୍ପି ଦିଅ, ଚାହିଁଲେ ସେ ସବୁ ଅଜାଡ଼ି ଦେବ ତମ ଆଞ୍ଜୁଳାରେ, ଯେମିତି ଅଜାଡ଼ି ଦେଇଥିଲା ଗୋପବାଳାଙ୍କୁ, ସୁଦାମାକୁ... ଯଶୋଦାଙ୍କୁ... ହେଲେ ମୁଁ କ'ଣ ପାରୁଛି ସେମିତି, ମୋ' କାନରେ ତ ପିଲାଦିନର

ସେଇ ମନ୍ତ୍ର 'ଯାହା ମାଗିଲେ ସେ ଦିଏ' । ସଂସାରୀର ଖୋଳପାକୁ ତ ଛାଡ଼ିପାରେନା କି ମାଗିବି ପାରେନା ତାକୁ କିଛି । ସ୍ତମ୍ଭୀଭୂତ ହୋଇଯାଏ ମୋ' ପରିଣତ ବୟସୀ ଚେତନା । ସେଇ ଚକାଆଖିର ମାୟାରେ ମୁଁ ଉଲ୍ଲସିତ ହୁଏ । ଯେତେସବୁ ପାର୍ଥିବ କାମନା ଉଡ଼ିଯାଏ ରେଣୁରେଣୁ ହେଇ ସମୁଦ୍ରବାଲି ଭଳି । ଶୂନ୍ୟ ହେଇଯାଏ ମୋ' ଭିତରଟା । ମନେପଡ଼େନା ମୋ' ଘରସଂସାର, ସମ୍ପର୍କ, ସମ୍ପର୍କର ଯେତେସବୁ ଥାଇତାପଣ । ସବୁ ଯେମିତି ଲୀନ ହୋଇଯାଏ, ସେଇ ବୃତ୍ତାକାର ଆଖିର ଗୋଲକ ଭିତରେ । ଲାଗେ ସବୁ ତ ଅଛି ମୋର, ଠିକ୍ ସେଇ ଶୈଶବର ଅବୋଧ ଭାବନା ଭଳି । ମନେହୁଏ, କ୍ଷଣକରେ, ମୁଁ ଭାଗ୍ୟବନ୍ତ ମାଣିକ ଗଉଡୁଣୀ, ମୋ' ହାତରେ ଅଛି, ତା' ହାତର ରତ୍ନମୁଦି । ମୋର ଆଉ ଅଭାବ କ'ଣ ଯେ । ମୁଁ ତ ଐଶ୍ୱର୍ଯ୍ୟମୟୀ ଏ ଜଗତରେ । ଭୁଲିହୋଇଯାଏ କ'ଣ ମାଗିବାକୁ ଆସିଥିଲି ଓ କାହିଁକି ? ମୋ' ଆଗରେ ଯେତେବେଳେ 'ସେ' ଅଛି, ମୋ' ଭିତର ବାହାର, ଚାରିଆଡ଼ ତ ପୂର୍ଣ୍ଣ ହେଇଯାଉଛି ଆପେଆପେ । ଆଉ ମାଗିବି କ'ଣ ? ସେ ତ ପୂର୍ଣ୍ଣତମ, ଦୟାବନ୍ତ !

ଅଥଚ ଆଖି ଖୋଲିଲେ, ଘରମୁହାଁ ହେଲେ ହିଁ ଲାଗେ ମୁଁ ଶୂନ୍ୟ ନିଃସ୍ୱ ମୁଁ, ଅସହାୟ, କାଙ୍ଗାଳୁଣୀ । ଶୂନ୍ୟତା ନିଃସଙ୍ଗତାର ପସରା ମୁଣ୍ଡେଇ ଏକାଏକା ଚାଲିଛି ଜୀବନ-ବଡ଼ଦାଣ୍ଡରେ । ମୋ' ପସରାରେ କୁଢ଼କୁଢ଼ ଆତ୍ମପଣର ଭଙ୍ଗାରୁଜା ଆବର୍ଜନା । ମୋ' ସାଲବେଗୀୟ ଆତ୍ମା ବିକଳ ହୋଇ ତାକୁ ହିଁ ଖୋଜେ, ମୋ ବୟସ୍କ ଆଖିର ହଳଦିଆ ପାଣ୍ଡୁର ଦୃଷ୍ଟି ଲମ୍ବିଯାଏ ପୁଷମାସର କୁହୁଡ଼ି ଭଳି ସିଂହଦ୍ୱାର ଡେଇଁ ସ୍ୱର୍ଗଦ୍ୱାର ଆଡ଼କୁ ।

ସେଠି ଦେଖେ ସବୁ ମିଛ । ସବୁ ଶୂନ୍ୟର ଖାଁଖାଁ ଗେରୁଆ ଭିତରେ ଅଘୋରୀ ଯୋଗୀର ନିରାସକ୍ତ ଲଙ୍ଗଳାପଣ । ମୋ' ଥିଲାପଣର ଅହଂକାର, ସ୍ୱାଭିମାନର ପୀତାମ୍ବରୀ ଖସିପଡ଼େ କ୍ରମଶଃ ପରସ୍ତପରସ୍ତ ହେଇ । ମାୟାର ଖୋଳପା ଝଡ଼ିପଡ଼େ ପୁରୁଣା କାନ୍ଥରୁ ଚୂନ ଝଡ଼ିଲା ଭଳି । ମୋତେ ଦେଖି ମୁଁ ଚମକି ପଡ଼େ । ଦାନ୍ତୁରା ଦଦରା କଙ୍କାଳଟାକୁ ଦେଖି ମୁଁ ଭୟରେ ଜଡ଼ଜଡ଼ ହେଇ ଆଖିବୁଜି ଦିଏ ।

କିଛି ମୁହୂର୍ତ୍ତ ପରେ ମୁଁ ନିଜ ସ୍ଥିତିକୁ ଫେରିଆସେ । ଭାବେ, ମୁଁ କ'ଣ ମୋହଗ୍ରସ୍ତ ? ଏତେ ଅଥୟ ହେଉଛି କାହିଁକି ମୋ' ମନ ! ମୋର ଭୟ କାହାକୁ ? ମୁଁ ଯେତେବେଳେ ମୋର ନୁହେଁ । ତା' ହେଲେ ? ଏକ ଭିନ୍ନଭିନ୍ନ ଭାବନା ମୋ' ଚେତନାକୁ ଉଦ୍ବେଳିତ କରେ । ମୁଁ ଅନୁଭବ କରେ, ଏକ କାମନାହୀନ ଅନ୍ତରଙ୍ଗପଣ, ତା' ଆଉ ମୋ ଭିତରେ । ସେଠି ଆଉ କେହି ନାହିଁ । କେବଳ ସେ ଆଉ ମୁଁ । ସେ ହସୁଛି ମୋତେ ଚାହିଁ ଯେମିତି ସେଇ ଆଠବର୍ଷର ଅବୋଧ ବାଳିକାକୁ ଚାହିଁ ସେଦିନ ହସୁଥିଲା । ସେଦିନ ତା' ନାଲି ଓଠର ବଙ୍କା ହସଟା ମୋତେ ଖୁବ୍ ଆକର୍ଷିତ କରିଥିଲା । ଭାରି ସଂକ୍ରାମକ ତା'ର ସେଇ ହସ ଖଣ୍ଡିକ । ନହେଲେ ଷୋଳସହସ୍ର ଗୋପାଙ୍ଗନା କାହିଁକି ପାଗଳ ହେଉଥାନ୍ତେ, ତା' ପାଇଁ ? କାହିଁକି

ଧାଉଁଥିଲେ ରାଇକିଶୋରୀ ଯେତେସବୁ ସାମାଜିକ ବନ୍ଧନ କାଟି ତା' ପଛରେ ? ତା'ର ସେଇ ଭୁବନମୋହନ ହସ ପାଇଁ ତ । ସେଦିନ କିନ୍ତୁ ମୁଁ ଏ କଥାର ରହସ୍ୟ ବୁଝିନଥିଲି । ମୋତେ ହିଁ ମୁଁ ବୁଝିନଥିଲି । ହେଲେ ଆଜି ବୁଝୁଛି ସେଇ ଭାବର ଗହୀରତାକୁ । ସେ ଭାବମୟ । ଭାବରେ ବନ୍ଧା । ସେଦିନ କିନ୍ତୁ ତା' ଓଠଟା, ମୋ' ଆଇମା'ର ପାନଖିଆ ନାଲି ପୁଚୁପୁଚୁ ଓଠ ଭଳି ଠିକ୍ ମନେ ହେଉଥିଲା । ହସୁହସୁ ଖସିପଡୁଛି, ନାଲିପିକ ଓଠ ସନ୍ଧିରୁ ବି'ଧାର ହେଇ ଯେମିତି । ଆଉ ସେଇଥିପାଇଁ ମୋତେ ଭାରି ଅନ୍ତରଙ୍ଗ ମନେହେଉଥିଲା ସେ । ଆଜି ମୋ' ଅବୋଧ ନାତୁଣୀ ବି ଠିକ୍ ସେଇକଥା କହୁଛି । ସେଇ ଅନୁଭବ ତା'ର, ଏକାପ୍ରକାର । ଚାରିବର୍ଷର କୋମଳମତି ଶିଶୁପ୍ରାଣରେ ବି ସେଇ ଅନ୍ତରଙ୍ଗତାର ଉଲ୍ଲାସ-ତା' ଓଠର ସେଇ 'ଭାବ'ର ସଂକ୍ରାମକ ନାଲିଛିଟା ସବୁରୀ ମନପ୍ରାଣକୁ ବାନ୍ଧିରଖିଛି ଏକ ସୂତାରେ ।

ସେଦିନ କେତେ ସମୟ ଧରି ତାକୁ ବିମୁଗ୍ଧ ହେଇ ଚାହିଁ ରହିଥିଲି କେଜାଣି ମୋର ଆଜି ମନେନାହିଁ । ତେବେ ବାନ୍ଧି ହେଇଯାଇଥିଲି ତା' ସହିତ ଆଉ କିଛି ନ ମାଗି, କେହି ନ ଶୁଣିଲା ଭଳି ତୁନି ତୁନି କହିଥିଲି, "ତମେ ପରା ଯାହା ମାଗିଲେ ଦିଅ, ତା'ହେଲେ ତୁମ ଓଠର ହସ ସେଇ ନାଲି ହସରୁ ଟିକିଏ ଦିଅନ୍ତନି ମୋ' ଆଇମା'କୁ । ସେ ସବୁବେଳେ କାନ୍ଦୁଛି ଅଜାକୁ ମନେପକେଇ, ମୋତେ ଜମା ଭଲଲାଗୁନି । ତମ ହସରୁ ଟିକେ ଦେଲେ, ସେ ନିଶ୍ଚୟ ହସିବ । ଆଉ ହସିଲେ ଠିକ୍ ତମଭଳି ସୁନ୍ଦର ଦିଶିବ, ଲୋଭନୀୟ । ମୋ ପାଇଁ କିଛି ଲୋଡ଼ା ନାହିଁ ।

କହିସାରି, ମୁଁ ଅନେଇଥିଲି ଚାରିଆଡ଼କୁ, କିଏ ଆଉ ଶୁଣିପକେଇଲା କି ବୋଲି । ପାଖରେ ଆଖିବୁଜି ଠିଆ ହେଇଥିବା ଆଇମା'କୁ ବି ଚାହିଁଥିଲି । କାଳେ, ତାକୁ ଶୁଭିଯାଇଥିବ ନା, କେହିବି ଶୁଣିନାହାନ୍ତି ତା' କଥା । ସେଦିନ ପ୍ରଥମକରି ମୁଁ ନିଜପାଇଁ କିଛି ନ ମାଗି, ମୋ ପ୍ରିୟ ମଣିଷଟି ପାଇଁ କିଛି ମାଗିଥିଲି । ଆଉ ଆଜି, ଜୀବନର ଅପରାହ୍ନରେ ଠିଆହୋଇ ଠିକ୍ ସେଇକଥା ହିଁ ମାଗୁଛି । କାରଣ ଜଗତକୁ ଦେଖିବାର ଆଖି ଅଛି ମୋ' ପାଖରେ, ଅନ୍ୟକୁ ବୁଝିବାର ମନ ଆଉ ହୃଦୟଟିଏ ବି ଅଛି- ତେଣୁ ଦେଖିପାରୁଛି କେତେ ଲୁହ ଝରୁଛି ଏଇ ହତଭାଗ୍ୟ ମଣିଷ ଆଖିରୁ । ଲୁହଲହୁରେ ଭାସୁଛି ବସୁଧା । ଏସବୁ ଲୁହ କେବଳ ଯନ୍ତଣାର । ମଣିଷପଣିଆ ନାହିଁ । ହିଂସ୍ରପଶୁର ହୁଙ୍କାର ସରଳ ମଣିଷରେ ଆଖିରୁ ନିଦ କାଢ଼ିନେଇଛି । କେବଳ ସ୍ୱାର୍ଥ ହିଁ ସ୍ୱାର୍ଥ । ଏଇ ପୃଥିବୀ ବଞ୍ଚିବାଯୋଗ୍ୟ ହୋଇନି ଆଉ । ବଞ୍ଚିବା ଦୁରୂହ ହେଇପଡ଼ିଛି ଠାକୁରେ । ଇଏ ତ ତମେ ସର୍ଜିଲା ପୃଥିବୀ ନା । ପାର ଯଦି ସବୁ ଲୁହକୁ ପୋଛି ନେଇ ତମ ଲୁଣି ସମୁଦ୍ରରେ ମିଶେଇଦିଅ । ପ୍ରତିବଦଳରେ ତମ ଓଠର ସେଇ ସଂକ୍ରାମକ ହସରୁ ଛିଟାଏ ଦେଇ ବସୁଧାକୁ ଉଲ୍ଲସିତ କର । ସୃଷ୍ଟି କର ରୋମାଞ୍ଚର କଦମ୍ବ । ଏଥିରେ

ତମ ହସର ଅକ୍ଷୟ ଭଣ୍ଡାର କିଛି ଊଣା ହୋଇଯିବନି । କାରଣ ତମେ ଆର୍ତ୍ତତ୍ରାଣ । ଜଗତନାଥ ନା !

ଆଉ ମୁଁ, ମୋ' କଥା ? ମୋର କିଛି ମାଗିବାର ନାହିଁ । ମୁଁ କ'ଣ ଅଲଗା ? ମୁଁ ବି ତ ସେଇ ଆର୍ତ୍ତମାନଙ୍କ ଭିତରୁ ଜଣେ । ଅଲଗା କରି ମାଗିବି ଆଉ କ'ଣ । ଦେଲେ ବି ଭୋଗ କରିବାକୁ ବେଳ ନାହିଁ । ତମକୁ ଭଲପାଉଥିବା, ଅନ୍ତରଙ୍ଗ ମନେକରୁଥିବା 'ସରଦେଈ' ମୁଁ, ବସିଛି, ଏଇଠି ତୁମ 'ଚଟିଘର' ଜଗି । ଅପେକ୍ଷା କରିଛି ତମକୁ.... ଆସିବ ବୋଲି ଦୟଣାର ସୁଗନ୍ଧରେ ମହକି ଉଠିବ ଏଇ 'ଚଟିଘର' । ମୁଁ ଆଉ ମୋର ସମସ୍ତ ଇନ୍ଦ୍ରିୟ ଅନୁସରଣ କରୁଛି ତମର ସେଇ ଚନ୍ଦନମିଶା ଦୟଣାର ବାସ୍ନାକୁ... କେବେ ଆସିବ... ସେଇଥିପାଇଁ ତ ମୋର ଏଇ ଉଚ୍ଚାଟପଣ ! ଅୟୁତ ଦୀପାବଳିର ଆଲୁଅରେ ରାଇର ଉତ୍କଣ୍ଠିତ ମନ ନେଇ ଚାହିଁବସିଛି ତମ ଆସିବା ବାଟକୁ । ତୁମ 'ଚଟିଘର' ଚାବି ଯେ ମୋ' ହାତରେ । ତମକୁ ନ ଫେରେଇଲା ଯାଏ ମୋ' ଦାୟିତ୍ୱ ସରିବ କିମିତି କହୁନ ?

ତମେ ତ ଜାଣ ଠାକୁରେ କର୍ପୂରମିଶା ଚନ୍ଦନ ଆଉ କସ୍ତୁରୀରେ ମୋର କେତେ ଲୋଭ... ଗନ୍ଧଲୋଭୀ ମୋର ଏଇ ମନଭ୍ରମର ପାଗଳ ହେଇଯାଏ ତମ ଦୟଣାର ସୁଗନ୍ଧରେ... ତମେ ତ ଅନ୍ତର୍ଯାମୀ, ଜାଣୁଥିବ ସବୁ... ମୋ' ଅନ୍ତର ବାହାର ତମକୁ କିଛି ଅଗୋଚର ନୁହେଁ ।

ତା'ହେଲେ ଆଉ ଡେରି କାହିଁକି... କେତେ ଆଉ ପରୀକ୍ଷା କରିବ ଏଇ 'ସରଦେଈ'କୁ ? ମୋ ପରୀକ୍ଷାର କ'ଣ ଅନ୍ତ ନାହିଁ ? କେତେ ତ ଠିଆ କରେଇଛ 'ଜୀବନ-କାଠଗଡ଼ା'ରେ... କ୍ଳାନ୍ତ ହେଲିଣି ମୁଁ ଜବାବ ଦେଇଦେଇ ।

ଏଣିକି ମୋ' ପଛପଟ ଆକାଶଟା ଗେରୁଆ ପିନ୍ଧିଲାଣି । ଆଉ ଟିକକରେ ମାଡ଼ିଆସିବ କାଳିଅନ୍ଧାର ଏଇ 'ଚଟିଘର' ଭିତରକୁ । ସବୁ ଠପ୍ ହେଇଯିବ । ଶୂନ୍ୟ । କେହି ନଥିବେ । କଳାକଳା ଲମ୍ବା ଛାଇ ନାଚୁଥିବ ଅଶରୀରୀ ସାଜି ।

ଏଥର ଆସ ଠାକୁରେ.... ମୁଠାଏ ଦୟଣାର ବାସ୍ନା ନେଇ... ତା'ରି ସୁଗନ୍ଧରେ ଧୋଇ ହେଇଯାଉ ମୋ' ଜୀବନର ସକଳ ଦୁଃଖ, ଅବସାଦ, ଯନ୍ତ୍ରଣା, ପାପତାପ । ମୁଁ ମୁକ୍ତ ହେଇଯାଏ... ଏତିକି ତ ଚାହିଁଛି ନିଜ ପାଇଁ ଏକାନ୍ତ ଭାବେ ।



# ଈର୍ଷାରତ୍ନ ଏବଂ ଭାବମୟୀ ବୈଦେହୀ

ଲୋକେ କହୁଥିଲେ, ବଶିଷ୍ଠ ପାଗଳ ହୋଇଗଲା । ହେଲେ ସେ ଉନ୍ମାଦଗ୍ରସ୍ତ ହୋଇ ଯାଇଥିଲା । ଆଉ ନିଜେ ବଶିଷ୍ଠ ହିଁ ତା'ର ଏ ପ୍ରକାର ମାନସିକ ଅସ୍ୱାଚ୍ଛନ୍ଦ୍ୟକୁ ଆବିଷ୍କାର କରିପାରିଥିଲା କିଛିଦିନ ପରେ ।

ସେ ଜାଣିପାରୁଥିଲା ଯେ, ତା'ର କିଛି ଗୋଟାଏ ଘଟୁଛି ବୋଧେ । ଥରେଥରେ କେମିତି ଗୋଟାଏ ଭୟଙ୍କର ପ୍ରତିକ୍ରିୟା ସୃଷ୍ଟି ହେଉଛି ତା' ଭିତରେ- ସ୍ଥିର ହୋଇ ଭାବିଲେ ଜାଣିପାରୁଛି । ନହେଲେ ସାମାନ୍ୟତମ ତ୍ରୁଟିବିଚ୍ୟୁତିକୁ ସେ ସହିପାରୁନି କାହିଁକି ! ସେଇ ସମୟମାନଙ୍କରେ ତା' ମୁଣ୍ଡର ଶିରାପ୍ରଶିରାମାନେ ଭଟ୍‌ଭାଟ୍ ହୋଇ ଛିଡ଼ିଯାଉଛନ୍ତି ସତେ କି ! ରକ୍ତ ତାତି ଉଠୁଛି । ହାତ ମୁଠାମୁଠା ହୋଇଯାଉଛି । ଅସହିଷ୍ଣୁପଣ ଥରହର କରିପକଉଛି ତାକୁ । ଅସ୍ଥିର ଲାଗୁଛି, ଅଥୟ ହେଇପଡୁଛି, କ'ଣ କରିବ ସେହି ମୁହୂର୍ତ୍ତରେ ଠିକ୍ କରିପାରୁନି । କେମିତିକା ଅଜବ ମୁହୂର୍ତ୍ତ ସେସବୁ ! ବୁଝେଇହେବନି ।

ବିଶେଷକରି, ଏଇଯୋଡ଼ ଚିତ୍ରା ନୂଆବୋଉ ଆଉ ଶ୍ରୀମନ୍ତ ଭାଇ, ସେ ଦୁହିଁଙ୍କୁ ସାମନାରେ ଦେଖିଲେ ହିଁ ସେ ଯେମିତି ଅନୁଭବ କରୁଛି, ତା' ଭିତରେ ଲାଭାର ଉଦ୍ଗୀରଣ ଘଟୁଛି । ମୁଣ୍ଡଟାକୁ କିଏ ଯେମିତି ଛେଚିକୁଟି ଚୂନା କରିପକାଉଛି ହାତୁଡ଼ିରେ । ଅସହ୍ୟ ଯନ୍ତ୍ରଣା ।

ହେବନି ବି କେମିତି... ଖୁବ୍ ବେଶି ଗୋଟାଏ ଦେଖେଇ ହେଉଛନ୍ତି ଦୁହେଁ । କ'ଣ ନା, ଆଦର୍ଶ ପତିପତ୍ନୀ ! ପାଣି ଗଳୁନି ଦିହିଁଙ୍କ ଭିତରେ । କୁଆଡ଼େ ଏଇଟା ପ୍ରେମ ! କିଏ ଯେମିତି ଆଗରୁ କେବେ ପ୍ରେମ କରି ନଥିଲା । ଏଇମାନେ ହିଁ ପ୍ରଥମେ କରୁଛନ୍ତି । ସମସ୍ତେ ଦେଖ, କଇଁଛ କାଢ଼ିଛି ବେକ । ବାଃ ବାଃ କର, ଧୁତ୍ ଯେତେସବୁ ବାଜେ କଥା । ଭାବିଲେ ହିଁ ମୁଣ୍ଡ ଟଣକି ଉଠୁଛି । ତଣ୍ଟିରୁ ଛାତି ଆଡ଼ିକି ଶୁଖିଶୁଖି ଯାଉଛି । ବେଳେବେଳେ ଜଳୁଛି ନିଆଁ ଜଳିଲା ଭଳି ।

ଆଉ ଆମ ପୂଜ୍ୟପାଦ ବାପା ଓ ବୋଉ । ଛାଡ଼ ତାଙ୍କ କଥା । ମୁଣ୍ଡରେ ବସେଇଛନ୍ତି ଦୁହିଁଙ୍କୁ- ବୋହୂ ମୋର ଭାରି ଭଲ । କୋଟିକରେ ଗୋଟିଏ । ବାଛିବାକୁ ନାହିଁ ରୂପଗୁଣରେ । ଦିନରାତି ଗାଉଦେଉଛନ୍ତି ଭାଗବତ ଭଳି । ଦେଖେଇବାପଣ । ନହେଲେ ଭୟ ହୋଇପାରେ..... କାଳେ ଶାଶୂଶ୍ୱଶୁର ପଣ ଖସିପଡ଼ିବ । ତାକୁ ସୁରକ୍ଷିତ ରଖିବାର କୌଶଳ ବି ହୋଇପାରେ । ତା' ନହେଲେ ଆଉରି ଗୋଟାକୁ ତ ଜନ୍ମ ଦେଇଛନ୍ତି । କାହିଁ ମନେପଡୁନି ତ ତା' କଥା । କେମିତି କଟୁଛି ତା' ଦିନରାତି । କ'ଣ ଚାହୁଁଛି ସେ ! ନାଇଁ, ସଭିଙ୍କ ନଜର କେବଳ ସେଇ ଦୁହିଁଙ୍କ ଆଡ଼େ, ଚିତ୍ରା ଶ୍ରୀମନ୍ତ- ସରଗଶଶୀ । କ'ଣ ଖାଇବେ କ'ଣ ପିନ୍ଧିବେ, କିମିତି ସୁଖରେ ରହିବେ । ଧେତ୍, ଯେମିତି ସାତପୁରୁଷ ଉଦ୍ଧାର କରି ସ୍ୱର୍ଗକୁ ନେଇଯିବେ ।

ଏମାନେ ପୁଣି ମୋ ବାପାବୋଉ । ଈଶ୍ୱରଙ୍କଠୁ ବଡ଼ । ଅବଶ୍ୟ ଶ୍ରୀମନ୍ତଭାଇର ମତ, ସେ କୁହେ । ଈଶ୍ୱରଙ୍କର କ'ଣ ଏମିତି ପକ୍ଷପାତ ବିଚାର ଅଛି ? କ'ଣ, ନା, ବଡ଼ପୁଅ । ଛେନା ଗୁଡ଼ !

ଅଥୟଭାବେ ପଦଚାରଣ କରୁକରୁ ବଶିଷ୍ଠ ଭାବେ... ଏମିତି ଅନେକ ଅବାନ୍ତର, ଅପ୍ରାସଙ୍ଗିକ, ଅତୁଆତତୁଆ କଥା । ଭାବୁଭାବୁ ତା' ବ୍ରହ୍ମ ଜଳେ । ଆଖିବାଟେ ନିଆଁ ଛିଟିକି ଆସେ ଗୁଣ୍ଡଗୁଣ୍ଡ ହୋଇ । ଆଉ ସେଇ ନିଆଁଝୁଲ ଉଡ଼ିଆସି ଚିତ୍ରାଙ୍ଗଦାର ନୂଆ ହଳଦିଆପାଟରେ ଫୁଲଫୁଟା ପଣତକୁ ପୋଡ଼ିପକାଏ- ସୁଖନିଦ ଭାଙ୍ଗିଦିଏ ଶ୍ରୀମନ୍ତର ।

ହେଲେ, ବଶିଷ୍ଠ ବସିବସି ଦାନ୍ତ ରଗଡ଼େ । ଦେଖୁନ, କାଳିଆ କୁସୁକୁଟା ଏଇ ଧେଡ଼ଙ୍ଗ ଶ୍ରୀମନ୍ତା'ଇକୁ କେମିତି ଏବେ ଗୋଲମୋଟଲ ହେଇଗଲାଣି ! ସୁଖଲଡୁ ଖାଉଛି ତ । ଗୋଲେଇବନି କାହିଁକି ? ଆଗରୁ ସିନା ଆସୁଣୁଯାଉଣୁ ଶିଷ୍ଟଶିଷ୍ଟ ବୋଲି ପାଣି ଗଳୁନଥିଲା । ଏବେ କାହିଁକି ଅନେଇବ ଆଉ ? ସୁନ୍ଦରମୁହାଁ ଚିତ୍ରାଙ୍ଗଦା ତ ଗଦ ଶୁଙ୍ଘେଇଛି । କିଛି ଦିଶିବନି କି ଦିଶୁନି ଆଉ ଆଖିକି ।

ହଠାତ୍ ଚିତ୍ରାଙ୍ଗଦା ନାଁଟା ମନେ ପଡୁପଡୁ ହିଁ ତା' ଆଖି ବିସ୍ଫାରିତ ହୋଇ ନାକପୁଡ଼ା ଫୁଲିଉଠିଲା ଘୃଣାରେ । ତାଳୁରୁ ତଳିପା ଜଳି ଉଠିଲା । ଚିତ୍ରା ନା ଚୁଲି ! ଏଇଘରେ ସେ ପାଦ ଦେଲା ଦିନୁ ତା' ସ୍ନେହ ଓ ଭଲପାଇବାରେ ଭାଗ ବସେଇଛି । ନହେଲେ ସେ କାହିଁକି ଏମିତି ଅଲୋଡ଼ା ଅଖୋଜା ହୁଅନ୍ତା ! କ'ଣ ନା ସୁନ୍ଦରୀ ! ଯୋଉ ତ ରୂପ । ପୁଳେ ବୋଲି ମାଉଁସ ନଥିଲା ଦେହରେ । ଭଲକରି ମୁଠେ ଖାଇବାକୁ ପାଉନଥିଲା । କିରାଣି ବାପା, ପାଞ୍ଚଟା ଭଉଣୀ । ଖାଲି ପାନପତର ଭଳି ଧାରଧୁର ମୁହଁ, ବଡ଼ବଡ଼ ଉଜ୍ଜ୍ୱଳ ଆଖି ଟଣାଟଣା । ସଫାରଙ୍ଗ, ଜହ୍ନରାତି ଭଳି । ଡେଙ୍ଗାଁ ଶ୍ରୀମନ୍ତ ଭାଇ ବାହାହବ ବୋଲି । ସେ ନିଜେ ସୁପାରିଶ କରିଥିଲା ବାପାବୋଉଙ୍କୁ । ନ ହେଲେ ବାହାଘର ହୋଇପାରିନଥାନ୍ତା । କୋଉଠି ବୋଲି କୋଉଠି, କୋଉ ନଅଙ୍କିଆ ଘରେ ବାସନ ମାଜୁମାଜୁ ଲୁହ ପୋଛୁଥା'ନ୍ତା ହାତ ପାପୁଲିରେ । ଦୁଃଖ

ସରିନଥାଆନ୍ତା । ରାଗ ତମତମ ହୋଇ ବଶିଷ୍ଠ ଦାନ୍ତ ରକେଟେ । ଏବେ ସୁନାଥାଳିରେ ଭାତ ଖାଉଛି ତ, ମନେପଡୁନି ଆଉ ବଶିଷ୍ଠ । ଏଇଲାଗେ ତ ଜହ୍ନଫୁଲିଆ ଜହ୍ନରାତି । କ'ଣ ନା ବାହାଘର ପାଣି ଦେହରେ ପଡ଼ିଲେ ଏମିତି ଚିକ୍କଣ ଦିଶେ ମଣିଷ । ହୁଃ, ଫୁଲେଇ ଚମ୍ପା । ଅଲାଜୁକ । ଦିନରାତି ଅଣ୍ଟୁନି, ସକାଳୁ ସଞ୍ଜ ଖାଲି ମୁହଁଦେଖା ଚାଲିଛି ଦର୍ପଣରେ ।

ଭାବୁଭାବୁ ଉତ୍ତେଜିତ ହୋଇପଡ଼େ ବଶିଷ୍ଠ ଏବଂ ଉନ୍ମାଦଙ୍କ ଭଳି ବ୍ୟବହାର କରେ । ନିଜକୁ ନିଜେ ଛିଣ୍ଡେଇ ରାମ୍ପୁଡ଼ି ହୁଏ । ମୁଣ୍ଡପିଟେ କାନ୍ଥରେ । କାନ୍ଦେ ବିକଳ ହୋଇ । ଭୋକରେ ରୁହେ । ପାଣିଟୋପେ ବି ଛୁଏଁନା । ଖୋଲା ଆକାଶ ତଳେ ବିନିଦ୍ର ରଜନୀ କାଟେ ନିଜକୁ କଷ୍ଟଦେଲା ଭଳି । ପାଖଆଖ ସାଇପଡ଼ିଶାଙ୍କ ସୁଖସଂସାର ଦେଖି ଉତ୍କ୍ଷିପ୍ତ ହୁଏ । ଚିତ୍କାର କରେ, 'ସମସ୍ତେ ସ୍ୱାର୍ଥପର, ନିଜ ସୁଖକଥା ହିଁ ଭାବୁଛନ୍ତି । ଅଥଚ ମୁଁ... ମୁଁ... କାହିଁକି ବଞ୍ଚିତ ହେବି ଅନ୍ୟମାନଙ୍କ ପାଇଁ.... ?' କାନ୍ଦେ ପୁଣି, ପାଗଳଙ୍କ ଭଳି ।

ସହିପାରେନା ଚିତ୍ରାଙ୍ଗଦା । ଧାଇଁ ଆସେ ନୂଆବୋହୂର ସମସ୍ତ କଟକଣା ଭାଙ୍ଗି । ତାକୁ ଆଶ୍ଚର୍ଯ୍ୟ ଲାଗେ, କାହିଁକି ଏମିତି ହେଉଛି ବଶିଷ୍ଠ, କ'ଣ ତା'ର ଅସୁବିଧା ? ଦୟା ହୁଏ । ବୁଝାଏ ଅନ୍ତରଙ୍ଗ ବନ୍ଧୁଟିଏ ଭଳି । ମୁଣ୍ଡ ଆଉଁଷି ଦିଏ ସ୍ନେହଶୀଳା ଭଉଣୀଟିଏ ହେଇ । ପଚାରେ- କ'ଣ ହେଉଛି ତମର ବଶିଷ୍ଠ, ମୋତେ କହିବନି ? ହାଲୁକା ହୋଇଯିବ ମନ ମୋ ଆଗରେ ଖୋଲି କହିଲେ । ପରୀକ୍ଷା କରି ଦେଖ ଥରେ । ଉଦ୍‌ବିଗ୍ନତାକୁ କାଟିବାର ଉପାୟ ବତାଏ- ଦେଖିଲ ଏଇ ଆକାଶକୁ, କେତେ ବିରାଟ, କେତେ ନୀଳ, କେତେ ଉଦାର ଆଉ ଶାନ୍ତ ମଧ ! ଆଖିବୁଜି ନିଜ ଭିତରେ ଅନୁଭବ କଲ ଏଇ ବିଶାଳତାକୁ, ଆମେ କେତେ ଛୋଟ ତା' ଆଗରେ ? ସ୍ଥିରକର ମନକୁ.... ମୁହଁ ପୋଛିଦିଏ ନିଜ ପଣତରେ ଭାଉଜ ଚିତ୍ରାଙ୍ଗଦା ।

କ୍ରୋଧରେ ନାଲି ପଡ଼ିଯାଇଥିବା ବଶିଷ୍ଠ କାନରେ ନୂଆବୋଉ ଚିତ୍ରାଙ୍ଗଦାର କୌଣସି କଥା ପଶେନା । ତଥାପି ଚାହେଁ ଆକାଶକୁ । ଧୂସର ଧୂଆଁଳିଆ ଲାଗେ ଆକାଶଟା । ଅସ୍ପଷ୍ଟ, ଠିକ୍ ଏଇ ଚିତ୍ରାନୂଆ'ଉ ଶ୍ରୀମନ୍ତା'ଇ ଭଳି । ରହସ୍ୟମୟ । ଯେମିତି କିଏ ତାକୁ ତାଚ୍ଛଲ୍ୟ କରୁଛି । ହସୁଛି ଆଙ୍ଗୁଠି ଦେଖେଇ । କିଏ ? ଶ୍ରୀମନ୍ତଭାଇ, ଚିତ୍ରାନୂଆଁ'ଉ ନା ଆଉ କିଏ ?

ଅସହ୍ୟ ଲାଗେ । ପ୍ରତିକ୍ରିୟାଶୀଳ ହେଇପଡ଼େ । ଏବଂ ଯେତେସବୁ ରାଗ ଝଡ଼େଇ ଦିଏ ଚିତ୍ରାନୂଆ'ଉ ଉପରେ । ଆଜେବାଜେ ଅଭିଯୋଗ ଆଣେ ମିଛରେ । ଦୋଷ ଖୋଜେ, ଭିତ୍ତିହୀନ, ଅପ୍ରାସଙ୍ଗିକ ଶସ୍ତା ଅଭିଯୋଗ ।

ଚିତ୍ରାଙ୍ଗଦା ଆଖିରେ ଲୁହ ଭରିଆସେ ଅଭିମାନରେ ।

ପରିବାର ଲୋକେ ମୁହଁ ମୋଡ଼ନ୍ତି । ଶାଶୂନଣନ୍ଦ ଆଖିରେ ଯାଏନି ଏସବୁ, ନାକ ଟେକନ୍ତି । ପଦେଅଧେ ବନେଇଚୂନେଇ ଟିପ୍ପଣୀ ବି କରନ୍ତି- ଦେଖ, ଦିଅର ଭାଉଜଙ୍କ

ସୁଆଙ୍କୁ । ଉପରଠାଉରିଆ ଭାବେ କଥାର କିମ୍ଭୂତ ତର୍ଜମା କରନ୍ତି, ଫେରାଦ କରନ୍ତି । ଶ୍ରୀମନ୍ତ ଆଗରେ, 'ନିଜ ସ୍ତ୍ରୀକୁ ଆକଟ କରିପାରୁନୁ ଟିକିଏ, ଗଢ଼ାବୟସର ଦିଅର, ଏତେ ମିଳାମିଶା, ହେଲେମେଳେ କ'ଣ ସୁନ୍ଦର ଦିଶୁଛି ? ସେ ଆମ ପୁଅ ନୁହେଁ କି ଭାଇ ନୁହେଁ... ସବୁର ସୀମା ଅଛି... ଆମଠୁ କ'ଣ ବେଶି ନିଜର ? ଶ୍ରୀମନ୍ତ ବୁଝିଲେ ବି କିଛି କହିପାରେନା- ବୁଝେଇ ପାରେନା କାହାକୁ । ସଙ୍କଟ ଉପୁଜେ । ଯଦିଓ ସେ ଜାଣେ ବଶିଷ୍ଟ ମାନସିକ ସ୍ତରରେ ଅସୁସ୍ଥ । ଚିତ୍ରାକୁ ବି କହିପାରେନା ଯେ, ତା'ର ଏପ୍ରକାର ପ୍ରବଣତା ଘର ଭିତରେ ଭୁଲବୁଝାମଣା ଝାଞ୍ଜି ପବନ ସୃଷ୍ଟି କରୁଛି । ପ୍ରଶ୍ନ ଉଠଉଛି ତା' ବୋହୂପଣର ସ୍ୱଚ୍ଛତା ଉପରେ । ହେଲେ କହିପାରେନା ଶ୍ରୀମନ୍ତ କିଛି । କାଳେ ଚିତ୍ରା ଅନ୍ୟଥା ଭାବିବ, କାରଣ ଚିତ୍ରାଟା ଖୁବ୍ ସିଧାସଳଖ ସ୍ୱଭାବର ଝିଅ ।

ଚିତ୍ରାଙ୍ଗଦାର କାନରେ ପଡ଼େ ଏସବୁ କିଛିକିଛି । ନିହାତି ଛୋଟ କଥା ବଡ଼ ହୋଇ ଠିଆହୁଏ । ପିମ୍ପୁଡ଼ିଟା ହାତୀ ଭଳି ଦିଶେ । ସିଧାସଳଖ ହୋଇବି ସେ ନିଜକୁ ନିର୍ଦ୍ଦୋଷ ପ୍ରମାଣିତ କରିପାରେନା । ନିଆଁ ଉପରେ ଝାମୁ ଚାଲିପାରେନା । ଗଞ୍ଜଣା ନିଆଁରେ ତା' ଅନଭ୍ୟସ୍ତ ପାଦ ପୋଡ଼ିଯାଏ । ଅସହାୟ ଲାଗେ । ନୂଆ ଘରକରଣାର ତାତି ମନକୁ ଉତୁରେ ।

ତଥାପି ସହିଯାଏ । ଭାବେ, ଇଏ ତ ଘରକଥା, ଦାଣ୍ଡ ହାଟରେ ଚର୍ଚ୍ଚା ହେଲେ ଅସୁନ୍ଦର । ସବୁଦିନ ସବୁକଥା ରହେନା । ସମୟ ଆସିଲେ, ବଳେ ବୁଝିବେନି କି ସମସ୍ତେ । ସେ ତ ବଶିଷ୍ଟର ଅମଙ୍ଗଳ ଚାହୁଁନି । ନିଜକୁ ବୁଝାଏ ବନ୍ଧୁବାଟରେ । ବୁଝାଏ ଶ୍ରୀମନ୍ତଙ୍କୁ । ଭାବେ, ଯେ ପର୍ଯ୍ୟନ୍ତ ଶ୍ରୀମନ୍ତ ତାକୁ ଠିକ୍ ବୁଝିଛନ୍ତି, ଅନ୍ୟମାନଙ୍କ କଥାକୁ ସେ ଗୁରୁତ୍ୱ ଦେବନି ।

ହେଲେ ପରିସ୍ଥିତି ଭିନ୍ନ ମୋଡ଼ ନିଏ । ସହିବାର, ସଜାଡ଼ିବାର, ଠିଆରିବାର ପ୍ରୟାସ କରି ଚିତ୍ରାଙ୍ଗଦା ଅପମାନିତ ହୁଏ ବାରମ୍ବାର । ଲାଞ୍ଛିତ ହୁଏ । ଘଟଣାର ସୂତା ଅଡୁଆ ଧରେ । ଶ୍ରୀମନ୍ତଙ୍କ ଧୈର୍ଯ୍ୟଚ୍ୟୁତି ଘଟେ । ବାପା ବୋଉ, ଭାଇଭଉଣୀଙ୍କ କଥାକୁ କାଟିବା ଭଳି ଦୃଢ଼ ମାନସିକତାର ଅଭାବ ଦେଖାଦିଏ ତାଙ୍କ ପାଖରେ । ସମୟ ହାତରେ ଘଟଣାକୁ ଛାଡ଼ିଦେଇ ସେ ନିରସ୍ତ ହୋଇ ବସନ୍ତି । କଥାର ଉସ୍ତ, ମୂଳ ଛାଡ଼ି ଶାଖାପ୍ରଶାଖା ଦେଇ କାୟା ବିସ୍ତାର କରେ । ହତାଶା, ବିରକ୍ତି ଏବଂ ନିତିଦିନର ଝଣଝାଣ, ଟୁଂଟାଂ ଭିତରେ ଶ୍ରୀମନ୍ତ ପ୍ରତିକ୍ରିୟାଶୀଳ ହେଇଉଠନ୍ତି ଚିତ୍ରାଙ୍ଗଦା ଉପରେ- ତମର ଭୁଲ ନଥାଇ ସମସ୍ତେ ତମକୁ ଆଙ୍ଗୁଠି ଦେଖାଉଛନ୍ତି କି ?

ଚିତ୍ରାଙ୍ଗଦା ପାଖରେ କିଛି ପ୍ରମାଣ ନଥାଏ ନିଜ ତରଫଦାରୀ କରିବା ପାଇଁ । ତଥାପି ସେ କଥାର ମୂଳ ଖୋଜେ । ଶାଖାପ୍ରଶାଖାର ଓହଳ ଭିତରେ ହଜିଯାଇଥିବା ମୂଳ ଖୋଜି ସେ ହତାଶ ହିଁ ହୁଏ । ଶ୍ରୀମନ୍ତଙ୍କ ଆଖିରେ ସନ୍ଦେହର କୁହୁଡ଼ି ମାଡ଼ିଆସେ । ଘଟଣାର ମୂଳ ସେ

ଖୋଜିବାକୁ ଚାହାନ୍ତି ନାହିଁ । ଚିତ୍ରାଙ୍ଗଦାର ଦୋଷ ହିଁ ଦିଶେ । ଏଣେ ବଶିଷ୍ଠର ବ୍ୟବହାର ମଧ ଅସହ୍ୟ ହୁଏ ଦିନକୁ ଦିନ ।

ଚିତ୍ରାଙ୍ଗଦା ଭାବେ, ଅନ୍ଧାରରେ ବସିବସି କଳେଇକୁଟି ଭାବେ । ସବୁକିଛି ଘଟଣା ତାକୁ ବିଚିତ୍ର ଲାଗେ । ଆଶ୍ଚର୍ଯ୍ୟ ହୁଏ ସେ । ଘଟଣା କୋଉଠି, ପ୍ରତିକ୍ରିୟା ଆଉ କୋଉଠି ସୃଷ୍ଟି ହେଉଛି । ସାହସ କରି ତଥାପି ଚେଷ୍ଟା କରେ ବଶିଷ୍ଠର ଅନ୍ତର୍ମନକୁ ପଢ଼ିବାକୁ । କାହିଁକି ତା'ର ଏ ପ୍ରକାର ସଂଶୟାଛନ୍ନ ମନୋଭାବ ! ବେଳେବେଳେ ରହସ୍ୟମୟ ମନେହୁଏ । କେତେବେଳେ ଖୁବ୍ ଶାନ୍ତଶିଷ୍ଟ ମହମ ଭଳି ତରଳ । ପୁଣି କେବେ ଭୟଙ୍କର, ଅଶାନ୍ତ ବର୍ବର ପଶୁଭଳି ଅସ୍ୱାଭାବିକ । କିଛି ଅନୁମାନ ଲଗେଇ ହୁଏନା । ବାରମ୍ବାର ଏ ପ୍ରକାର ଅଦ୍ଭୁତ ଆଚରଣ ଭିତରେ ମୂଳଘଟଣା ଲୁଚିଯାଇ ଖୋଳପା ବସେ, ଆଉ କଥା ଯାଇ ଅଟକେ ଖୁବ୍ ସାଧାରଣ ଛୋଟ ଘଟଣାମାନଙ୍କ ପାଖରେ । ନୂଆବୋହୂ ଚିତ୍ରାଙ୍ଗଦାର ପ୍ରତିଟି କଥାରେ ଦୋଷ ଖୋଜାହୁଏ । ଏ ଅଧ୍ୟାୟର ଶେଷ ହୁଏନା, ଚିତ୍ରାଙ୍ଗଦା ହନ୍ତସନ୍ତ ହୁଏ । ଭାବନାର କୂଳକିନାରା ଖୋଜିପାଏନା ।

କିମିତି ସମ୍ଭବ ! ଯୋଉମାନଙ୍କୁ ବଶିଷ୍ଠ ଏତେ ଭଲପାଏ, ବିଶେଷ କରି ବାପା, ବୋଉ, ଭାଇ ଏମିତିକି ଚିତ୍ରାଙ୍ଗଦାକୁ, (ସତ କହିଲେ, ବୋହୂ ବାଛି ଆଣିଲାବେଳେ ବଶିଷ୍ଠ ହିଁ ତା'ର ପ୍ରଶଂସାରେ ଶତମୁଖ ହୋଇପଡ଼ିଥିଲା) ଅଥଚ ସେଇମାନଙ୍କୁ ହିଁ ସେ ଶତ୍ରୁ ଭଳି ଆଚରଣ କରେ । ଥରେଥରେ ଜନ୍ମକଲା ବୋଉ ବି ନିଜକୁ ଧିକାରନ୍ତି ବିରକ୍ତି ହୋଇ- କେମିତି ମୁଁ ଯାକୁ ପେଟରେ ଧରିଥିଲିରେ... ! ଆଉ ଶ୍ରୀମନ୍ତ କୁହନ୍ତି- ତମେମାନେ ଜାଣିପାରୁନ ସିନା ବଶିଷ୍ଠ ମାନସିକ ସ୍ତରରେ ସୁସ୍ଥ ନୁହେଁ । ଆଉ ନିଜେ ଚିତ୍ରାଙ୍ଗଦା କୁହେ- ବଶିଷ୍ଠ ଭୟଙ୍କର ଭାବେ ଅଭିମାନୀ । ନିଜକୁ ସବୁବେଳେ ନିଃସଙ୍ଗ ମନେ କରୁଛି । ଆମେ ଯଦି ତା'ପାଇଁ ସାଥୀଟିଏ ଖୋଜିଦିଅନ୍ତେ... । ବିଗଳିତ ଦରଦ ନେଇ ସେ ନିଜ ବିଚାରକୁ ଥୁଏ ଶ୍ରୀମନ୍ତଙ୍କ ଆଗେ ସନ୍ତର୍ପଣରେ । ତୁମେ ଦେଖନ୍ତ କେତେ ସହଜ ହୋଇଯା'ନ୍ତା ବଶିଷ୍ଠ- ସାଥୀଟିଏ ମିଳନ୍ତା ତାକୁ ଦରଦ ବାଣ୍ଟିବାକୁ ।

ହେଲେ ଚିତ୍ରାଗଂଦାର ଆହାପଣ ବେଶିଦିନ ସ୍ଥିର ରହିଲାନି । ଅତିଷ୍ଠ କଲା ବଶିଷ୍ଠର ଉନ୍ମତ୍ତତା । ଦମନପ୍ରବଣତା ବଢ଼ିବାକୁ ଲାଗିଲା । ଅନ୍ୟକୁ ଭୟାର୍ତ୍ତ କରିବାରେ ତାକୁ ବେଶୀ ଆନନ୍ଦ ଲାଗିଲା । ଆଉ ସେଥିପାଇଁ ନୂଆବୋଉ ଚିତ୍ରାଙ୍ଗଦା ହିଁ ହିଂସ୍ରଭାବର ଶିକାର ହେଲା । ପରିବାରର ଅନ୍ୟମାନେ ତା'ର ମଜା ଉଠେଇବାକୁ ଲାଗିଲେ । ଥରେ ଅଧେ ନୁହେଁ, ବାରମ୍ବାର ଏଇ ଦୃଶ୍ୟ ଅଭିନୀତ ହେବାକୁ ଲାଗିଲା ଘର ଭିତରେ ।

ପରଝିଅଟିଏ ଶାଶୁଘରକୁ ଆସି ନୂଆ ମଣିଷଙ୍କ ମନରେ ନିଜର ଦୃଢ଼ ଆସନ ଏତେ ଶୀଘ୍ର ଓ ସହଜରେ ଜମେଇ ପାରେନା । ତା' ପାଇଁ ତାକୁ ଅନେକ ପ୍ରକାର ପରୀକ୍ଷାର

ସମ୍ମୁଖୀନ ହେବାକୁ ପଡ଼େ । ସେସବୁ ପରୀକ୍ଷାର ମାପ ନାହିଁ କି ତା'ର କିଛି ମୂଲ୍ୟ ନାହିଁ । ଅଥଚ ସେଇ ତିଳସବୁ ତାଳ ହୋଇ ବିଷମ ଆକାର ଧାରଣ କରେ– ଗଛ ମଲେ ବୋହୂର ଦୋଷ, କାହା ଗୋଡ଼ରେ କଣ୍ଟା ଫୁଟିଲେ ବୋହୂର ଦୋଷ, ଅଦିନିଆ ମେଘ ବର୍ଷିଲେ ବି ବୋହୂର ଦୋଷ ।

ଅଥଚ ଗଛରେ ଫୁଲଫଳ ଲଦିହେଲେ, କି କୋଠିଘର ପୂରିଉଠିଲେ, ସିନ୍ଦୂକ ଉପରେ ସିନ୍ଦୂକ ଥୁଆହେଲେ, ଘରର ଉନ୍ନତିରୁ ଉନ୍ନତି ହେଲେ କେହି ବୋହୂର ଶୁଭଦୃଷ୍ଟିର ଫଳ ବୋଲି କୁହନ୍ତିନି । ବିଚିତ୍ର ଆମର ମନସ୍ତତ୍ତ୍ୱ, ତା'ଠୁ ଆହୁରି ବିଚିତ୍ର ଆମର ସାମାଜିକ ବ୍ୟବସ୍ଥା ! ଚିତ୍ରାଙ୍ଗଦା ଅବା ଏଥିରୁ କେମିତି ବାଦ ପଡ଼ନ୍ତା !

ନିଆଁ ଲାଗିଲା । ଘରେ.... ବାହାରେ.... ମନ ଅଭ୍ୟନ୍ତରରେ । ସେ ନିଆଁର ତାତି ସବୁଠି ଲାଗିଲା ଅଳ୍ପେ ବହୁତେ । ହେଲେ ଚିତ୍ରାଙ୍ଗଦାର ନୂଆବୋହୂ ମନକୁ ସିଝେଇ କଇଁଥା କରିପକେଇଲା ସବୁଠୁ ବେଶୀ । ଶ୍ରୀମନ୍ତଙ୍କ ସହିତ ମତାନ୍ତର ଘଟିଲା । ସେ ଧୀରେ ଧୀରେ ଦୂରଛଡ଼ା ହେବାକୁ ଲାଗିଲେ । ହଁ-ନାହିଁ, ଭୁଲ-ଠିକ୍, ସତ-ମିଛ କୌଣସି କଥା ବା ଘଣଟାକୁ ପ୍ରତିଷ୍ଠା କଲାଭଳି କିଛି ସୁଯୋଗ ନଥିଲା ଚିତ୍ରାଙ୍ଗଦା ପାଇଁ । ଛନ୍ଦି ହୋଇଗଲା ଅବିଶ୍ୱାସର ଜାଲରେ ତା'ର ସରଳ ବୋହୂପଣ । ତା'ର ବିକଳ ଦେଖି ବଶିଷ ମୁହଁରେ ତୃପ୍ତିର ଝଲକ ଫୁଟିଉଠିବା, ଲକ୍ଷ୍ୟ କରିଥିଲା ଚିତ୍ରାଙ୍ଗଦା ।

ଏଇ ମାନସିକ ସ୍ଥିତିର ଘନଘଟା ଭିତରେ କେଜାଣି କେତେଦିନ କି ମାସ କି ବର୍ଷ ସେ ଗତିକରିଥିଲା, ମନେରଖିନି ଚିତ୍ରାଙ୍ଗଦା । ହେଲେ ଦିନେ ବିଚିତ୍ର ଘଟଣାଟିଏ ଘଟିଲା । ବିଚିତ୍ର ହିଁ, କହିବାକୁ ଗଲେ ଏକ ବିଚିତ୍ର ସଂଯୋଗ । ଯାହା ତା' ଜୀବନକୁ ଗୋଟିଏ ଭିନ୍ନ ମୋଡ଼ ଦେବାରେ ସାହାଯ୍ୟ କରିଥିଲା ।

ସେଇଟା ହେଲା ଇନ୍ଦ୍ରାଣୀ ସହିତ ତା'ର ସାକ୍ଷାତ୍ । ଇନ୍ଦ୍ରାଣୀ ତା'ର ପଢ଼ାସାଥୀ । ଦୁହେଁ ଏକା ଗାଁର । ଏକାଠି ସ୍କୁଲ ଓ କଲେଜରେ ପଢ଼ିଛନ୍ତି । ପଢ଼ାବେଳେ ଦୁହିଁଙ୍କ ଭିତରେ ପାଣି ଗଳୁନଥିଲା । ହେଲେ ତା' ବାହାଘରକୁ ସେ ଆସିପାରି ନଥିଲା । ନୂଆ ଚାକିରିରେ ଯୋଗଦେବା ପାଇଁ ଚାଲିଯାଇଥିଲା ବାରିପଦା । ଏବେ ବଦଳି ହୋଇ ଆସିଛି ଚିତ୍ରାଙ୍ଗଦାର ସହରକୁ ।

ଅନେକ ଦିନ ପରେ, ମନ୍ଦିରବେଢ଼ାରେ ଦୁହିଁଙ୍କ ଦେଖା । ଖୁସିରେ ଉଛୁଳି ଉଠିଥିଲା ଇନ୍ଦ୍ରାଣୀ । ଚିତ୍ରାଙ୍ଗଦା ବି ।

– ଏମିତି ଶୁଖିଲା ଦିଶୁଛୁ କାହିଁକି ଚିତ୍ରା ! ବାହାଘର ପରେ ତ ସମସ୍ତେ ଉତୁରି ପଡ଼ନ୍ତି ? ଆଉ ତୋ' ଶାଶୂ, ଶଶୁର, ଦିଅର ନଣନ୍ଦମାନେ କିମିତି... ତୋ' ଘରକରଣା କଥା... ଅନେକ ପ୍ରଶ୍ନ ପରକୁ ପର, ତର ସହୁନଥିଲା ଇନ୍ଦ୍ରାଣୀର ଉତ୍ସୁକତା ।

କିଛି ଲୁଚେଇ ପାରିନଥିଲା ଚିତ୍ରାଙ୍ଗଦା । କେବେବି ସେ ଲୁଚେଇପାରେନି କିଛି ଇନ୍ଦ୍ରାଣି ପାଖରେ । ବୋଉ କି ଭାଇମାନଙ୍କ ଆଗରେ ଯୋଉ ମନର ପୃଷ୍ଠାକୁ ସେ ଖୋଲିନଥିଲା, ତାକୁ ସେ ଇନ୍ଦ୍ରାଣୀ ଆଗରେ ଖୋଲିଦେଇଥିଲା, ମୁଁ ଆଉ ପାରୁନି ଇନ୍ଦ୍ରାଣୀ... ଅସହ୍ୟ ଲାଗୁଛି ନିତିଦିନର ଜୀବନ ମୋତେ... ।

ଚିତ୍ରାଙ୍ଗଦାର ଯନ୍ତ୍ରଣା ଇନ୍ଦ୍ରାଣୀକୁ ବିଚଳିତ କଲା । ବ୍ୟସ୍ତ ହୋଇପଡ଼ିଲା ସେ । ଆଉ କିଏ ବୁଝୁକି ନବୁଝୁ ଚିତ୍ରାକୁ ସିଏ ଗଭୀର ଭାବରେ ବୁଝିଛି । ଅସୀମ ତା'ର ସହନଶୀଳତା । ତାକୁ ଯଦି କାଟିଛି.... ମାପି ପାରୁଥିଲା ଇନ୍ଦ୍ରାଣୀ, ଚିତ୍ରାଙ୍ଗଦାର ଯନ୍ତ୍ରଣାକୁ । ତା'ର ସରଳପଣ ଧୋକା ଖାଇଛି । ହତାଶାର ଭଉଁରି ଭିତରେ ଅଣନିଃଶ୍ୱାସୀ ହେଇ ଯାଉଛି ତା' ବାନ୍ଧବୀ । ଏବେ ତା'ର ପ୍ରଥମ କର୍ତ୍ତବ୍ୟ ହେଲା ତାକୁ ଅବସାଦ ଭିତରୁ ମୁକୁଳେଇ ତା'ର ଆତ୍ମବିଶ୍ୱାସ ଫେରେଇ ଆଣିବା ।

ସେଥିପାଇଁ ତା'ର ପାଦତଳର ମାଟିକୁ ଦମ୍ଭ କରିବା ଆବଶ୍ୟକ । ସେଥିପାଇଁ ତାକୁ ସ୍ୱାବଲମ୍ବୀ ହେବାକୁ ହେବ । ହଠାତ୍ ଇନ୍ଦ୍ରାଣୀ ନୂଆ ପରାମର୍ଶଟିଏ ଚିତ୍ରାଙ୍ଗଦା ଆଗରେ ଥୋଇ କହିଲା– ତୁ ଚାକିରି କର ଚିତ୍ରା । ସ୍ୱାବଲମ୍ବୀ ହେବାକୁ ଚେଷ୍ଟାକର । ଦେଖିବୁ, କେତେ ଦମ୍ଭ ଲାଗିବ ତୋତେ ! ବିଶ୍ୱାସ ଆସିବ ନିଜ ଉପରେ । ନିଜ ପରିଚୟ ନିଜେ ତିଆରି କରିବୁ । ସମୟର ଏବଂ ପଢ଼ିଥିବା ପାଠର ବି ସଦୁପଯୋଗ ହେବ । ପଢ଼ାପଢ଼ିରେ ତୋର ଖୁବ୍ ଝୁଙ୍କ ଥିଲା ନା ?

ବଡ଼ ବଡ଼ ଆଖିରେ ବିସ୍ମୟ ଫୁଟେଇ ଚିତ୍ରାଙ୍ଗଦା ଚାହିଁଲା ଇନ୍ଦ୍ରାଣୀ ମୁହଁକୁ । କ'ଣ ତୁ କହୁଛୁ ଭାବ ।

–ମୁଁ ଠିକ୍ କଥା କହୁଛି ଚିତ୍ରା । କେତେଦିନ ଆଉ ତୁ ମାଟିକାମୁଡ଼ି ସୁନାବୋହୂ ହୋଇ ପଡ଼ିରହିଥିବୁ ? ମୁଁ ଜାଣେ ମହୁମାଛି ଭଳି ଶୁଣ୍ଢମାରି ତୁ ବିଦ୍ରୋହ କରିପାରିବୁନି । ନିଜକୁ କୌଣସି ପ୍ରକାରେ ନିର୍ଦ୍ଦୋଷ ସାବ୍ୟସ୍ତ ବି କରିପାରିବୁନି । ପରିସ୍ଥିତି ଏତେ ସହଜରେ ସୁଧୁରିବନି । ତାକୁ ଆହୁରି ଜଟିଳ ହେବାକୁ ନଦେଇ ଏବଂ ନିଜକୁ ପରିବେଶର ଚାପରୁ ମୁକୁଳେଇବାକୁ ହେଲେ, ତୋତେ ଘରଠୁ ଦୂରରେ ରହିବାକୁ ହେବ ଓ ନିଜ ଗୋଡ଼ରେ ଠିଆ ହେବାକୁ ହେବ । ମୁଁ ଜାଣୁଛି, ତୋତେ କଥାଟା ଅରୁଚିକର ଲାଗୁଥିବ । ତଥାପି... ।

ଚିତ୍ରାଙ୍ଗଦାର ଆଖିରେ ଅସମ୍ଭବର ଆର୍ତ୍ତଦୃଷ୍ଟି । ଇନ୍ଦ୍ରାଣୀ କିନ୍ତୁ ଥମି ନଥିଲା । ଚିତ୍ରାଙ୍ଗଦା ମନରେ ବିଶ୍ୱାସ ଆଣିବାକୁ ଯାଇ କହିଲା– ତୁ ପାରିବୁ । କିଛି ଅସମ୍ଭବ ନୁହେଁ । ଥରେ ପାଦଟେକି ଦେଖେନା.... ।

– ଶ୍ରୀମନ୍ତକୁ ମୁଁ କେମିତି ବୁଝେଇବି ?

– ଯେମିତି ବି ହେଉ । ତୋତେ ଏଇ ପଦକ୍ଷେପ ନେବାକୁ ହିଁ ହେବ । ଗୋଟିଏ

ମହତ ଲକ୍ଷ୍ୟକୁ ହାସଲ କରିବାକୁ ଯାଇ ଯଦି ଅନ୍ୟମାନଙ୍କର ଅସନ୍ତୋଷର ଶିକାର ହେଉ ତ କ୍ଷତି କ'ଣ, ତୋ' ଉଦ୍ଦେଶ୍ୟ ତ ମହତ ନା। ସମୟ ଆସିବ, ଦିନେ ସେଇମାନେ ବୁଝିପାରିବେନି ନିଜର ଭୁଲ୍।

ଅବଶ୍ୟ ଏଇଟା ମୋର ବ୍ୟକ୍ତିଗତ ମତ। ତୁ କ'ଣ ଭାବୁଛୁ ମୁଁ ଜାଣେନା। ମୋର ବିଶ୍ୱାସ, ଅନ୍ଧାର ଘୁଞ୍ଚିବ, ଆଲୁଅ ଫିଟିପଡ଼ିବ ଚାରିଆଡ଼େ।

ଚିତ୍ରାଙ୍ଗଦାର ବିଶ୍ୱାସ ହେଉନଥିଲା, ସେ କ'ଣ ସତରେ କିଛି କରିପାରିବ- ସବୁକଥାରେ ତ ମୋତେ ଭୁଲ ବୁଝିଲେ ସମସ୍ତେ... କ'ଣ ଭାବିବେ କେଜାଣି... କିଛି ନୂଆ ପଦକ୍ଷେପ ନେଲେ।

– ତୋ' ପ୍ରତି ଯେତେବେଳେ ସେମାନଙ୍କର ଅନୁକୂଳ ମନୋଭାବ ନାହିଁ, ସେମାନେ କ'ଣ ଭାବିବେ, ନ ଭାବିବେ, ତୋର ଯାଏଆସେ କେତେ ? ଦେଖ, ଚିନ୍ତାକର ଆଉଥରେ। କହିଲା ଇନ୍ଦ୍ରାଣୀ।

ଚିତ୍ରାଙ୍ଗଦା ଉପରେ ଅନେକ ପ୍ରଶ୍ନ ଥୋଇ, ନିଜେ ଇନ୍ଦ୍ରାଣୀ ହିଁ ଉତ୍ତର ଦେଇଥିଲା। ଦେଖ ଚିତା, ଏ କ୍ଷେତ୍ରରେ କେହି ତୋତେ ସାହାଯ୍ୟ କରିବେନି। ନିଜେ ହିଁ ତୁ ଯାହା କିଛି ପଦକ୍ଷେପ ନେବାକଥା ନେବୁ।

ଅନେକ ସମୟ ପର୍ଯ୍ୟନ୍ତ ଦୁଇ ବାନ୍ଧବୀ ମନ୍ଦିର ବେଢ଼ା ନାଗେଶ୍ୱର ଚଉତରା ମୂଳରେ ବସି ସୁଖଦୁଃଖ ବାଣ୍ଟିଥିଲେ ସେଦିନ।

ଇନ୍ଦ୍ରାଣୀ ପାଖରୁ ଫେରି ଚିତ୍ରାଙ୍ଗଦା ଚାକିରି ବିଷୟରେ ଭାବିଥିଲା ଓ ଚିନ୍ତା କରିଥିଲା ଅନେକ ଦିଗରୁ। ନିଜ ସଂସ୍କାର, ପରିବାରର ମର୍ଯ୍ୟାଦା ଏବଂ ନିଜ ଜୀବନର ଭଲମନ୍ଦକୁ ଆଗରେ ରଖି। କିଛିଦିନ ଗଡ଼ିଗଲା ସୁଯୋଗର ଅପେକ୍ଷାରେ। ଦିନେ ହଠାତ୍, ଏମିତି ଏକ ପରିସ୍ଥିତି ସୃଷ୍ଟି ହେଲା ଯେ ସେଇ ପାରିବାରିକ ଖେଳରେ ମୁହଁମାଡ଼ି ପଡ଼ିଗଲା ସେ। ଏବଂ ନିଷ୍ପତ୍ତି ନେଲା- ଏଥର ସେ ଘର ଛାଡ଼ିବ। ଯିଏ ଯାହା ଭାବନ୍ତୁ। ନିଜକୁ ମୁକୁଳେଇବ ଏଇ ଫିୟର କମ୍ପ୍ଲେକ୍ସ ଭିତରୁ। ବହୁତ ସହିଲାଣି।

ସେଇଦିନ ରାତିରେ, ସାହସ ସଞ୍ଚୟ କରି ଶ୍ରୀମନ୍ତଙ୍କ ଆଗରେ ସନ୍ତର୍ପଣରେ ଚାକିରି ବିଷୟ ଉପସ୍ଥାପନା କଲା ଚିତ୍ରାଙ୍ଗଦା। ଅନେକ ଯୁକ୍ତିତର୍କ, ବାକ୍‌ବିତଣ୍ଡା ପରେ, ହଁ ନାହିଁର ଦ୍ୱନ୍ଦ୍ୱଦୋଳନ ଭିତରେ ଶ୍ରୀମନ୍ତ କୁଣ୍ଠିତ ମନରେ ହିଁ ସମର୍ଥନ ଦେଲେ । ସମର୍ଥନ ପଛରେ ତାଙ୍କର କୌଣସି ସକାରତ୍ମକ ବିଚାର ନଥିଲା। ତଥାପି ଚିତ୍ରାଙ୍ଗଦା ପାଇଁ ସେତିକି ଯଥେଷ୍ଟ ଥିଲା ଘର ଛାଡ଼ିବାକୁ।

ତା'ପରେ ଇନ୍ଦ୍ରାଣୀ ସହିତ ସମ୍ପର୍କ ସ୍ଥାପନ କରି ଦରଖାସ୍ତ କରିଥିଲା ଦି'ତିନି ଜାଗାକୁ। ସୁଦୂର ସୁନ୍ଦରଗଡ଼ର ଏକ କନ୍ୟାଶ୍ରମରେ ଶିକ୍ଷୟିତ୍ରୀ ପଦ ଖାଲିଥିଲା। ଚାକିରି ଖଣ୍ଡେ ପାଇବା ସହଜ ହୋଇଗଲା। କହିବାକୁ ଗଲେ ଭାଗ୍ୟ ଅନୁକୂଳ ଥିଲା ନିଶ୍ଚୟ।

ଇନ୍ଦ୍ରାଣୀ ବ୍ୟତୀତ ଏଇ ଚାକିରି ଖବର ଆଉ କାହା ମନରେ ଖୁସି ଆଣି ଦେଇନଥିଲା । ଚିତ୍ରାଙ୍ଗଦା ଚାକିରିରେ ଯୋଗଦେବା ଦିନ ଇନ୍ଦ୍ରାଣୀ ହିଁ ତା'ର ସଫଳତା କାମନା କରି ଟେଲିଗ୍ରାମ୍‌ଟିଏ ପଠେଇଥିଲା । ଆଜି ଏତେବର୍ଷ ପରେ ପଛେଇ ଭାବିଲେ ତା'ର ମନେ ହେଉଛି, ଚାକିରି କରିବାର ନିଷ୍ପତ୍ତିଟା ତା' ଜୀବନର ଶ୍ରେଷ୍ଠ ନିଷ୍ପତ୍ତି ଥିଲା ।

ପିଲାଟିଦିନରୁ ତା' ବାପା ଚାଲିଯାଇଥିଲେ । ଭାଇ ଚାକିରି ଜାଗାରେ । ଏକୁଟିଆ ବୋଉ ଗାଁରେ ରହୁଥିଲା । ନେଇଆସିଲା ଚିତ୍ରାଙ୍ଗଦା ତା' ନିଜ ପାଖକୁ । ଭାଇଙ୍କର ବି ଆପତ୍ତି ନଥିଲା । ଘର ଛାଡ଼ିବାର କାରଣ ଶାଶୂଶ୍ୱଶୁର ଅନୁମାନ କରିପାରିଥିଲେ ନିଶ୍ଚୟ । ସେତେବେଳେ କିଛିଟା ଭଟା ପଡ଼ିଯାଇଥିଲା । ତା' ଘର ଛାଡ଼ିବାଟା ବାହାର ଦୁନିଆ ଆଖିରେ ଗୋଟିଏ ଅଘଟଣ ହେଇ ଠିଆହେଲା । ଏମିତିକି ନଣନ୍ଦ ସୀମାର ବାହାଘରକୁ ମଧ୍ୟ ସେ ଯାଇପାରିନଥିଲା କାରଣ ଶ୍ରୀମନ୍ତ ଚାହିଁ ନଥିଲେ । କାରଣ ସେ ସବୁବେଳେ ଗଣ୍ଡଗୋଳିଆ ସ୍ଥିତିକୁ ଭୟ କରନ୍ତି ।

ତେବେ ଆତ୍ମୀୟସ୍ୱଜନଙ୍କ ଦୃଷ୍ଟିରେ ସେ ହେଲା ଖରାପ ବୋହୂ, ସ୍ୱେଚ୍ଛାଚାରିଣୀ । ଯଦିଓ ଏଇସବୁ ଘଟଣା ଅନ୍ତରାଳରେ ବଶିଷ୍ଠ ଓ ତା'ର ହିଂସ୍ର ଆଚରଣ ହିଁ ମୂଳ କାରଣ ଥିଲା । କିନ୍ତୁ ତା'ର ସେହି ସମୟର ଅଧିଷ୍ଠିତ ବାହାର ରୂପଟା ସମସ୍ତଙ୍କୁ ସନ୍ଦେହର ଊର୍ଦ୍ଧ୍ୱରେ ରଖିଦେଲା ଅନେକଦିନ ପର୍ଯ୍ୟନ୍ତ । କହିବାକୁ ଗଲେ ବଶିଷ୍ଠ ମେଣ୍ଟାଲ ହସ୍‌ପିଟାଲରେ ଆଡ୍‌ମିସନ ନେଲା ପର୍ଯ୍ୟନ୍ତ କେହି ଜାଣିଲେନି ସତ କ'ଣ । ଏମିତିକି ଶ୍ରୀମନ୍ତ ବି ।

ନିଜେ ଚିତ୍ରାଙ୍ଗଦା ବି କ'ଣ ପୂରା ସତ ଜାଣିଥିଲା !

ଆଉ ଯେତେବେଳେ ଜାଣିବାକୁ ପାଇଲା, ଅବଶ୍ୟ କିଛି ବର୍ଷ ପରେ, ତା'ର ତ ବିସ୍ମୟର ସୀମା ରହିଲାନି ।

ଇଏ ଆଉ ଗୋଟିଏ କାହାଣୀ ବଶିଷ୍ଠର ସ୍ୱତନ୍ତ୍ରଭାବେ । ବୈଦେହୀ ଓ ବଶିଷ୍ଠର କହିଲେ ବୋଧେ ବେଶି ଠିକ୍ ହେବ ।

ଯୋଉ ଘଟଣାର ମୂଳ ଖୋଜିବାକୁ ଯାଇ ଚିତ୍ରାଙ୍ଗଦା ଜୀବନର ମହାର୍ଘ ସମୟକୁ ବଳି ପକେଇ ଦେଲା, ଏଇ ସେଇ ମୂଳଘଟଣାର କାହାଣୀ ବୈଦେହୀ ପାଖରୁ ହିଁ ଶୁଣିଥିଲା । ଅବଶ୍ୟ, ସ୍ମୃତିର ଗନ୍ତାଘରେ, କେବେ କେମିତି କୋଉ ପରିସ୍ଥିତିରେ ବୈଦେହୀ ନାଁଟା ସଂରକ୍ଷିତ ହେଇ ରହିଥିଲା ଠିକ୍ ମନେ ନାହିଁ । ତେବେ କଥାଛଳରେ ସୁନ୍ଦର କଥାକୁହା ଆଖିର ପ୍ରଶଂସା କଲାବେଳେ ବଶିଷ୍ଠ ଶତମୁଖ ହୋଇପଡୁଥିଲା ଓ ନିଜ ଅଜାଣତରେ ତା' ପାଟିରୁ ବୈଦେହୀ ନାଁଟା ଖସି ପଡ଼ିଥିଲା ଦିନେ । ଚିତ୍ରାଙ୍ଗଦା କଥାଆଗୁଳି ଯେତେ ପଚାରିବାକୁ ଚାହିଁଲା, ବଶିଷ୍ଠ କଥା ବୁଲେଇଥିଲା, କିଛି କହିନଥିଲା ।

ସେଇଦିନରୁ ମନେମନେ ଖୋଜି ହେଉଥିଲା ଚିତ୍ରାଙ୍ଗଦା ବୈଦେହୀ ନାମ୍ନୀ ଝିଅଟିକୁ ।

ଦୈବାତ୍ ଦିନେ ଦେଖାହୋଇଗଲା ବୈଦେହୀ ସହିତ କନ୍ୟାଶ୍ରମର ବାର୍ଷିକ ଉତ୍ସବରେ । ବୈଦେହୀର ସ୍ୱାମୀ ଇନ୍ଦ୍ରଜିତ୍ ସେଠାକାର ସରକାରୀ ବିଦ୍ୟାଳୟର ପ୍ରଧାନ ଶିକ୍ଷକ । ଆସିଥିଲେ ନିମନ୍ତ୍ରିତ ଅତିଥିହୋଇ । କଥା ପ୍ରସଙ୍ଗରେ ପରିଚୟ ହେଲା, ତା'ପରେ ଘନିଷ୍ଠତା । ବୈଦେହୀର ନିମନ୍ତ୍ରଣ ରକ୍ଷା କରି ନିଜେ ଯାଇଥିଲା ଚିତ୍ରାଙ୍ଗଦା ତା' ଘରକୁ । 'ବୈଦେହୀ' କେବଳ ଚମତ୍କାର ନାଁଟିଏ ନୁହେଁ, ରୂପଗୁଣରେ ବି ସେମିତି ଚମତ୍କାରିତା ଥିଲା । ଦୁଧଅଳତା ରଙ୍ଗର ସୁନ୍ଦର ଝିଅଟିଏ ବୈଦେହୀ । ବଡ଼ବଡ଼ କଥାକୁହା ଘୂମନ୍ତ ଆଖି, ଯେମିତି ଉଠିଆସିଛି ନିଦରୁ । ବଶିଷ୍ଠକୁ ତା' ଆଖି ଦୁଇଟି ନିଶ୍ଚୟ ଭଲ ଲାଗିଥିଲା । ଆହୁରି ଅନେକ କିଛି ଭଲ ଲାଗିଥିବ ହୁଏତ ତା' ସହିତ ଅନ୍ତରଙ୍ଗ ହେଲା ପରେ । ଦୁହେଁ ଥିଲେ ଏକା କ୍ଲାସ୍‌ରେ । ଅନେକ ଝିଅ ବଶିଷ୍ଠ ପାଇଁ ପାଗଳ ଥିଲେ । ବଶିଷ୍ଠ କିନ୍ତୁ ବୈଦେହୀକୁ ହିଁ ବାଛିଥିଲା । ବାଟ ଚାଲୁଚାଲୁ ଦୁହେଁ କେତେବେଳେ ଯେ ପରସ୍ପରର ନିକଟତର ହୋଇଯାଇଥିଲେ, ବୈଦେହୀ କହିପାରିନଥିଲା ସଠିକ୍ ଭାବେ । ଲାଗିଥିଲା, ସେମାନେ ଯେମିତି ଅନେକ ଜନ୍ମରୁ ପରିଚିତ ଥିଲେ ।

ପ୍ରେମ ଅବଶ୍ୟ କିଛି ମାନେନା । ନା ଜାତି, ଗୋତ୍ର ନା ବୟସ । ପ୍ରତିଷ୍ଠା, ପ୍ରତିପତ୍ତି, ବଂଶ ମର୍ଯ୍ୟାଦା କିଛି ଚାହେଁନା । କେବଳ ଦେବାରେ ହିଁ ତା'ର ତୃପ୍ତି । ସମର୍ପିଦେଇ ଯିବାରେ ହିଁ ତା'ର ଆନନ୍ଦ । ଅନ୍ତହୀନ ସମୟର ନିର୍ବିକଳ୍ପ ସମାଧିରେ ନିଜକୁ ତଲ୍ଲୀନ କରିଦେବାହିଁ ତା'ର ଚରମ ଲକ୍ଷ୍ୟ ।

କିନ୍ତୁ ସାମାଜିକ ଅର୍ଗଳି ଭିତରେ 'ପ୍ରେମ' ତା'ର ସ୍ୱୀକୃତି ଚାହେଁ । ଏକ ମର୍ଯ୍ୟାଦାବନ୍ତ ସ୍ୱୀକୃତି । ହେଲେ ବିଡ଼ମ୍ବନା ଏଇ ଯେ, ସବୁକ୍ଷେତ୍ରରେ ଏହି ସ୍ୱୀକୃତି ସହଜରେ ମିଳେନା । ବୈଦେହୀ କ୍ଷେତ୍ରରେ ତାହା ହିଁ ଘଟିଥିଲା । ସାମାଜିକ ପ୍ରତିବନ୍ଧକର ପାହାଡ଼ ଯେ କେବେ ଦିନେ ମୁଣ୍ଡ ଟେକି ଠିଆହେବ ଏବଂ ସେସବୁକୁ କେମିତି ଡେଇଁବ, ଭାବିବାର ଅନେକ ପୂର୍ବରୁ ହିଁ ବଶିଷ୍ଠ ଏକ ଅଦ୍ଭୁତ ନିଷ୍ପତ୍ତି ନେଇଥିଲା, ଯାହା ସାଧାରଣତଃ କେବେ ଘଟେନା ।

ଏକ କିଂଭୂତ ବିଚିତ୍ର ଭାବନାକୁ ରୂପ ଦେବାକୁ ଯାଇ ଦିନେ ଆସନ୍ନ ସନ୍ଧ୍ୟାର ବାସନ୍ତୀ ମୁହୂର୍ତ୍ତରେ ବଶିଷ୍ଠ ବୈଦେହୀକୁ ଏକରକମ ପ୍ରତିଶ୍ରୁତିବଦ୍ଧ କରେଇ ଦେଇଥିଲା । ଏକଥା କହିଲାବେଳେ ବୈଦେହୀ ନିଜର ବୟସ୍କ ମନର କୋହକୁ ସମ୍ଭାଳି ପାରିନଥିଲା ।

ଦିନ, ବାର, ତାରିଖ କିଛି ମନେ ନାହିଁ । ନିତିଦିନ ଭଳି ସେମାନେ ଘରଠୁ ଦୂର ସେଇ ଲମ୍ବା ପିଚୁରାସ୍ତାରେ ବାଟ ଚାଲୁଥିଲେ ମନପୂରୁଣାରେ । ସାମନାର ବରଗଛ ଉହାଡ଼ରେ ସୂର୍ଯ୍ୟ ଯିବିଯିବି ହେଉଥିଲେ । ଚହଲି ଉଠୁଥିଲା ଆଲୁଅ ଗଛ ସନ୍ଧିରେ । ଅସ୍ତରାଗର ସୂର୍ଯ୍ୟ ବୈଦେହୀର ଖୁବ୍ ପ୍ରିୟ ।

ହଠାତ୍ ଚମକେଇଲା ଭଳି ବଶିଷ୍ଠ ଅଦ୍ଭୁତ କଥାଟିଏ କହିଲା ।

– 'ତମେ ବାହାହୁଅ ବୈଦେହୀ । ମୋତେ ଖୁବ୍ ଖୁସି ଲାଗିବ । ତୁମ କପାଳରେ ଏଇ ଲାଲ ଅସ୍ତସୂର୍ଯ୍ୟକୁ ଚମକୁଥିବା ଦେଖିଲେ ।'

ହଠାତ୍ ଚାଲୁଚାଲୁ ଠିଆହୋଇ ପଡ଼ିଲା ଅନ୍ୟମନସ୍କ ବୈଦେହୀ । ଚାହିଁଲା ବଶିଷ୍ଠ ମୁହଁକୁ ଅଚିହ୍ନା ମଣିଷ ପରି । କ'ଣ କହୁଛି ଏଇ ଲୋକଟା !

ବଶିଷ୍ଠ ତୀବ୍ର ଆବେଗରେ ତା' ହାତଟାକୁ ଧରି ଠିଆ ହୋଇପଡ଼ି କହିଲା, 'ସତ କହୁଛି ବୈଦେହୀ, ମୋର ଅନେକ ଇଚ୍ଛା ତମ ବାହାଘର ଦେଖିବାକୁ ।'

ସେଇମିତି ବିସ୍ମୟସୂଚକ ଆଖିରେ ବଶିଷ୍ଠକୁ ଚାହିଁ ମନେମନେ କହିଲା, 'କିଏ ମନା କରୁଛି କି, ହେଲେ ସେ ସମୟ ଆସୁ । ମୁଁ ତ ଅପେକ୍ଷା କରିଛି ତମ ହାତର ନାଲି ସିନ୍ଦୂରକୁ ।'

– କ'ଣ ହେଲା, କିଛି କହୁନ ଯେ... ରଖିବନି ମୋ କଥା ?' ପଚାରିଥିଲା ବଶିଷ୍ଠ ।

– କୋଉ କଥା ?, ସେଇମିତି ଉପରଠାଉରିଆ ଭାବେ ଅସ୍ତସୂର୍ଯ୍ୟକୁ ଚାହିଁ ଚାହିଁ କହିଲା ବୈଦେହୀ ।

– 'ତମେ ଶୁଣୁନ କି ମୋ କଥା ?' ଟିକିଏ କଠୋର ଶୁଭିଲା ବଶିଷ୍ଠର କଣ୍ଠସ୍ୱର, ଯେମିତି ସେ ଅପମାନ ବୋଧ କରୁଛି । ବୈଦେହୀ ଏଥର ସଚେତନ ହେଲା, ବଶିଷ୍ଠ କହିଥିଲା ଟିକିଏ ନରମ ହେଇ, 'ମୁଁ କହୁଥିଲି, ଆଉମାନଙ୍କ ଭଳି ତମେବି ଏଥର ବାଛିନିଅ ସାଥୀଟିଏ ।' ଅସ୍ତରାଗର ଛିଟାଏ ସିନ୍ଦୂର ଛିଟିକି ପଡ଼ିଲା ସତେକି ବୈଦେହୀ ମୁହଁରେ । ଟିକିଏ ଲାଜେଇ ଯାଇ କହିଲା, ବାଛି ସାରିଛି ତ.... ।'

– 'କିଏ ? ମୋତେ କହିବନି ?'

– 'କି ଅଦ୍ଭୁତ ପ୍ରଶ୍ନ ତମର ! ଖୋଲି କହିବାକୁ ପଡ଼ିବ ମୋତେ ଅଲାଜୁକୀ ଭଳି !' ବୈଦେହୀ ଆଖିରେ ଅନ୍ତରଙ୍ଗତା'ର ରଙ୍ଗ ଉତୁରି ପଡ଼ିଥିଲା । ଏବଂ ବଶିଷ୍ଠ ମୁହଁକୁ ସେଇ ଗାଢ଼ରଙ୍ଗ ଛୁଇଁବା ପୂର୍ବରୁ ସମୟ ଯେମିତି ଅଟକିଗଲା ମୁହୂର୍ତ୍ତେ ।

ସେଇ ଗଭୀର ଅନୁରାଗରେ ବୈଦେହୀ ପୁଣି ଦୋହରାଇଲା ନିଜ କଥାକୁ, 'ତମେ ହିଁ ତ ମୋର ସେଇ ଈପ୍ସିତ ଘର ଆଉ ବର ।' କେତେଥର କହିବି, ଏକଥା କୁହତ ।

ବଶିଷ୍ଠ ମୁହଁର ରଙ୍ଗ ହଠାତ୍ ବଦଳିଗଲା । ଆଶ୍ଚର୍ଯ୍ୟ ପ୍ରକାଶ କରି କହିଲା, 'ମୁଁ ? ?' ତମେ ଆଉ ପାଗଳ ହୋଇଯାଇନ ତ ? ଏଥର ବଶିଷ୍ଠର ଦୃଷ୍ଟି ଲମ୍ବିଥିଲା ଦିଗ୍‌ବଳୟରୁ ଆକାଶକୁ । କେମିତି ଶୂନ୍ୟଶୂନ୍ୟ ମନେହେଉଥିଲା ସେଇ ଦୃଷ୍ଟି । କହିଲା, 'ମୁଁ ତମର ଯୋଗ୍ୟ ନୁହେଁ ବୈଦେହୀ, ତା' ଛଡ଼ା ମୁଁ ତ ଉଡ଼ାବାଦଲ । ବାନ୍ଧି ହେବାକୁ ଚାହେଁନା । ଚାଲୁ ଚାଲୁ ତ କିଛି ବାଟ ଏକାଠି ଚାଲିଲେ । ବାସ୍, ତମେ ବସୁଧା ଭଳି ଅନ୍ତରଙ୍ଗତାର ହାତବଢ଼େଇ ଅଟକେଇଦେଲ ମୁହୂର୍ତ୍ତେ । ଅଟକିଗଲି, ବର୍ଷିଦେଲି । ଚାଲିଯିବି ଏଥର ମୋ ବାଟରେ । ତମେ ସୃଜନଶୀଳତାର ମଗ୍ନରାଣୀଟିଏ ଭଳି ଘର କର । ମୁଁ ଖୁସି ହେବି ଦୂରରୁ ଦେଖି ।'

ବୈଦେହୀ ବିଶ୍ୱାସ କରିପାରୁନଥିଲା, ସେ ଠିକ୍ ଶୁଣୁଛି ତ ନା ସ୍ୱପ୍ନ ଦେଖୁଛି ଠିଆ ଠିଆ । ଚାହିଁଲା ଚାରିଆଡ଼କୁ । ସେଇ ଲମ୍ବା ପିଚୁରାସ୍ତା ଅସ୍ତସୂର୍ଯ୍ୟଙ୍କ ବାସନ୍ତୀ ଛଟାରେ ଚମତ୍କାର ଦିଶୁଛି । ପାଖରେ ବରଗଛ କିଚିରିମିଚିରି ପକ୍ଷୀଙ୍କ କାକଳି । ସେ ଠିଆ ହୋଇଛି, ବଶିଷ୍ଠ ତା' କାନ୍ଧରେ ହାତ ରଖିଛି । ସବୁ ତ ଠିକ୍ ଅଛି, ତା'ହେଲେ ବଶିଷ୍ଠ କାହିଁକି କହୁଛି ଏମିତି ଅବାନ୍ତର କଥା ! ଭାବିଲା ବୈଦେହୀ ରାସ୍ତା ଉପରେ ଠିଆ ଠିଆ, ସଂକ୍ଷିପ୍ତରେ ।

ବଶିଷ୍ଠ ସମ୍ପର୍କରେ ଆସିଲାଦିନୁ, ସେ ଜାଣେ, ବଶିଷ୍ଠ ଏକ ବ୍ୟତିକ୍ରମ । ଅନ୍ୟମାନଙ୍କ ଭଳି ନୁହେଁ । ଭାବପ୍ରବଣ ହୋଇ ଅନେକ ସମୟରେ ବିଚିତ୍ର କଥା ସବୁ କୁହେ । ଯାହା କେବେ ସଚରାଚର ଘଟିନଥିବ । ସେ ଉଡ଼େଇଦିଏ । ଗୁରୁତ୍ୱ ଦିଏନା । ଶୁଣେ କେବଳ । ଆଜି କିନ୍ତୁ ବଶିଷ୍ଠକୁ କେମିତି ଅଲଗା ଅଲଗା ମନେହେଉଛି । ଖାପଛଡ଼ା । ଅଚିହ୍ନା ଅଜଣା ଭଳି । କ'ଣ ହେଇଛି ତା'ର ! ତା' ଛଡ଼ା ଏତେଦିନର ଘନିଷ୍ଠତା ଭିତରେ ସେମାନେ କେବେ ଘରକରଣା କଥା ତ ଭାବିନାହାନ୍ତି । ଅଥଚ ଏମିତି କ'ଣ ପରିସ୍ଥିତି ହେଲା ଯେ, ବଶିଷ୍ଠକୁ ମୁହଁ ଖୋଲି କହିବାକୁ ପଡ଼ିଲା ! ! ଏକଥା ସତ ଯେ, ସେ ଆଉ କିଶୋରୀ ହେଇ ନାହିଁ । ନିଜ ଭବିଷ୍ୟତ୍ କଥା ଭାବିଲା ଭଳି ସମୟ ଆସିଲାଣି....

ହଠାତ୍ ଗୋଟିଏ ଝାଙ୍କ ଦେଇ ବଶିଷ୍ଠ କହିଲା, 'କ'ଣ ଭାବୁଛ ଏତେ ? ପଦୁଟିଏ କଥା, ସହଜରେ ଦେଇପାରୁନ ?'

– 'ପଦୁଟିଏ, ଏ ତମେ କ'ଣ କହୁଛ ବଶିଷ୍ଠ, ସଚେତ ଅଛ ତ ?' ବଶିଷ୍ଠ ମୁହଁକୁ ଗାରଡ଼େଇ ଚାହିଁ ବୈଦେହୀ କହିଲା– ସବୁବେଳେ ତମର ଏଇ ଥଟ୍ଟାମଜା ମୋତେ ଭଲ ଲାଗେନି । କଥାଦେବାପାଇଁ ସମୟ ହିଁ ଆସିନି ଏବେ । ତା'ଛଡ଼ା ତମକୁ ଆଉ କି କଥା ଦେବି ମୁଁ, ତମେ କ'ଣ ନିଜେ ପ୍ରସ୍ତୁତ ?

– 'ମୋ କଥା କହୁନି ବୈଦେହୀ, ତମ କଥା କହୁଛି, ତମଠୁ ପ୍ରତିଶ୍ରୁତି ଚାହୁଁଛି । ଦେଖ, ସୂର୍ଯ୍ୟ ଅସ୍ତ ହେଇଯାଉଛନ୍ତି । ତା' ଆଗରୁ ମୁଁ ତମଠୁ କଥା ଚାହେଁ । ପ୍ଲିଜ୍.... ।'

ହେ ଭଗବାନ୍, କ'ଣ ହେଇଛି ଆଜି ବଶିଷ୍ଠର ! ସତରେ କ'ଣ ପାଗଳ ହୋଇଗଲାଣି, ଏମିତିକା ସୃଷ୍ଟିଛଡ଼ା ପ୍ରତିଶ୍ରୁତି, କିଛି କାରଣ ନଥାଇ ନିଜ ପ୍ରେମିକାକୁ କିଏ କେବେ ମାଗେ ! ବିରକ୍ତ ହୋଇ ବୈଦେହୀ ନିଜ ହାତକୁ ହାତମୁଠାରୁ ଛଡ଼େଇ ଆଣିବାର ଉପକ୍ରମ କଲା । ଭାବିଲା, ଜାଣୁଜାଣୁ କିଏ ନିଜ ପ୍ରିୟତମାକୁ ଅନ୍ୟ କାହାକୁ ସମର୍ପି ଦେବା କଥା ଭାବେ– ପାଗଳ ନହେଲେ ! ରାସ୍ତା ନିଛାଟିଆ ହୋଇ ଆସୁଛି । ଆଉ ଟିକିଏ ପରେ ମୁହଁ ଲୁଚେଇବେ ସୂର୍ଯ୍ୟ । ଏମିତିକା ଫିକା କନିଅରୀ ସଞ୍ଜରେ ଅନେକଥର ସେ ଆଉ ବଶିଷ୍ଠ ଏଇ ରାସ୍ତାରେ ଚାଲୁଚାଲୁ କେତେ ସ୍ୱପ୍ନ ଦେଖିଛନ୍ତି । ଗାଧେଇଛନ୍ତି କନିଅରୀ ଆଲୁଅରେ, ପଶିଛନ୍ତି ଗଭୀର ଦର୍ଶନ ଭିତରକୁ । ସେତେବେଳେ ବଶିଷ୍ଠର ମୁହଁ ବେଶ୍ ରୋମାଣ୍ଟିକ୍, ସ୍ୱପ୍ନପ୍ରବଣ ଲାଗେ ।

ଅଥଚ.... ଆଜି ସେଇ ମୁହଁ ଏମିତି ଦୁର୍ବୋଧ, ରହସ୍ୟମୟ ମନେହେଉଛି କାହିଁକି ? ସତେଯେମିତି ଶୁଭାନୁଧାୟୀ ଅଭିଭାବକଟିଏ । ବୈଦେହୀ ବଶିଷ୍ଠର ଅନ୍ତର୍ମନ ଭିତରକୁ ପଶିବାକୁ ଚେଷ୍ଟାକଲା ।

କିନ୍ତୁ ବଶିଷ୍ଠ ତାକୁ କିଛି ସମୟ ନ ଦେଇ, ତା' ଭଲପାଇବାର ପ୍ରତିଦାନରେ ସେଇ ଏକା ଅଦ୍ଭୁତ ପ୍ରତିଶ୍ରୁତି ମାଗୁଥିଲା ।

– 'କାହିଁକି ତମର ଏଇ ପାଗଳାମି କହିଲ, ଇଏ ତମ ଖେଳକଥା ନା ଜୀବନଟା ଗୋଟାଏ ଖେଳଘର, କିଛି କଥା ନାହିଁ କାରଣ ନାହିଁ...'

– ସବୁକଥାର, ସବୁବେଳେ କିଛି କାରଣ ନଥାଏ । ଆମେ ଯେତେବେଳେ ପରସ୍ପରର ଘନିଷ୍ଠ ହେଲେ ସେଇ ଘନିଷ୍ଠତା ପଛରେ କ'ଣ କିଛି କାରଣ ଥିଲା ?'

ବୈଦେହୀର ଆଖି ଡୁବନ୍ତ ସୂର୍ଯ୍ୟ ଆଡ଼େ ଥିଲା- ସବୁକଥା ତା' କାନରେ ବାଜୁ ନଥିଲା । ଏକଜିଦିଆ ମଣିଷ, ଯାହା ବୁଝିଥିବ ତ...., ଠିକ୍ ପିଲାଙ୍କ ଭଳି । ହେଲେ ବୈଦେହୀକୁ ଭଲ ଲାଗେ ବଶିଷ୍ଠର ଏଇ ପିଲାଳିଆମି । ତା' ଭିତରର ଅବୋଧ ଶିଶୁପଣକୁ । ତା'ର ସ୍ନେହପ୍ରବଣତାକୁ ସହଜରେ ଗ୍ରହଣ କରିହୁଏ । ହେଲେ ଆଜି କେମିତି ଅଲଗା ଅନୁଭବଟିଏ ଦୁହିଁଙ୍କ ମଝିରେ ଠିଆ ହୋଇ ଅଡୁଆରେ ପକେଇଦେଉଛି ।

ବଶିଷ୍ଠ କଥା ମାଗୁଥିଲା ଗୀତର ପଦ ଦୋହରାଇଲା ଭଳି । ଅଭିଯୋଗ କରୁଥିଲା, 'ତମେ ସ୍ୱାର୍ଥପର । ତମ ଭଲପାଇବାରେ ସ୍ୱଚ୍ଛତା ନଥିଲା । ଏ ଯାବତ୍ ତମକୁ ତ ମୁଁ କିଛି ମାଗିନଥିଲି...'

ଏଥର ବ୍ୟତିବ୍ୟସ୍ତ ହୋଇପଡ଼ିଲା ବୈଦେହୀ ନିଜ ଭିତରେ । କଥାର ଖିଅ ହିଁ ଛାଡୁନି ବଶିଷ୍ଠ । ସେଇ ଏକା କଥା... ରଟ ଲଗେଇଛି, କ'ଣ ତା'ର ଉଦ୍ଦେଶ୍ୟ !

ବୈଦେହୀ ମନରେ ସନ୍ଦେହ ପଶିବାରୁ ତାକୁ ଅସହଜ ଲାଗିଲା । ଭଲ ଲାଗିଲାନି । ସେମାନେ ଆଉ ପିଲା ହୋଇନାହାନ୍ତି । ମଖମଲି ବୟସର ପରିଧି ଡେଇଁ ବୟସ୍କ ଏକ ପ୍ରବୀଣ ବିନ୍ଦୁରେ ଆସି ଠିଆହୋଇଛନ୍ତି । କୌଣସି ପିଲାଳିଆମି ଏଣିକି ଆଉ ଶୋଭା ପାଉନି । ବଶିଷ୍ଠର ଏଇ ପାଗଳାମିକୁ ଅଟକେଇବାକୁ ହେଲେ ତାକୁ ହିଁ କିଛି ପଦକ୍ଷେପ ନେବାକୁ ହେବ ।

ରାସ୍ତା ବେଶି ସମୟ ନିଛାଟିଆ ନଥିଲା । ଯିବାଆସିବା କରୁଥିଲେ ଜଣେଅଧେ । ସଞ୍ଜ ମାଡ଼ିଆସୁଛି । ବୋଉ ଖୋଜିବ ତେଣେ । ଘରକୁ ଯିବାକୁ ତରତର ମନରେ କଥାର ଖିଅ ବଦଳେଇବାକୁ ଯାଇ ସେ ହଠାତ୍ ଶପଥଟିଏ କରି ପକାଇଲା- 'ହଉ ବାବା ହେଲା, କଥା ରଖିଲି ତମର । ଏଥର ଖୁସି ତ ? ହସିହସି ପଚାରିଲା ସେ ବଶିଷ୍ଠ ମୁହଁକୁ ଚାହିଁ ଏବଂ କହିଲା– ଚାଲ ଯିବା ଏଥର, କାଲି ଆସିଲେ ବିଚାର କରିବା ।'

ସୂର୍ଯ୍ୟ ଲୁଚି ଯାଉଥିଲେ ତିନିମହଲା କୋଠା ପଛପଟେ । ବଶିଷ୍ଠ ମୁହଁରେ ଖୁସିର ଝଲକ ଫୁଟି ଉଠୁଥିଲା 'ଯେମିତି କଥା ଆଉ ନ ବଦଳାଅ ।'

– 'ମୁଁ କ'ଣ କେବେ କଥା ବଦଳେଇଛି ନିଜଆଡୁ ?'

ବୈଦେହୀ କ'ଣ ସତରେ ସେଦିନ ବଶିଷ୍ଠର ଏଇ କଥାକୁ ଗଭୀର ଭାବେ ଚିନ୍ତା କରିଥିଲା ନା କଥା ଦେଲାବେଳକୁ ଆଗକୁ ଏଭଳି କିଛି ଘଟିବ ବୋଲି ଭାବିଥିଲା ! ବଶିଷ୍ଠର ଝାଙ୍କ ଛଡ଼େଇ ତାକୁ ଆଉ ଗୋଟାଏ ମୋଡ଼ ଆଡ଼କୁ ନେବାପାଇଁ ସବୁଥର ଭଳି କଥାର ଖିଅ ବଦଳେଇଥିଲା ସିନା !

ହେଲେ, ସେ କ'ଣ ଜାଣିଥିଲା, ଏଇ କଥାଦିଆଟା ତା' ଜୀବନ ପାଇଁ ସତ ପାଲଟିଯିବ ଏବଂ ଶେଷକଥା ହୋଇଯିବ !

ତା' ପରଠୁ ବଶିଷ୍ଠ ଆଉ ନିତିଦିନ ଭଳି ଆସିନଥିଲା । ଦିନେ ଦେଖା ନହେଲେ ପାଗଳପ୍ରାୟ ହୋଇଯାଉଥିବାର ବଶିଷ୍ଠର ଚାଲିଚଳଣ କେମିତି ବେଖାପ ମନେହେଲା । ଅନେକଦିନ ପରେ ବୈଦେହୀ ନିଜେ ଯେତେବେଳେ ତା'ର କାରଣ ଖୋଜିଲା, ସିଧାସଳଖ ବଶିଷ୍ଠ ମନା କରିଦେଇ କହିଲା, 'ତମେ କଥା ଦେଇସାରିଛ ବୈଦେହୀ, ଏଣିକି ନିଜକୁ ଆଉ ଜଣକ ପାଇଁ ପ୍ରସ୍ତୁତ କର । ମୁଁ ମୁକ୍ତ ଏବେ । ମୋ' ଭଲପାଇବା ପଛରେ କିଛି ଉଦ୍ଦେଶ୍ୟ ନଥିଲା । ଭଲପାଇବା ପାଇଁ ହିଁ ମୁଁ ଭଲପାଇଛି । ବିବାହ ତ ଏକ ଘଟଣା ମାତ୍ର । ଏଇ ସାଧାରଣ ଘଟଣା ଭିତରେ ପ୍ରେମ ଭଳି ଏକ ଶ୍ରେଷ୍ଠ ଉପଲବ୍ଧିକୁ ମୁଁ ହତ୍ୟା କରିବାକୁ ଚାହେଁନା । ମୋତେ କ୍ଷମା କର ।'

ବୈଦେହୀ ସ୍ଥାଣୁ ପାଲଟି ଯାଉଥିଲା । ଓଠରେ ଭାଷା ନଥିଲା । ବଶିଷ୍ଠ ତାକୁ ପ୍ରତାରଣା କଲା ନା ଆଉ କିଛି ? ତାକୁ ସେ କେମିତି ଆଖ୍ୟା ଦେଇ ବୁଝିବ ! ଏତେଦିନର ବିଶ୍ୱାସ-ମିଳାମିଶା-ସ୍ୱପ୍ନ ସବୁ ମିଛ ହେଇଗଲା । ନିଜକୁ ବୁଝେଇ ପାରୁନଥିଲା ବୈଦେହୀ ।

ତା' ଭଲପାଇବାରେ ତ ଛଳନା ନଥିଲା । ବଶିଷ୍ଠ ପାଇଁ ଜୀବନ ଦେବାକୁ ପ୍ରସ୍ତୁତ ଥିଲା ସେ । ଆଜିବି ସେତିକି ସିଏ ଭଲପାଏ ବଶିଷ୍ଠକୁ ଯେତିକି ଆଗରୁ ଭଲପାଉଥିଲା । ବଶିଷ୍ଠ ଖୁସିରେ ହିଁ ସେ ଖୁସି । ବଶିଷ୍ଠର ଖୁସି ବ୍ୟତିରେକେ ଆଜି ପର୍ଯ୍ୟନ୍ତ ତା' ପାଇଁ ଅଲଗା କିଛି ଖୁସି ନଥିଲା । ବାସ୍ । ତା' ଖୁସି ପାଇଁ ସେ ସବୁ କିଛି କରୁଥିଲା । ଏବଂ କରିବ ମଧ ପ୍ରତିଦାନର କୌଣସି ଆଶା ନରଖି । ସେ କେବେ ମିଥ୍ୟାଚାରୀ ହେବନି ।

ଆଜିବି ସେ ବଶିଷ୍ଠକୁ ଖୁସି କରିବ ।

ଅବଶ୍ୟ ବାପାବୋଉଙ୍କ ମନରେ କିଛିଟା ପ୍ରଶ୍ନ ଉଠିଥିଲା ବଶିଷ୍ଠର ଅସ୍ୱାଭାବିକ ପ୍ରକୃତି ନେଇ । ହେଲେ ସମୟର ପାହାଚକୁ ସ୍ୱାଭାବିକ ଭାବେ ଅତିକ୍ରମିବାକୁ ଉଚିତ ମଣି ବୈଦେହୀ ସୁନା ଝିଅ ହୋଇ ବଉଳପାଟ ପିନ୍ଧିଲା । ମନର ସାତ ସିନ୍ଦୂକ ଭିତରେ ବଶିଷ୍ଠକୁ ସାଇତି ରଖି

ଚାବି ପକେଇଦେଲା ଏବଂ ନୂଆ ମଣିଷର ହାତଧରି ତା' ଘରକୁ ସ୍ୱର୍ଗରେ ପରିଣତ କରିବାର ସଂକଳ୍ପ ନେଲା ।

ଏ ସଂକଳ୍ପରେ ବି ତା'ର କୌଣସି ଛଳନା ନଥିଲା । ଯା ପରେ ସେ ଆଉ କିଛି କେବେ ଭାବିନି । ପ୍ରତାରଣା କରିନି କାହା ପାଖରେ- ନା ବଶିଷ୍ଠ ପାଖରେ ନା ଇନ୍ଦ୍ରଜିତ୍‌ଙ୍କ ପାଖରେ, ନା ନିଜ ପାଖରେ, ନା ସମୟ ସହିତ । ଖୋଲା ମନ, ଖୋଲା ବିଚାର ସହିତ ଘର କରିଛି ବୈଦେହୀ, ଚମତ୍କାର ଘର । ସ୍ୱାମୀ, ଶ୍ୱଶୁର, ଶାଶୂ ସମସ୍ତେ ଖୁସି ତା' ବ୍ୟବହାରରେ । ପ୍ରଶଂସାରେ ଶତମୁଖ । ଇନ୍ଦ୍ରଜିତ୍ ମଣିଷଟାର ତ ତୁଳନା ନାହିଁ । ପାପପୁଣ୍ୟର ଊର୍ଦ୍ଧ୍ୱରେ ସେ ବିଚାର କରେ ମଣିଷକୁ । ଐଶ୍ୱର୍ଯ୍ୟ ନୁହେଁ, ଅଖଣ୍ଡ ବିଶ୍ୱାସ ଆଉ ଅମାପ ନିଷ୍ଠାର ଭିତ୍ତି ଉପରେ ପାରିବାରିକ ଜୀବନର ଇମାରତ ଗଢ଼ିଛି ବୈଦେହୀ ।

ଖୁସିଲାଗିଥିଲା ଚିତ୍ରାଙ୍ଗଦାକୁ ।

କେଡ଼େ ନିର୍ମଳ, ସ୍ୱଚ୍ଛ ଆଉ ନିଷ୍ଠାବତୀ ଏଇ ବୈଦେହୀ ! ମନବଚନରେ ଶୁଦ୍ଧ । ସତ୍ୟବତୀ । ଚିତ୍ରାଙ୍ଗଦା ଆଗରେ ନିଜକୁ ଖୋଲିଦେଇ ମୁକ୍ତ ହେଇଯାଇଥିଲା ସେ । ତା'ର କୌଣସି କ୍ଷୋଭ ନଥିଲା, କି ସେ ଅନୁତପ୍ତ ନଥିଲା ତା'ର ଏପରି ନିଷ୍ପତ୍ତି ପାଇଁ । ଏକଥା କିନ୍ତୁ ସତ ଯେ, ଚିତ୍ରାଙ୍ଗଦାର ବିପର୍ଯ୍ୟୟ ପାଇଁ ପରୋକ୍ଷ ଭାବେ ସେ ଓ ବଶିଷ୍ଠ ହିଁ ଦାୟୀ ବୋଲି ସ୍ୱୀକାର କରି ଦୁଃଖ କରିଥିଲା ।

– 'ମୁଁ ଆଉ କ'ଣ କରିପାରିଥାଆନ୍ତି ଭାଉଜ, ନିଜେ ବଶିଷ୍ଠ ଯେତେବେଳେ ବାଟଭାଙ୍ଗି ଚାଲିଯିବାକୁ ଚାହିଁଲା, ଜବରଦସ୍ତ କ'ଣ ମୁଁ ତା' ମନକୁ ଜିଣି ପାରିଥା'ନ୍ତି ? ତାକୁ ତ ମୁଁ ଅନ୍ତରର ସହିତ ଭଲପାଇଛି, ତା' ମନରେ କିମିତି କଷ୍ଟ ଦେଇଥା'ନ୍ତି କହୁନ । ସେ ତ ଏଇୟା ଘଟୁ ବୋଲି ଚାହିଁଥିଲା ନା ।'

ମୁଗ୍ଧ ହୋଇଥିଲା ଚିତ୍ରାଙ୍ଗଦା, ବୈଦେହୀର ସମର୍ପିତ ଭାବରେ ।

ତାକୁ ଲାଗିଲା, ବଶିଷ୍ଠ ହାରିଯାଇଛି । ଜୀବନ ଜିଇବାରେ କଳା ବଶିଷ୍ଠକୁ ଜଣା ନାହିଁ । ସାଧାରଣ ମଣିଷର ଇନ୍ଦ୍ରିୟ କାମନା କିଛି ଅସ୍ୱାଭାବିକ ନୁହେଁ, ଏଥିରେ ଲଜ୍ଜା, ସଙ୍କୋଚର କୌଣସି ସ୍ଥାନ ନାହିଁ । ତାକୁ ସ୍ୱଚ୍ଛନ୍ଦ ଭାବେ ନମନୀୟ ମାର୍ଗରେ ଭୋଗ କରିବା ହିଁ ପ୍ରକୃଷ୍ଟ ଜୀବନକଳା । ବଶିଷ୍ଠ ତା' କଳା ନାହିଁ । ରକ୍ତମାଂସର ସାଧାରଣ ମଣିଷ ଭାବେ ନିଜକୁ ଉପସ୍ଥାପନ ନ କରି ସିଦ୍ଧ ସାଧୁସନ୍ଥର ମୁଖାପିନ୍ଧି ଆଦର୍ଶ ପୁରୁଷ ହେବାକୁ ଚାହିଁଲା । ଏଣେ ଅନ୍ତର୍ନିହିତ ବାସନାକୁ ପୋଛି ସଫା କରି ପାରିଲାନି । ଛଦ୍ମତା'ର ଆଶ୍ରୟ ନେଲା । ସେଇ ଅଚରିତାର୍ଥ କାମନା ହିଁ ପରବର୍ତ୍ତୀ ସମୟରେ ଉଗ୍ର ରୂପ ନେଇ ତାକୁ ଉନ୍ମାଦରୁ ପାଗଳ କରିଦେଲା । ଟାଣିନେଲା ଅନ୍ଧାର ଭିତରକୁ ।

ଆଉ ଠିକ୍ ସେଇ ସନ୍ଧିକ୍ଷଣରେ ସେ ନିଜେ ତା' ବିକଳ ରୁଗ୍‌ଣ ମାନସିକ ଈର୍ଷାର

ଶିକାର ହୋଇଗଲା । ଶିକାର ହେଇଗଲେ ଶ୍ରୀମନ୍ତ ଏବଂ ତା'ର ସମ୍ଭାବନାମୟ ପାରିବାରିକ ଜୀବନ ! ସବୁ ଯେମିତି ଅବାଞ୍ଛିତ ସଂଯୋଗ । ସମୟର କୋରଡ଼ାମାଡ଼ ସହିବାକୁ ପଡ଼ିଲା ସମସ୍ତଙ୍କୁ । ସମୟର ଅଫେରା ସ୍ରୁଅରେ ହଜିଗଲା ସବୁ ସ୍ୱପ୍ନ, ସମ୍ଭାବନା, ସବୁକିଛି ।

ସେଦିନର ବର୍ଷାପଖଳା ସନ୍ଧ୍ୟାରେ ଚିତ୍ରାଙ୍ଗଦା ପାଖରେ ନିଜକୁ ଖୋଲିଦେବାକୁ ଯାଇ ବୈଦେହୀ ଆଖିରୁ ଲୁହ ଝରିଗଲା । ବୈଦେହୀ କହିଲା– 'କିଛି ଲାଭ ହେଲାନି ଭାଉଜ । ନା ସାଧାରଣ ପୁରୁଷଟିଏ ହେଇପାରିଲା ବଶିଷ୍ଠ, ନା ହୋଇପାରିଲା ଅସାଧାରଣ ପ୍ରେମିକଟିଏ ।' ପଣତରେ ଲୁହ ପୋଛି କହିଲା- 'ପ୍ରେମ ଅଭିନୟ ନୁହେଁ, ପ୍ରେମ ତ ତପସ୍ୟା । ତାକୁ ନେଇ କ'ଣ ପରୀକ୍ଷାନିରୀକ୍ଷା କରାଯାଏ !' ଏବଂ ଏକଥା ବି କହିଥିଲା ବୈଦେହୀ- ସେ ବଶିଷ୍ଠର କୌଣସି କଥା ଭୁଲିନି, ତା' ବିଚାରରେ ପ୍ରେମ ଏକ ମନୋଭାବ । ଏକ ମଧୁର ଅନୁଭବ । ଏକ ସୂକ୍ଷ୍ମ ଉପଲବ୍ଧି । ତା'ର ସ୍ଥିତି ଆଉ ବିସ୍ତାର ତ ମନରେ । ଏହି ସ୍ଥିତି ଏକ ନିରାଲମ୍ବ ଶୂନ୍ୟତାର । ଏହି ଶୂନ୍ୟତା ଖାଲିପଣ ନୁହେଁ, ହତାଶା ନୁହେଁ, –ସ୍ୱୟଂସଂପୂର୍ଣ୍ଣ । ମନ ଭିତରେ ଭାବ ଅଛି ତ, ଭାବନା ବି ଅଛି । ଏଇ ଭାବନା ହିଁ ମନର ବନ୍ଧନ । ଯାକୁ କିଏ କାଟିବ ନା କାଟି ହେବ ? ସେଠି ତ ଦେ–ନେ ର ସ୍ୱାର୍ଥ ନାହିଁ କି ସମ୍ପର୍କ ନାହିଁ । କେବଳ ନିଃସର୍ତ୍ତ ଘେନାଘେନି । ଦେଇଦେବାରେ, ଅଜାଡ଼ି ହେଇଯିବାରେ ହିଁ ଚରମ ଆନନ୍ଦ । ଏଇ ଆନନ୍ଦ ମଧ୍ୟ କାଳାତୀତ, ଦେହାତୀତ, ନିରାଲାମ୍ବ ଅଥଚ ସ୍ୱୟଂସମ୍ପୂର୍ଣ୍ଣ- ରାଧା । ରାଧାଭାବ ।

ବଶିଷ୍ଠ ପାଇଁ ବୈଦେହୀ ଯେତିକି ସତ, ଇନ୍ଦ୍ରଜିତ୍ ବି ସେତିକି ସତ । ପ୍ରେମ ଏକ ପରମଭାବ, ଏକ ପୂର୍ଣ୍ଣତା । ତା'ର ଅନ୍ତ ନାହିଁ, ନାହିଁ ବି ଖାଲିପଣ ।

ଏକଥା କହିଲାବେଳେ ବୈଦେହୀ ଭାବାବିଷ୍ଟ ହୋଇ ପଡ଼ିଥିଲା । ବୈଦେହୀର ସେଇ ଭାବମୟୀ ରୂପକୁ ଚିତ୍ରାଙ୍ଗଦା ବିସ୍ମୟାଭିଭୂତ ହେଇ କେବଳ ଚାହିଁଥିଲା । ଚକିତ ଲାଗୁଥିଲା ତାକୁ । ଅବାକ୍ ହୋଇଯାଇଥିଲା ସେ । ବୈଦେହୀ ବଶିଷ୍ଠକୁ ଆପଣାର କରି ପାରିଲେନି ବୋଲି ଦୁଃଖରେ ଭାଙ୍ଗିପଡ଼ିନି । କିମ୍ବା ପ୍ରତିଶୋଧର ନିଆଁରେ ଗାଧେଇ ଈର୍ଷାର ନୀଳଫୁଲକୁ ଗଜରା କରି ଖୋସାରେ ଜୁଡ଼େଇ ଖଣ୍ଡିତା ନାୟିକା ସାଜିନି ।

ବରଂ ପ୍ରେମର ପ୍ରତିଶ୍ରୁତିକୁ ରକ୍ଷା କରି ସ୍ୱାମୀର ସଂସାରକୁ ବିଶ୍ୱାସ ଓ ନିଷ୍ଠାର ମଣିମୁକ୍ତାରେ ସଜେଇ ଭାବର ଐଶ୍ୱର୍ଯ୍ୟ ଦେଇ ନିଜେ ହେଇଛି ସ୍ୱୟଂସମ୍ପୂର୍ଣ୍ଣା ।

ମୁଗ୍ଧହେଲା ଚିତ୍ରାଙ୍ଗଦା, ମନଭରି କଲ୍ୟାଣ କରିଥିଲା ବୈଦେହୀକୁ ।



# ଅପେକ୍ଷାରେ

ତଥାପି ଅପେକ୍ଷା କରିଥିଲା ଅପର୍ଣ୍ଣା ରାତିର ଶେଷ ଟ୍ରେନ୍‌କୁ । ନୀଳାଞ୍ଜନ ଆସିବେ ନିଶ୍ଚୟ । ଆସିବା କଥା । ହୁଏତ ଡେରି ହୋଇ ଯାଇଥିବ କୌଣସି କାରଣରୁ । କାମ ସରିନଥିବ । ବେଶୀ ରୋଗୀ ଥିବେ । କିଟିମିଟିଆ କେଶ୍‌ଟିଏ ପଡ଼ିଯାଇଥିଲେ ଜମା ସେ ତରବରିଆ ଡିସ୍‌ପୋଜ୍ କରିବେନି । ପଛେ ଡେରିହେବ ଟିକିଏ । ସବାଶେଷକୁ ଟିକିନିଖି କରି ଦେଖି ପ୍ରେସ୍‌କ୍ରାଇବ୍ କରିବେ । ଏଇଟା ତାଙ୍କର ଅଭ୍ୟାସ, ସେ ଜାଣେ । ଅପରେସନ୍ ବି ଥାଇପାରେ । ଇମରଜେନ୍‌ସି । ତାକୁ ଆଟେଣ୍ଡ୍ ନ କରି ତ ଉପାୟ ନାହିଁ । ସାରୁସାରୁ ଡେରି ହୋଇଯାଇଥିବ । ପୁଣି ରୋଗୀର ଚେତା ନ ଫେରିଲାଯାଏ ସର୍ଜନକୁ ମୁକ୍ତି କାହିଁ ? ଅପେକ୍ଷା କରିଥିବେ । ନର୍ମାଲ କଣ୍ଡିସନ୍ ଆସିଲେ ଯାଇ ରୋଗୀକୁ ଆଉ କାହା ଦାୟିତ୍ୱରେ ଛାଡ଼ିବେ । ବିଚରା ନୀଳାଞ୍ଜନ ! ସେଇ ସମୟମାନଙ୍କରେ ତାଙ୍କର ଯେଉଁ ବ୍ୟସ୍ତତା ! କେବଳ ତାଙ୍କ ପାଖରେ ଥିବା ମଣିଷ ହିଁ ବୁଝିପାରିବ । ତାଙ୍କ ବ୍ୟସ୍ତତାର ତୀବ୍ରତା ଥରେଥରେ ଅପର୍ଣ୍ଣାକୁ ବି ସଂକ୍ରମିତ କରେ । ସେତେବେଳେ ସେ କିଛି ଶୁଣନ୍ତିନି କି କିଛି ବୁଝିବା ପାଇଁ ପ୍ରସ୍ତୁତ ନଥାନ୍ତି । ଅପର୍ଣ୍ଣା ଭାବିଲା, ସେମିତି କିଛି ଜରୁରୀ ପରିସ୍ଥିତି ଉପୁଜିଥିବ ବୋଲି ହିଁ ଆସିପାରିନାହାନ୍ତି ।

ତା' ଛଡ଼ା ପାଖଆଖ ଗାଁରେ ଯଦି କିଛି ଗୋଟିଏ ଛୋଟକାଟର ଏପିଡେମିକ୍ କିମ୍ବା ସେଭଳି କିଛି ସମ୍ଭାବନାର ସୂଚନା ମିଳିଥିବ ତ.... ଆଜି କ'ଣ ଆଗାମୀ ସପ୍ତାହେ କି ପନ୍ଦରଦିନ ପର୍ଯ୍ୟନ୍ତ ଘୁଞ୍ଚିପାରିବେନି ହେଡ୍‌କ୍ୱାଟରରୁ । ଅନେକ ଥର ହୋଇଛି ଏମିତି । ଅପେକ୍ଷା କରିକରି ନିରାଶ ହେଇଚି ସେ । ଘଟଣା କ'ଣ ଜାଣି ନପାରି ଛଟପଟାଣି ଭିତରେ ଅନେକ ରାତି କଟିଛି ଅନିଦ୍ରାରେ । ପୁଣି କିଛି ଖବର ପାଇଲା ପର୍ଯ୍ୟନ୍ତ । କିମ୍ବା ଚିଠିଟିଏ ବି' ଧାଡ଼ିଆ ପାଇଲା ପର୍ଯ୍ୟନ୍ତ । ସେତେବେଳେ ନା ଘରେ ଫୋନ୍ ରହୁଥିଲା, ନା, ସେସବୁ ଗାଁ ଗହଳର

ଡାକ୍ତରଖାନାମାନଙ୍କରେ ଫୋନ୍ ରହୁଥିଲା । ସବୁକଥା ମ୍ୟାସେଞ୍ଜର ଦେଇ । ଖବର ଟିକିଏ ପାଇବା ଯେ କି କଷ୍ଟକର ଥିଲା, ଅନୁଭବ ନକଲେ ବୁଝିହେବନି ।

ତେବେ, ବର୍ତ୍ତମାନ ସେମିତି କିଛି ପର୍ବପର୍ବାଣି, ଯାନିଯାତ୍ରା, ମେଳା ମହୋତ୍ସବର ସମୟ ନାହିଁ । ବନ୍ୟାର ସମ୍ଭାବନା ନାହିଁ, ତେଣୁ ଏପିଡେମିକର ଭୟ ନଥିବ । କେବଳ ଦୁର୍ଘଟଣା, ପୋଷ୍ଟମର୍ଟମ । ତଥାପି କିଏ ଜାଣେ । ଅପର୍ଣ୍ଣା ଭାଗ୍ୟକୁ ବି ସବୁ ଅଘଟଣ ହିଁ ଥୁଆ ହୋଇଥାଏ । କିଛି ନହେଲେ ଉପରିସ୍ଥଙ୍କ ଇନ୍‌ସ୍ପେକ୍‌ସନ୍ । ତାଙ୍କ ଭଲମନ୍ଦ ନ ବୁଝି ଆସିବେ କେମିତି ! ଈଶ୍ୱର ସନ୍ତୁଷ୍ଟ ନ ହେଲେ ପଛେ ଚଳିବ । ଅନ୍ତର୍ଯାମୀ ସିନା ବୁଝିବେ ଅନ୍ତର କଥା । ସଂପଦବିପଦ କଥା, କ୍ଷମା କରିଦେବେ । ହେଲେ ଉପରିସ୍ଥ ତ ସମସ୍ତଙ୍କର ଊର୍ଦ୍ଧ୍ୱରେ । କଲମରେ ଗାରେ ଲେଖା, ଯଥେଷ୍ଟ ତମକୁ ଉଦ୍ବିବ୍ରତକ୍ଳାନ୍ତ କରିଦେବାପାଇଁ ।

ଦୀର୍ଘଶ୍ୱାସ ପକେଇଲା ଅପର୍ଣ୍ଣା । ଭାବିଲା, ଧନ୍ୟ ଆମର ଶାସନ ବ୍ୟବସ୍ଥା ! ତା' ସାଙ୍ଗକୁ ଧନ୍ୟ ଆମର ପ୍ରଭୁପଣ । ସିଂହାସନରେ ବସିଥିଲା ପର୍ଯ୍ୟନ୍ତ ସୂର୍ଯ୍ୟଚନ୍ଦ୍ର ବି ମାନିବେନି । ମଣିଷ ତ ଛାର । ଇଚ୍ଛେ ମୋଡ଼ି ହେବାକୁ ଚାରା ନାହିଁ ।

ଅଥଚ ନୀଳାଞ୍ଜନ ଅଦ୍ଭୁତ ମଣିଷ ! ଏମାନଙ୍କ ପ୍ରଭୁପଣକୁ ସିଧାସଳଖ ଅସ୍ୱୀକାର କରିବାକୁ ଯାଇ ଫାଇଲ ହିଁ ମୋଟା କଲେଣି । ତାଙ୍କ ପାଇଁ 'ମେଟର ଅଫ୍ ପ୍ରିନ୍‌ସିପଲ ନୋ କମ୍ପ୍ରମାଇଜ୍' ନୀତି ଆଗରେ ମୁଣ୍ଡ ନୁଆଁଇବା ଶିଖିନି । କାଉଁରିଆ କାଠି, ଭାଙ୍ଗିଯିବ ପଛକେ.... ।

ଅନେକଥର କହିଛି ଅପର୍ଣ୍ଣା । ଟିକିଏ ସାଲିସ୍ କରିବା ଶିଖ । କେତେ ହଇରାଣ ହେଉଛ । ତମରି ସାଙ୍ଗସାଥୀ ସବୁତକ ସୁବିଧା ମାରି ନେଇ ସହରରେ ପଦ୍ମାସନ ପକେଇ ବସିଛନ୍ତି । ସେମାନେ କ'ଣ ଏକା ଯୋଗ୍ୟ ନା ତମେ ଏକା ନାଁ ଲେଖେଇଛ ମଫସଲ ମଣିଷର ସେବା କରିବାକୁ । ଏଯାଏ କେବେ ତମେ ଦେଖିଲଣି ସହରର ମୁହଁ ?

ନିରୋଳା ହସଟିଏ ହସିଦେଇ ନୀଳାଞ୍ଜନ ପଚାରନ୍ତି, 'ତମର ଭାରି କଷ୍ଟ ହେଉଛିନା ? ମୋ ହାତ ଧରି ଭାରି ଦୁଃଖୀ ହେଲ, ମୁଁ ଜାଣିଛି ଯେ... ।'

'ଖାଲି ମୁଁ, ତମେ ହେଇନ ?' ମୁହଁ ଫଣକେଇ କହେ ଅପର୍ଣ୍ଣା । 'ମୋ କଥା ଛାଡ଼, ତମ କଥା କୁହ, ଛାଡ଼ିଦେବି ଏଇ ସଳଖବାଟ ?' ଉତ୍ତର ଥୁଅନ୍ତି ନିଳାଞ୍ଜନ ।

ମୁହଁ ଶୁଖିଯାଏ ଅପର୍ଣ୍ଣାର । କେଡ଼େ ନିଷ୍ଠୁର ମଣିଷଟା ସତେ ! ହେଲେ କିଛି କହିପାରେନା, ମୁହଁ ଶୁଖିଯାଏ । ଦୀର୍ଘ ନିଃଶ୍ୱାସ ପକାଏ । ମନେମନେ ଗୁଣୁଗୁଣୁ ହୁଏ । ସତକଥା ଯେ ସମସ୍ତେ କୁହନ୍ତି, ସଳଖବାଟ ସବୁବେଳେ ସଳଖ ହେଲେ ବି କଷ୍ଟ । ବାପା କହୁଥିଲେ ପିଲାଦିନ ଯାକ ଶୁଣିଥିଲା, ଶ୍ୱଶୁର ବି କହିଲେ, ଏବେ ଏଇ ମଣିଷଟା ବି ସେଇ କଥା କହୁଛି । ଅଥଚ ସେ ତ ଦେଖୁଚି ସଳଖ ବାଟଟା କେମିତି । କି ସୁଖ ମିଳୁଛି ଖାଲି ଅପେକ୍ଷା, ଦୀର୍ଘଶ୍ୱାସ ଆଉ ଆତଙ୍କିତ ମୁହୂର୍ତ୍ତ । ଏଇତ ସଳଖବାଟ କଥା ।' କଣ୍ଠରେ ବିଷଣ୍ଣତା ଫୁଟିଉଠେ ।

ବୁଝେଇବା ଢଙ୍ଗରେ କହନ୍ତି ନୀଳାଞ୍ଜନ, 'ସତକଥା, ଏଇ ସଙ୍ଗଖବାଟରେ ଚାଲିବାଟା ଭାରି କଷ୍ଟ । ସେଇଥିପାଇଁ ତ ସମସ୍ତେ ପାରନ୍ତିନି । ଏଇଟା ଗୋଟାଏ ସାଧନା ଭଳି । ଅଭ୍ୟାସରେ ପଡ଼ିଗଲେ ସହଜ ଲାଗେ । ଭୋକଶୋଷ ବାଧେନି । ପାଦରେ କଣ୍ଟା ଫୁଟେ । ହେଲେ କେହି ଆଙ୍ଗୁଠି ଦେଖେଇ ପାରନ୍ତିନି । ଟିକିଏ ରହି ପୁଣି ଭାବିଲା ଭଳି କୁହନ୍ତି, ମୁଁ ଜାଣିଛି ମୋ ସହିତ ଚାଲିବାକୁ ତମକୁ ନିଶ୍ଚୟ କଷ୍ଟ ଲାଗୁଥିବ, ହେଲେ ମୁଁ କ'ଣ କରିବି କୁହ, ଏଇଟା ଯେ ମୋର...'

'ନା, ନା ମୁଁ ସେକଥା କହୁନି, ତମ ରାସ୍ତା ହିଁ ମୋ ରାସ୍ତା । ତମ ପାଦ ହିଁ ମୋ ପାଦ, ଅଧାରୁ କଥା ଛଡ଼େଇ କୁହେ ଅପର୍ଣ୍ଣା । ସବୁ ବୁଝୁଛି ମୁଁ । ହେଲେ ଥରେ ଥରେ ଏମିତି ସମୟ ଆସୁଛି ଯେ ପାଦ ଟଳମଳ ହେଇଯାଉଛି । ମନେହେଉଛି, ଆଜି ପର୍ଯ୍ୟନ୍ତ ଯେତେସବୁ ଚିନ୍ତା ସିଦ୍ଧାନ୍ତ, ଘେନିଥିବା ଆଶ୍ୱାସନା, ଚାଲୁଥିବା ବାଟ ସବୁ ଭୁଲ । କେତେଦିନ ଏଇ ଶନିବାର, ରବିବାରକୁ ଚାହିଁଥିବ ମଣିଷ ! ସଂସାରର ଆଉମାନେ ତ ନିଶ୍ଚିନ୍ତରେ ଘର କରୁଛନ୍ତି, ନିଦକରେ ନିଦ ଯାଉଛନ୍ତି, ମୋ ଆଖିରୁ କାହିଁକି ନିଦ ହଜିଯାଉଛି, ଆମରି ଭାଗରେ ଯେତେକ ସଂଘର୍ଷ ଥୁଆ ହୋଇଛି !'

ବାଜେକଥା । ବିରକ୍ତିକର ମୁହଁ ବୁଲାଏ ଅପର୍ଣ୍ଣା । ଏକାବେଳକେ ଧର୍ମ ଯୁଧିଷ୍ଠିର । କଥା ଅଟକେ ସେଇଠି । ଅଯଥା ଯୁକ୍ତିତର୍କ ପାଇଁ ବେଳ ନଥାଏ । ଦିନଟିଏ କି ବେଶି ହେଲେ ଦି'ଟା ରହନ୍ତି ନୀଳାଞ୍ଜନ । ଚଳନ୍ତି ସଂସାରର ଅନେକ ସମସ୍ୟା, ଅନେକ ଦାବି, ଆବଶ୍ୟକତାକୁ ପୂରଣ କରିବାକୁ ପଡ଼େ । ଦାୟିତ୍ୱ ତୁଲେଇବାକୁ ହୁଏ । କର୍ତ୍ତବ୍ୟ ହିସାବ କରିବାକୁ ହୁଏ ଟିକିନିକି କରି । ପଦେ ସୁଖଦୁଃଖ ନ ହେଉଣୁ ସଞ୍ଜ ଗଡ଼ି ରାତି ହୁଏ । ସରିଯାଏ ନିର୍ଦ୍ଧାରିତ ସମୟ । ପୁଣି ସକାଳକୁ ଟ୍ରେନ୍ ଟାଇମ୍ ନହେଲେ ବସ୍ ଟାଇମ୍ ପାଇଁ ପ୍ରସ୍ତୁତି ତରବର ହୋଇ । ମନ ଡାକୁ ନଥାଏ ଯିବା ପାଇଁ, ତଥାପି ଅଭ୍ୟାସବଶତଃ ହାତ ବଢ଼ିଯାଏ ବ୍ରିଫ୍‌କେସ୍ ପାଖକୁ ଓ ପାଦ ଏରୁଣ୍ଡିବନ୍ଧ ଡିଏଁ । ସବୁ ଘଟିଯାଏ ଆପେ ଅଭ୍ୟାସ ଅନୁସାରେ । ଅଛିଣ୍ଡା କଥା, ଅସରା କାମ ବାକି ପଡ଼ିଯାଏ ଆରଥର ଶନିବାର, ରବିବାରକୁ ।

ପୁଣି ଅପର୍ଣ୍ଣା ଅପେକ୍ଷା କରେ ନୀଳାଞ୍ଜନଙ୍କ ଆସିବା ବାଟକୁ: ଅଧା କଥା, ଅଧା ବିଚାର, ଅଧା କାମର ଗଣ୍ଠିଲି ଧରି । ମନ ଭିତରେ ଭାବର ଚାପ ବଢ଼ିଗଲେ, ତାକୁ ଛାଙ୍କୁଣି ଚାପି ରଖିବାକୁ ହୁଏ ।

ଝରକା ସେପାଖେ ପାରାମାନେ ଘୁମୁରୁଛନ୍ତି । ଫଡ଼ଫଡ଼ ଶୁଭୁଚି ତାଙ୍କର ଡେଣାମାଡ଼ । ଧ୍ୟାନ ଭାଙ୍ଗି ଅପର୍ଣ୍ଣା ଚାହିଁଲା କାନ୍ଥ ଘଣ୍ଟାକୁ । ସମୟ ବାକି ଅଛି ଆହୁରି । ଶେଷ ଟ୍ରେନ୍ ଧରିବାକୁ । ଆସୁଥିବେ ନିଶ୍ଚୟ । ମନ ଡାକୁଚି, ହୁଏତ ଡେରି ହେଇଯାଇଥିବ କାମ ସରୁ ସରୁ ।

ଭାବୁଭାବୁ ଅପର୍ଣ୍ଣା ହସି ପକେଇଲା ମନକୁ ମନ । ଏଇ ମନ ଡାକିବା କଥା । ନୀଳାଞ୍ଜନ ମୋଟେ ବିଶ୍ୱାସ କରନ୍ତିନି । କୁହନ୍ତି, 'ଡାକୁଥିବ ତ । ଛିଗୁଲାନ୍ତି, ଏକାବେଳକେ ଡାକିଲାଣି, ଆଗତ ଭବିଷ୍ୟତ କହିପକେଇବ । ହଁ, ଏଇଆ କହିପାର ଆମଭଳି ଅସହାୟଙ୍କ ପାଇଁ ଏଇ 'ମନ' ଅଥବା 'ଈଶ୍ୱର' ଏକ ନିରୋଳା ଆଶ୍ୱାସନା ମାତ୍ର । ଯାକୁ ନେଇ ଆମେ ବଞ୍ଚୁ, ବାସ୍ ।'

ଅଜବ ମଣିଷଟିଏ ସତରେ ! ବୋଧେ ଶେଷ ଟ୍ରେନ୍ ଧରି ଆସିବେ । ବସ୍ ଧରି ପାରିନଥିବେ ତ । ଅପର୍ଣ୍ଣାର ମନଧ୍ୟାନ ପୁଣି ସେଇ ସମୟ ଓ ଟ୍ରେନ୍ ପାଖରେ ଯାଇ ଅଟକିଲା ଏବଂ ଆଖି ପହଞ୍ଚି ଯାଉଥିଲା ମଝିରେ ମଝିରେ ଝରକା ସେପାଖ ରାସ୍ତା ଉପରକୁ ।

ଅବଶ୍ୟ ଶେଷଟ୍ରେନ୍‌କୁ ନୀଳାଞ୍ଜନ ପ୍ରିଫର କରନ୍ତିନି । କୁହନ୍ତି- ରାତି ଅଧରେ ତମକୁ ସବୁ ହଇରାଣ କରିବି କାହିଁକି ? ବାପାବୋଉ ଥିବାବେଳେ ତ କହୁଥିଲେ- ବାପାବୋଉଙ୍କ ନିଦ ଭାଙ୍ଗିବ, ବ୍ଲଡ୍ ପ୍ରେସର ରୋଗୀ ସେମାନେ । ବୋଉ ବ୍ୟସ୍ତ ହେବ ପୁଅଟା କ'ଣ ଖାଇବ ଏତେ ରାତି ହେଲାଣି, ଅଟା ଚକଟ, ଆଳୁ ଟିକେ ଭାଜ, ବଡ଼ି ପାମଡ଼ ବି'ଟା ଛାଣି ଦେ । ଚକଳାଟା । ଓଳିଏ ରହି ଖାଇଥିବ କି ନାହିଁ ପୁଣି ଯିବାକୁ ତରତର ହେବ ।

ଭାବୁଭାବୁ ହସିଦେଲା ଅପର୍ଣ୍ଣା । ସତରେ ଇଏ କ'ଣ ମାସ, ବର୍ଷକର କଥା । ଇଏ ତ ଯୁଗେ ହେଲାଣି ଚାଲିଛି । ଧାଉଡ଼ିର ଜୀବନ ଯାରି ଭିତରେ ସବୁ । ଜୀବନର ସକାଳ ସଞ୍ଜ ଦେଖିବାର ସମୟ ନାହିଁ, ଭୋଗ କରିବାକୁ, ଅନୁଭବିବାକୁ ବି ବେଳ ନାହିଁ । ତା' ସାଙ୍ଗକୁ ସାମାଜିକ ସମ୍ପର୍କ, ବାହାନିମିତ, ପର୍ବପର୍ବାଣି, ରୋଗଯନ୍ତଣା ଶେଷରେ ବାପା ବୋଉଙ୍କ ମରଣ- ସବୁକୁ ସବୁ । ଜୀବନଟା କେତେବେଳେ ବି ଥିର ହେଉନି । ଏମିତି ସମୟ ଥିଲା ନୀଳାଞ୍ଜନ ଆସୁଥିଲେ ପ୍ରତ୍ୟେକ ଶନିବାର ରବିବାର, ଯେତେ ରାତି ହେଉ, ଚାରି ଛଅ ଘଣ୍ଟାର ରହଣି ହେଉ ପଛେ । ଟଙ୍କା ପାଣିପରି ଖର୍ଚ୍ଚ ହେଉଥିଲା । ଦେହରେ ତାକତ ଥିଲା, ମନରେ ଉତ୍ସାହ ଥିଲା । ଅବଶ୍ୟ ସେସବୁ ଦିନଗଡ଼ାକୁ ଜୀବନ ଆରମ୍ଭ କରିବାର ବେଳ । ଜୀବନ ସମୁଦ୍ର ଉଛୁଳୁଥିଲା ଆକାଶ ଜହ୍ନର ଜୁଆର ଆକର୍ଷଣରେ । ଆଗରେ ଥିଲା ଅନନ୍ତ ସମୟ । ଆଶା ଥିଲା, ସବୁଦିନେ ଏଇ ଦୁଃଖ ରହିବନି । ହେଲେ କିଛି ବଦଳିଲାନି । ଆଜିକାଲି ଅପର୍ଣ୍ଣା ପାଇଁ ତାଙ୍କର ଭାରି ଦରଦ, 'ବିଚାରୀ ରୋଗିଣା ହେଲାଣି, ରାତିଟାରେ ହଇରାଣ କରିବି କାହିଁକି, ସକାଳ ବସ୍ ଧରିବି ।'

ଏବଂ ଅପର୍ଣ୍ଣା ଏକଥା ଜାଣିବା ସତ୍ତ୍ୱେ ଅପେକ୍ଷା କରିଥାଏ । ଖାଇବା, ଶୋଇବା, ଗାଧେଇବା, ପଢ଼େଇବା ଭଳି ଏଇ ଅପେକ୍ଷା କରିବାଟା ବି ତା ରୁଟିନ୍ ଭିତରେ ପଶିଯାଇଛି । ଘରକାମ କରୁଥିଲାବେଳେ, ରୋଷେଇ ଘରେ ରାନ୍ଧୁଥିଲାବେଳେ, ଗାଧୁଆଘରେ ପଶିଥିଲା

ବେଳେ, କ୍ଲାସ୍‌ରୁମ୍‌ରେ ପାଠ ପଢ଼ାଉଥିଲାବେଳେ କିମ୍ବା ଟି.ଭି. ଦେଖୁଥିଲାବେଳେ ନହେଲେ ମାଗାଜିନ୍‌ରେ ଆଖି ବୁଲାଉଥିଲାବେଳେ କି କାହା ସଙ୍ଗେ ଗପୁଥିଲାବେଳେ କାନ କାହାର ପାଦଶବ୍ଦକୁ ଅପେକ୍ଷା କରିଥାଏ ଯେମିତି । ସବୁ ଭିତରେ ସେଇ ଗୋଟିଏ କଥା, କ୍ଷଣକର ପ୍ରତୀକ୍ଷା । ଏଇ ଆସୁଥିବେ, ଆସିବେ ତ, ଆସିପାରନ୍ତି, ଆସିଗଲେ ପରାର ମନସ୍କତା ତାକୁ ଅଧୀର କରିପକାଉଥାଏ । ମନସ୍କଭାବେ ହେଉ କି ଅନ୍ୟମନସ୍କ ଭାବେ ହେଉ, ନୀଳାଞ୍ଜନଙ୍କ ଉପସ୍ଥିତିକୁ ସେ ପ୍ରତିଟି ମୁହୂର୍ତ୍ତରେ ଅନୁଭବ କରିଆସିଛି । ଏମିତିକି ଥରେଥର ଗାଢ଼ନିଦରୁ ବି ସେ ଉଠିଆସି ଦାଣ୍ଡଦୁଆର ଖୋଲି ଦେଖିଛି, କଲିଂବେଲ୍‌ର ବାଜିବା ଭ୍ରମନେଇ । ଏଥିପାଇଁ କମ୍ ବିରକ୍ତ ହୋଇନାହାନ୍ତି ନୀଳାଞ୍ଜନ । 'ତମର ଏପ୍ରକାର ପାଗଳାମି ଦିନେ ବିପଦକୁ ଟାଣି ଆଣିବ ଦେଖୁଛି । ଏଥର ସଚେତନ ହୁଅ ପରିସ୍ଥିତି ପ୍ରତି ।'

ସେ କ'ଣ ଜାଣୁନି ନା ସଚେତନ ନୁହଁ- ମନକୁ ମନ କହିଲା ଅପର୍ଣ୍ଣା । ହେଲେ କ'ଣ ହେବ, ଜୀବନବ୍ୟାପୀ ଅଭ୍ୟାସର ପ୍ରଭାବ । ଗୋଟାଏ ପ୍ରକାରର ଧାରା ଅବଚେତନ ଭିତରେ ବସାବାନ୍ଧି ରହିଛି । କଣ୍ଡିସନଡ୍ ରିଫ୍ଲେକ୍ସ । ବୁଝିବିଚାରି କରିବା ପର୍ଯ୍ୟନ୍ତ ଅପେକ୍ଷା ରଖୁନି । ତିରିଶ ବର୍ଷର ଅଭ୍ୟାସ । ପଢ଼େଇବା ଶୈଳୀ ବଦଳିଛି । ଘରକରଣା ଢାଞ୍ଚା ବଦଳିଛି । ଦୃଷ୍ଟିକୋଣରେ ଫରକ ଆସିଛି, ହାତର ରାନ୍ଧଣା ବି ତା' ସ୍ୱାଦ ବଦଳେଇଛି, ହେଲେ ଏଇ ଯୋଉ ପ୍ରତୀକ୍ଷା ନୀଳାଞ୍ଜନ ପାଇଁ- ସେଇଟା କ'ଣ ବଦଳିଛି କି ? କିଏ ବିଶ୍ୱାସ କରୁ ନକରୁ, ଏଇଟା ହିଁ ସତ । ଦିନରାତି ଭଳି, ସଞ୍ଜ ସକାଳ ଭଳି ସତ ।

ଅନେକ ଡାକ୍ତର ଅଛନ୍ତି ରାଜ୍ୟ ସରକାରଙ୍କର । ନୀଳାଞ୍ଜନ ବି ଜଣେ ଡାକ୍ତର । ରାଜ୍ୟସାରା ବୁଲି ସାରିଲେଣି ଲୋକଙ୍କୁ ସେବା କରିବାପାଇଁ । କାହାଣୀ ଯୁଗର ଅଗ୍ନାଗ୍ନି ବନସ୍ତ ସିନା ନାହିଁ, ହେଲେ ଦୁର୍ଗମ ପାହାଡ଼ିଆ ଅଞ୍ଚଳ, ପାଣି ଘେରି ଅଞ୍ଚଳ, ନିପଟ ଗାଁ ଗହଳିମାନଙ୍କରେ କାମ କରି ଓଡ଼ିଶାର ଆତ୍ମାକୁ ଚିହ୍ନି ସାରିଲେଣି । ଜନତାର ଅତିପ୍ରିୟ ଡାକ୍ତର ନୀଳାଞ୍ଜନ କିନ୍ତୁ ନିଜର ନୀତିଗତ ଆଦର୍ଶ ପାଇଁ ସରକାରଙ୍କ ପ୍ରିୟପାତ୍ର ହୋଇପାରିନାହାନ୍ତି । ହେଇଥିଲେ, ସହର ଛାଡ଼ି ଜୀବନଟା ସାରା ଏମିତି ବୁଲିନଥାନ୍ତେ । ଆଉ ନିଜେ ଅପର୍ଣ୍ଣା ଜଣେ ଅଧାପିକା ସରକାରୀ କଲେଜରେ । ଚାକିରି କ୍ଷେତ୍ରରେ କୌଣସି ମେଳ ନାହିଁ । ତେଣୁ ନୀଳାଞ୍ଜନଙ୍କ ଜୀବନ ପରିଧି ଭିତରକୁ ପଶିଲାବେଳଠୁ ଅପର୍ଣ୍ଣାର ଆରମ୍ଭ ହୋଇଯାଇଛି ଏଇ ଅପେକ୍ଷାରେ ଅଭ୍ୟାସ- ଶନିବାର ରବିବାର ପାଇଁ ।

ତା' ଭିତରୁ ମାତ୍ର ତିନୋଟିବର୍ଷ କେମିତି କେଜାଣି ଦୁହିଁଙ୍କର ଏକାଠି ପୋଷ୍ଟିଂ ହୋଇଥିଲା ସୁଦୂର ପଶ୍ଚିମ ଓଡ଼ିଶାରେ । ସେଇତକ ସମୟ ଜୀବନରେ ଭୁଲିବାର ନୁହେଁ । କେତେ ସହଜ ଆଉ ସ୍ୱଚ୍ଛନ୍ଦ ଗତିରେ ଗଡ଼ିଯାଇଥିଲା ଜୀବନ ! ଆଶ୍ଚର୍ଯ୍ୟ ଲାଗେ ଭାବିଲେ । ଲାଗିଥିଲା ତିନିବର୍ଷ ନୁହେଁ, ତିନି ଘଣ୍ଟା । ଆସିଗଲା ପ୍ରମୋସନ୍‌ର ବେଳ । ପୁଣି ବଦଳିଲା ଷ୍ଟେସନ୍ । ଜୀବନ ପଡ଼ିଲା ପୁରୁଣା ଛନ୍ଦରେ ।

ନୀଳାଞ୍ଜନ ଭିନ୍ନ ସ୍ୱଭାବର । ନୀତି ପାଖରେ ସାଲିସ୍ ନାହିଁ । ଅନେକ ବନ୍ଧୁ ହିତାକାଂକ୍ଷୀ ସାଜି ବୁଝେଇଛନ୍ତି । 'ସବୁ ଅସମ୍ଭବ ସମ୍ଭବ ହୋଇଯିବାରେ, କେବଳ ଜାଣି ରଖ କେତେବେଳେ କୋଉ ସୁଇଚ୍‌ଟା ଟିପିବାକୁ ହେବ । ତେଣିକି ସବୁ ସହଜ ହୋଇଯିବ ।'

କିନ୍ତୁ ନୀଳାଞ୍ଜନ ଅଟଳ ମେରୁ । ନିଜ କ୍ରିୟା ପ୍ରତିକ୍ରିୟାକୁ କେବେ କାହା ଆଗରେ ପ୍ରକାଶ କରନ୍ତିନି । ଖାଲି ଶୁଣନ୍ତି ଅନ୍ୟମନରେ ଦୁଃଖ ଦେବେନି ବୋଲି । ଏବଂ ପ୍ରତୀକ୍ଷା କରନ୍ତି ସମୟକୁ, ଅପେକ୍ଷା ରଖନ୍ତି ଶନିବାର, ରବିବାରକୁ ଓ ଅପର୍ଣ୍ଣାକୁ । ଅପର୍ଣ୍ଣା ହିଁ ତାଙ୍କର ବନ୍ଧୁ । ନିଜକୁ ଖୋଲିବା ପାଇଁ ଏକ ନିରୋଳା ଆଶ୍ୱାସନା, ତାଙ୍କ ଅସ୍ତିତ୍ୱର ଖୋଳ, ଏକ ସହଜ ଭାବଭୂମି । ଅପର୍ଣ୍ଣା ପାଖରେ ଥିଲେ ତାଙ୍କ ନିଃଶ୍ୱାସପ୍ରଶ୍ୱାସ ସତେ ଯେମିତି ସହଜ ସ୍ୱଚ୍ଛନ୍ଦ ଗତିକୁ ଲେଉଟି ଆସେ । ନିଜକୁ ସହଜ ଅନୁଭବ କରନ୍ତି । ଯେମିତି ସମୁଦ୍ର ଭିତରେ ନଉକାଟିଏ ନିରାପଦ ଆଶ୍ରୟସ୍ଥଳକୁ ଫେରିଆସିଛି ।

ମୁହଁ ଶୁଖାଏ ଅପର୍ଣ୍ଣା । କେବେ ସ୍ଥିରହେବ ଏ ଜୀବନ ? ଅସହ୍ୟ ଲାଗୁଛି ଏଣିକି । ବୟସ ବଢୁଛି । ରୋଗ, ବ୍ୟାଧି, ଯନ୍ତ୍ରଣାକୁ ସାମ୍ନା କଲାଭଳି ଦମ୍ଭ ଆଉ ନାହିଁ ।

ନୀଳାଞ୍ଜନ ତା' ଶୁଖିଲା ମୁହଁକୁ ଚାହିଁ ଦୟାର୍ଦ୍ର ହେବା ପରିବର୍ତ୍ତେ ଏଣିକି ବିରକ୍ତ ହୁଅନ୍ତି, 'ବାରମ୍ବାର ମୋ ଆଗରେ ଦୁଃଖୀ ହେଉଛ କାହିଁକି ? ତମେ ଜାଣ, ମୁଁ ପାରିବିନି ଅନ୍ୟମାନଙ୍କ ଭଳି ତଳକୁ ଖସି । ନିଜକୁ ଏକାଏକା ଚଳେଇନେବା ପାଇଁ ଶିଖ । ମୁଁ ଯଦି ତଳକୁ ଖସିବି ତମେ ସୁଖୀ ହେବ ?'

ହେ ଭଗବାନ୍ ! କି ଅଦ୍ଭୁତ ମଣିଷ ସତରେ ! ବିସ୍ମୟରେ ଚାହେଁ ଅପର୍ଣ୍ଣା ତା' ମନର ମଣିଷଟିକୁ । ଏ କ'ଣ ପଚାରୁଛନ୍ତି ନୀଳାଞ୍ଜନ ! ସେ କ'ଣ କେବେ ଅସୁଖୀ ହୋଇଛି ! ନୀଳାଞ୍ଜନ ତ ତା' ତପସ୍ୟାର ଫଳଶ୍ରୁତି । ଅନେକଙ୍କର ତ ଅନେକ କିଛି ଅଛି ଗର୍ବ କଲାଭଳି । ହେଲେ ତା'ର କ'ଣ ଅଛି ! ଏକା ନୀଳାଞ୍ଜନ । ଗର୍ବ କଲାଭଳି ମଣିଷଟିଏ । ହଁ । ନୀଳାଞ୍ଜନ ତା'ର ଗର୍ବ, ତା'ର ଗୌରବ । ତା'ର ଅଭିମାନ । ଈର୍ଷା କଲାଭଳି ମଣିଷ । ବାରି ହେଇଗଲା ଭଳି ମଣିଷ । କେବଳ ତା'ର ଅଛି । ଏକଥା ଅଧ୍ୟାପକ ବନ୍ଧୁ ଅରବିନ୍ଦ କୁହେ, ଦୁଃଖ କଲେ ମନେ ପକେଇଦିଏ ବାରମ୍ବାର ।

ଭାବୁଭାବୁ ଅପର୍ଣ୍ଣା ସଚେତନ ହେଇଗଲା । ଆରେ ! କ'ଣ ସିଏ ଭାବୁଛି ଆବୁରୁଜାବୁରୁ କରି ! ନିଜ ମଣିଷଟାକୁ ନିଜେ ଆଖି ପକଉଚି । ହେ ଈଶ୍ୱର ! ସେ ଭଲକଥା କରୁନି, କ୍ଷମା କରିଦିଅ । ସେ ଯୋଉଠି ଥା'ନ୍ତୁ ଭଲରେ ଥା'ନ୍ତୁ ତାଙ୍କ ଭଳିଆ ହୋଇ । ଆଖି ସାମନା କାଚ ଆଲମିରା ଭିତରେ ବଡ଼ବଡ଼ ଆଖିରେ ଚାହିଁଛନ୍ତି ପତିତପାବନ । ଏପଟକୁ ଅର୍ଦ୍ଧନିମୀଳିତ ନେତ୍ରରେ ପରମଯୋଗୀ ଶିବ ନିର୍ବିକାର ନକରାତ୍ମକ । ହାତଯୋଡ଼ିଲା ଅପର୍ଣ୍ଣା । ଦିନ ଦିନ ବର୍ଷ ବର୍ଷ ଧରି ସେ ହାତଯୋଡ଼ିଛି ଏଇଠି, ସାହସ ସଞ୍ଚିଛି । କୃତଜ୍ଞ ହେଇଛି । ପ୍ରଭୁ, ତମେ

ମୋତେ ଅନେକ ଦେଇଛ, ବିଶେଷ କରି ନୀଳାଞ୍ଜନଙ୍କୁ । ଭଲରେ ରଖିଥାଅ । ପାଦତଳ ଦମ୍ଭ ହୁଏ ତା'ର ।

ସେ ସତରେ ଭାଗ୍ୟବାନ୍ ଅରବିନ୍ଦ ଭାଷାରେ । ଦୁଃଖୀ ହେବ କାହିଁକି ? ନୀଳାଞ୍ଜନଙ୍କୁ ସେ ବ୍ୟସ୍ତ ହେଇ ଉତ୍ତର ଦିଏ, 'ନା ନା, ଏଇଟା ତମର ଅପାରଗତା ନୁହେଁ, ତମେ ନଇଁବ, ମୁଁ ସହି ପାରିବିନି । ତମର ସେଇ ଟେକି ହୋଇଥିବା ମୁଣ୍ଡ ହିଁ ତମକୁ ସାଜେ, ସେଇଟା ତମ ପରିଚୟ, ତମ ବ୍ୟକ୍ତିତ୍ୱ । ସେଇ ଚେହେରା ହିଁ ମୁଁ ଦେଖିଆସିଛି ।'

ମୁଗ୍ଧ ହୋଇ ଚାହାନ୍ତି ନୀଳାଞ୍ଜନ । ଅନ୍ତରଙ୍ଗତାର ଆବେଗରେ କଣ୍ଠ ରୁଦ୍ଧ ହୋଇ ଆସେ । କୁହନ୍ତି 'ତମର ଏକଥା ପଦକ, ବିଶ୍ୱାସ କରିପାରିବନି ଅପର୍ଣ୍ଣା, ମୋ ଆତ୍ମବିଶ୍ୱାସକୁ କେତେ ଦୃଢ଼ କରିଦେଇଛି । ଜୀବନର ନୂଆ ଅର୍ଥ ମୁଁ ଖୋଜିପାଇଛି । ଲାଗୁଛି, ଜୀବନ ସତରେ ସୁନ୍ଦର । ଏଇ ତା'ର ସଂସାର । ନୀଳାଞ୍ଜନ ଅପର୍ଣ୍ଣାର ସଂସାର । ଶନିବାର ରବିବାରର ସଂସାର । ଅପେକ୍ଷାର ସଂସାର ।

ଏଥିରେ ବି ସରକାର ବାହାଦୂର ଅସନ୍ତୁଷ୍ଟ । ଉପରିସ୍ଥଙ୍କର ହଜାର ଅଭିଯୋଗର ଫର୍ଦ୍ଦ । ତମର ନିଷ୍ଠା ନାହିଁ କାମ ପ୍ରତି । ଅନୁପସ୍ଥିତ ରହୁଛ କର୍ମକ୍ଷେତ୍ରରେ ଇତ୍ୟାଦି ଇତ୍ୟାଦି । ଠିକ୍ ସେମିତି ଅପର୍ଣ୍ଣା ପାଇଁ ବି ଟୀକା ଟିପ୍ପଣୀ, ତାଚ୍ଛଲ୍ୟ କଟୂକ୍ତି ମନ୍ତବ୍ୟ ସହକର୍ମୀ ବନ୍ଧୁମାନଙ୍କ ଠୁଁ, ଆମ ସହିତ ସହଯୋଗ କରୁନ, ଆଲୋଚନାରେ ଭାଗ ନଉନ, ପିକ୍‌ନିକ୍ ଯାଉନ । ମନ ଖୁସିରେ ବି ଗପିବାକୁ ବେଳ ନାହିଁ ତମ ପାଖରେ । ସବୁକଥାକୁ ନା ନାହିଁ । ଏ ପ୍ରକାର ଅସହଯୋଗର ମାନେ କ'ଣ ?'

ଅପର୍ଣ୍ଣା ଶୁଣେ, ପଛରେ ସେମାନେ ଆଲୋଚନା କରନ୍ତି, 'ଏଇଟା ମାଡାମ୍‌ଙ୍କର ମିଡ଼ିଲ୍‌କ୍ଲାସ୍ ମେଣ୍ଟାଲିଟି । ନହେଲେ କାହା ସ୍ୱାମୀ ବିଦେଶ ନଯାଉଛନ୍ତି ଯେ... !'

ସେଦିନ ତରୁଣ ଅଧ୍ୟାପକ ସୁତନୁ ମହାନ୍ତି କହି ପକେଇଲା ବୟସର ମାନ୍ୟତାକୁ ପଛରେ ଠେଲି ଦେଇ, 'ସତରେ ଅପା, ଏ ବୟସରେ ବି ଆପଣ ଅପେକ୍ଷା କରୁଛନ୍ତି ଭାଇନାଙ୍କୁ, ସପ୍ତଦଶ ଶତାବ୍ଦୀର ନାୟିକା ଭଳି କାୟମନୋବାକ୍ୟରେ । ଆଶ୍ଚର୍ଯ୍ୟ ! ଆଖିରେ ଏବେବି ସେଇ ପ୍ରେମର ବିହ୍ୱଳତା ।' ଓଠରେ ଛୋଟ ଜଣାନଜଣା ତାଚ୍ଛଲ୍ୟର ହସଟିଏ ଉକୁଟେଇ ସୁତନୁ କଥା ସାରିଲା ।

ଭଲ ଲାଗିନଥିଲା ଅପର୍ଣ୍ଣାକୁ । ତରୁଣ କବିର ସାହସ ତ କିଛି କମ୍ ନୁହେଁ ! ନିଜକୁ ସେ କ'ଣ ବୋଲି ଭାବୁଛି କେଜାଣି । ତା'ର ଧାରଣା ଥିଲା ଲେଖକମାନେ ଉଦାର । ତାଙ୍କ ହୃଦୟ ଅନେକ ବଡ଼ । ସେଠି ପୃଥିବୀଯାକର ସୁଖଦୁଃଖ, ଲୁହ ଅଭିମାନ ବେଦନାଦରଦକୁ ଗ୍ରହଣ କରିବାପାଇଁ ସ୍ଥାନ ଅଛି, ହେଲେ ସବୁ ମିଛ । କଲମରେ ଅନୁଭବର ଭାଷା ନାହିଁ । ସେ ସବୁ ଅନୁକରଣର ଭାଷା । ନିଜ ପ୍ରସାର ପ୍ରଚାର ପାଇଁ ବିକଳପଣ । ଅନ୍ୟର ଅନୁଭବକୁ

ନିଜର ଅନୁଭବରେ ଆଣୁଥିବା ଲେଖକଟିଏ କେବେ ବି ଅନ୍ୟର ଦୁର୍ବଳତା ଉପରେ ଟିପ୍ପଣୀ କରିପାରିବନି । ଛାଡ଼୍ । ମନକୁମନ ଅପର୍ଣ୍ଣା ବିସ୍ଥାପିତ ମନରେ ସ୍ୱଗତୋକ୍ତି କଲା । ସାନ ମନ ସାନ ହୃଦୟ । କ'ଣ ଆଉ କହିବ ଏଇ ଦରିଦ୍ରମନା ଈର୍ଷୁକ ମଣିଷମାନଙ୍କୁ । ତଥାପି କହିଥିଲା, 'ପ୍ରେମ କ'ଣ ସ୍ଥାନ-କାଳ-ପାତ୍ରର ଅପେକ୍ଷା ରଖେ ସୁତନୁ ? ତମେ କହୁଛ ଏକଥା ? ମୁଁ ତ ଜାଣିଛି ପ୍ରେମ କାଳାତୀତ । ତେବେ କୋଉଠି ଲେଖା ହୋଇଛି କି, ଏତିକି ବୟସରେ ପ୍ରେମ କରିବ, ଏତିକି ବୟସରେ ବୈରାଗ୍ୟ ନେବ ? ଲେଖା ଅଛି ?

ଟିକିଏ ଅପ୍ରସ୍ତୁତ ହୋଇଗଲା ସୁତନୁ । ନିଜକୁ ସଜାଡ଼ି ସାଙ୍ଗେସାଙ୍ଗେ ଉତ୍ତର ଦେଲା, 'ନାହିଁ ମ, କହୁକହୁ କହିଦେଲି ନା, ଆପଣ କ'ଣ ଖରାପ ଭାବିଲେ ? ଭେରି ସରି ପ୍ଲିଜ୍ ।'

'ନାହିଁ ସୁତନୁ, କଥା ଖରାପ ଲାଗିବା ନ ଲାଗିବାଠି ନାହିଁ । ମୁଁ ତ ତମଠୁ ଅନେକ ବଡ଼ ବୟସରେ । ମୁଁ କେବଳ ତୁମମାନଙ୍କ ମାନସିକତାକୁ ବୁଝିବା ପାଇଁ ଚେଷ୍ଟା କରୁଛି । ତମେମାନେ ଚାରିଟା ଦିନର ସୋ କଲଡ୍ ବିରହକୁ ସହ୍ୟ କରିପାରନି ବୋଲି ନିଜେ ସ୍ୱୀକାର କରୁଛ । ଚାରିଦିନ ତ ଦୂରକଥା ମୁଁ ଦେଖୁଛି ଚାରିଘଣ୍ଟା ବି ସହିବା କଷ୍ଟକର । ସେଲ୍ ଫୋନ୍ ଡାକୁଚି ଅଥୟ ହୋଇ- କୋଉଠି ଅଛ, କେମିତି ଅଛ, ଗାଡ଼ିଧରି ବାହାରକୁ ବାହାରିଲେ ମନ ଛକପକ, ମେସେଜ୍‌ଟିଏ ବି ଦେଇପାରୁନ, ଶୀଘ୍ର ଆସ ଅପେକ୍ଷା କରିଛି ଖାଇବା । ଆଉ ତମେ କ୍ଲାସ୍ ସରୁ ନସରଣୁ ଏକମୁହାଁ ହୋଇ ଧାଉଁଛ ଘରକୁ... ମିଛ କଥା ସୁତନୁ ?' ଅପର୍ଣ୍ଣା ପଚାରେ ସୁତନୁର ମୁହଁକୁ ସିଧାସଳଖ ଚାହିଁ । ହସିଦିଏ ସୁତନୁ ଟିକିଏ । ଲଣ୍ଡଭଣ୍ଡହୋଇ କୁହେ, 'ମାଡ଼ାମ୍, ଅଭ୍ୟାସଗତ ହୋଇଗଲାଣି, ଏକାଠି ଖାଇବା ।'

'ଆଉ ମୋ ପାଇଁ ? ନା ସୁତନୁ, ମୁଁ ତମ ସାଙ୍ଗେ ବାଦ କରୁନି, କହିବାକୁ ସୁଯୋଗ ଦେଇଛ ବୋଲି କହୁଛି । ମୋତେ ତ ଖୁସି ଲାଗେ କାହାର ମଧୁର ଦାମ୍ପତ୍ୟ ଜୀବନ ଦେଖିଲେ । ଅଥଚ ମୁଁ ଦୀର୍ଘ ତିରିଶ ବର୍ଷ ଧରି ଅପେକ୍ଷା କରୁଛି ଗୋଟାଏ ରବିବାରକୁ, ମୋ' ସଂସାରକୁ ପୂର୍ଣ୍ଣାଙ୍ଗ କରିବାକୁ । ଅଥୟ ହେବା ବୟସରେ ମୁଁ ଅଥୟ ହୋଇନି । ମୋ ବିଶ୍ୱାସ, ମୋ ଅଙ୍ଗୀକାର, ମୋ ଭଲପାଇବା କେବେ ଝୁଣ୍ଟିନି କି ପ୍ରଶ୍ନବାଚୀ ସୃଷ୍ଟି କରିନି । ତମେମାନେ ଅନେକ ଟିପ୍ପଣୀ କରିଆସିଛ କିନ୍ତୁ ମୋ' ଉପରେ କିଛି ପ୍ରଭାବ ପକେଇନି । କହୁକହୁ ଅପର୍ଣ୍ଣାର କଣ୍ଠରୁଦ୍ଧ ହୋଇଆସେ । ଏବଂ କୁହେ, 'ଯାଅ ସୁତନୁ, ଅପେକ୍ଷା କରିଥିବ ଶ୍ରୀମତୀ, ଭୋକ ଲାଗିବଣି ତାକୁ । ଅନେକ ସମୟ ନଷ୍ଟ କଲି ତମର ।'

ଏଇମିତି ଅପର୍ଣ୍ଣା କେତେ କଥା ଟାଳି ଆସିଚି । ଷ୍ଟଡିଟୁର୍ ହେଉ ପିକ୍‌ନିକ୍ ହେଉ, ଏମିତିକି ସେମିନାର, ଡ୍ରାମା, ଭଳି ଅନେକ ଫଙ୍କସନ୍ କଲେଜର ହେଉ କି ବନ୍ଧୁଙ୍କର ହେଉ, ଯାଇପାରିନି, ଅପେକ୍ଷା କରିଛି ନୀଳାଞ୍ଜନକୁ । ସଂସାର ମୁଖ୍ୟ ହୋଇଛି ସେତେବେଳେ । ଅନ୍ୟମାନଙ୍କ ଖୁସି ଅଖୁସି ପ୍ରତି ଧ୍ୟାନ ଦେଇପାରିନି । ଜାଣୁଛି, ତା'ର ପ୍ରିୟ ଛାତ୍ରଛାତ୍ରୀମାନେ,

ଯେଉଁମାନେ ଦୁର୍ଗମ ସ୍ତରକୁ ଯାଇପାରିନାହାନ୍ତି, କେବଳ ସ୍ନେହସୂତ୍ରରେ ଛନ୍ଦି ହୋଇଛନ୍ତି, ସେମାନେ ଦୁଃଖ କରିଛନ୍ତି- ତାଙ୍କ ନିର୍ଭ୍ରତା ଭଲ ପାଇବା ଆହତ ହେଇଛି ଆଉ ସେମାନଙ୍କ ଶୁଖିଲା ମୁହଁ ଦେଖି ତା' ଛାତି କରତି ହେଇଯାଇଛି । ନିରୁପାୟ ହୋଇ ପିଲାଙ୍କୁ ଆଦର କରି ବୁଝାଇଛି ନିଜ ଅସୁବିଧା କଥା । ସେମାନେ ବୁଝିଛନ୍ତି, କାରଣ ସେମାନେ ମାଡ଼ାମ୍‌ଙ୍କୁ ଭଲପାଆନ୍ତି କେବଳ ଭଲପାଇବା ପାଇଁ । ଫେରିଲାବେଳକୁ କୁହନ୍ତି, ଠିକ୍ ଅଛି ମାଡ଼ାମ୍ ଆପଣଙ୍କ ଖୁସି ହିଁ ଆମର ଖୁସି । ଭାବୁଭାବୁ ଅପର୍ଣ୍ଣା ଉଲ୍ଲସିତ ହେଲା ଏବଂ ତା' ମନ ଓଦା ହୋଇଗଲା, ମନେମନେ କଲ୍ୟାଣ କଲା ପିଲାଙ୍କୁ, 'ଜୀବନ ତମର ପୁଷ୍ପିତ ହେଉ ପିଲାଏ, ସୁଖୀ ହୁଅ ।'

ହଠାତ୍ ଆଖି ପହଁରିଗଲା କାନ୍ଥଘଣ୍ଟା ଆଡ଼କୁ । ଘଣ୍ଟାକଣ୍ଟା ଅଟକି ଯାଇଚି କି, ଚାଲୁନି ! କେଜାଣି ବ୍ୟାଟେରୀ ସରିଯାଇଥିବ । ପାଖକୁ ଯାଇ ନିରେଖି ଚାହିଁଲା, ନାହିଁ ଚାଲୁଛି । ଭାବିଲା, ଘଣ୍ଟାକଣ୍ଟା ଅପେକ୍ଷା ମନ ଆହୁରି ଶୀଘ୍ର ଦୌଡୁଛି । ସମୟକୁ ପଛରେ ପକେଇ ଧାଉଁଛି । ଝରକା ବାଟେ ଚାହିଁଲା, ପାଖ ଘରର ଝିଅ ରିନି ଆଖିରେ ଆଖି ପଡ଼ିଗଲା । ସେ ଡାକିଲା, 'ଆସୁନ ମାଉସୀ ଆମ ଘରକୁ, ଖାଇବାବେଳ ତ ହୋଇନି ଆହୁରି ।'

ଗଲେ ବି ଚଳିଥା'ନ୍ତା । ସମୟର ଉତ୍ସୁକତାକୁ ଗପ କରୁକରୁ କଟେଇ ଦେଇ ହୁଅନ୍ତା, ହେଲେ ଇଚ୍ଛା ହେଲାନି, ମନା କରିଦେଲା । ଆଉ ଦିନେ ଯିବି । କାରଣ ଏମିତି ବି ହେଇଛି, ସେ ମାତ୍ର ଯାଇଥିବ, ହଠାତ୍ ନୀଳାଞ୍ଜନ ଆସି ପହଞ୍ଚିଯିବେ ଅପ୍ରତ୍ୟାଶିତ ଭାବେ । ଖବର ପାଇ ଆସୁଆସୁ ଦେଖିବ, ନୀଳାଞ୍ଜନ ଘର ଭିତରେ ଅଛନ୍ତି ।

ଆକାଶେ ଖୁସି ତ ଅଛାଡ଼ି ହୋଇ ପଡ଼ିବ ତା' ପଣତରେ ସତ, ହେଲେ ସେ ଜାଣିଥିଲେ ଅପେକ୍ଷା ତ କରିଥା'ନ୍ତା କୁଆଡ଼େ ନଯାଇ । 'ଆଗରୁ ଜଣେଇ ନଥିଲ ତ.... ।'

'ସରପ୍ରାଇଜ୍ ଦେବାକୁ ଇଚ୍ଛାହେଲା ।' ହସି ହସି କହନ୍ତି ନୀଳାଞ୍ଜନ । ଆଗରୁ ଜାଣିଥିଲେ ତମେ କ'ଣ ଏତେ ଖୁସି ହେଉଥା'ନ୍ତ । ତମେ ଜାଣ, ତମେ ଖୁସି ହେଲେ ମୋତେ ଖୁସି ଲାଗେ । ଅଭିମାନ କରେ ଅପର୍ଣ୍ଣା, 'ସବୁକଥା ତମେ ମଜାରେ ଉଡ଼େଇ ଦିଅ ।' ଏବଂ ତରବର ହୋଇ ଖାଇବା ବ୍ୟବସ୍ଥା କର । ଭଲ ପରିବାପତ୍ର କେତେବେଳେ ଥାଏ ନଥାଏ ।

ଭାବେ, ସତରେ ନୀଳାଞ୍ଜନ ନଥିଲେ ଘର ଘର ଭଳି ଲାଗେନା, ଲାଗେ ଦିଅଁ ନଥିବା ମନ୍ଦିର ଭଳି । ନା ଦୀପ ଧୂପର ବାସ୍ନା, ନା ମଣିଷର ଆତଯାତ । ଖାଲି ନିଛାଟିଆପଣ ।

ନୀଳାଞ୍ଜନଙ୍କ ମନପସନ୍ଦର ଖାଇବା ସଜାଡୁ ସଜାଡୁ ଭାବିଲା- କେବେ ସରିବ ଏଇ ପ୍ରତୀକ୍ଷାର ଜୀବନ କେଜାଣି ? ହିସାବ କରିବାକୁ ଡର ଲାଗୁଛି । ଥାଉ ପୁଣି ଚାହିଁଲା ଝରକାବାଟେ ରାସ୍ତାକୁ । ଏଇଟା କ'ଣ କୃଷ୍ଣପକ୍ଷ କି ? ଅନ୍ଧାର ଦିଶୁଛି । ଆକାଶରେ ଜହ୍ନ

ନାହିଁ । ଜହ୍ନଥିଲେ ବି ଦିଶିବନି ଖୁନ୍ଦାଖୁନ୍ଦି ଆପାର୍ଟମେଣ୍ଟ ଭିତରୁ । ତଥାପି... ହଠାତ୍ ଅପର୍ଣ୍ଣା ମନକୁ ଆଉ ପ୍ରକାରେ ଚିନ୍ତା ପଶିଆସିଲା ଅଜଣା ବାଟୋଇ ଭଳି । ବୋଉ ଥିଲେ ତ ଏଇ ଅନ୍ଧାରୁଆ ରାସ୍ତାକୁ ଦେଖି ବଜର ବଜର ହୋଇଥାନ୍ତେ । ପିଲାଟା କିମିତି ଆସିବ ଅନ୍ଧାରରେ, କୁକୁର, ଷଣ୍ଢ, ମଦୁଆ ତ ସବୁଠି । ଇଏ କ'ଣ ରାଜଧାନୀର ରାସ୍ତା, କିଏ କହିବ !

ଏଥର ଅପର୍ଣ୍ଣା ନିଜ ଭିତରକୁ ଛିଟିକି ଆସି ଅନ୍ଧାରର କାରଣ ଖୋଜି ବସିଲା । ଦି'ଟା ଯାକ ଲାଇଟ୍‌ପୋଷ୍ଟ୍‌ରେ ଆଲୁଅ ନାହିଁ । କର୍ପୋରେସନ୍‌ର ବି ଜିଦି । ବଲବ୍ ଲଗେଇବନି । କେବେ ପ୍ରାୟ ନଥାଏ ଆଲୁଅ । ଏ ଦେଶର ଭାଗ୍ୟରେ ଅନ୍ଧାର ହିଁ ଅଛି । ଆଲୁଅ ପାଇଁ ସ୍ପୃହା କୋଉଠୁ ଆସିବ ? ଦେଶଟା ଯାକ ତ ଯନ୍ତ୍ର ଜାନୁଆର । କେବେ ଥିଲା ଏଇ ରାଜ୍ୟର ଗର୍ବଗୌରବ, ସାଂସ୍କୃତିକ ଚେତନା । ଏବେସବୁ ପାଷ୍ଟଟେନ୍‌ସ । ଖାଲି ଭାଷଣବାଜି ଅଛି । ଶସ୍ତା ପଲିଟିକ୍‌ସ ଅଛି । ଅପର୍ଣ୍ଣା ଦେଖିଲା, ତଥାପି ସେଇ ଛାଇ ଅନ୍ଧାର ଭିତରେ ଚାରିଜଣ ମୁହଁକୁମୁହଁ ଯୋଡ଼ି ଆଲୋଚନାରେ ମଗ୍ନ । କି ଆଉ ଆଲୋଚନା ! କ୍ରିକେଟ୍ ଖେଳ ଚାଲିଛି ତ ସେଇକଥା ପଡ଼ିଥିବ । ପାଠପଢ଼ା, ଅଫିସ୍‌କାମ ସବୁ ତ ଠପ୍ ଏଇ କ୍ରିକେଟ୍ ନିଶାରେ । ଅପର୍ଣ୍ଣା ସିରିୟସ୍ ହେଇ ଭାବିଲା, କେମିତିକା ସମୟ ଆସି ପହଞ୍ଚିଛି, ସବୁକୁ ହାଲୁକା ଭାବରେ ହିଁ ଗ୍ରହଣ କରୁଛନ୍ତି । ଫୂର୍ତ୍ତିଟା ହିଁ ବେଶୀ ମାନେ ରଖୁଛି । ପରଚର୍ଚ୍ଚା, ଖେଳଦେଖା ନହେଲେ ପାର୍ଟି ଉଇକ୍‌ଏଣ୍ଡ୍‌ରେ । ନୂଆ ସଭ୍ୟତାର ଆମଦାନୀ । କାଲି ସକାଳେ ତ ଏଇ ଆପାର୍ଟମେଣ୍ଟ୍‌ର କିଛି ମହିଳା ବାନ୍ଧବୀ ଆସିଥିଲେ ତା' ପାଖକୁ । ସେମାନେ ମିସେସ୍ କର୍ମକାରଙ୍କ ଘରେ ଗୋଟିଏ କ୍ଲବ୍ ଗଢ଼ିଛନ୍ତି, ଉଦ୍ଦେଶ୍ୟ ଟିକିଏ ସଂସାର ଜଞ୍ଜାଳରୁ ମୁକ୍ତି । ତା' ସହିତ ବ୍ୟକ୍ତିତ୍ୱର ବିକାଶ ଓ ଦୃଷ୍ଟିକୋଣରୁ ସଂପ୍ରସାରିତ କରିବାପାଇଁ ବହୁବିଧ ଯୋଜନା ବି ଅଛି ସେଥିରେ ।

ସେମାନଙ୍କୁ ଖାଲି ବସିବାକୁ ଘରେ ଭଲ ଲାଗୁନି । ସ୍ୱାମୀମାନେ ସବୁବେଳେ ବାହାରେ-ଟୁର୍‌ରେ ନହେଲେ ବ୍ୟବସାୟରେ । ଅଥଚ ସେମାନେ କାହିଁକି ମଧ୍ୟଯୁଗୀୟ ଲବଣ୍ୟବତୀ ହୋଇ ଘରକୋଣରେ ବସିବେ ? ଚାରିଜଣ ଏକାଠି ହୋଇ ସଂଗୀତ ଆସର, କବିତାପାଠଠୁ ଆରମ୍ଭ କରି ତାସ୍, ଚେସ୍ ଖେଳ ପର୍ଯ୍ୟନ୍ତ ସବୁକିଛି କରିପାରିବେ । ପାଞ୍ଚଜଣଙ୍କ ସହିତ ପରିଚୟ ହେଉହେଉ ଆପଣା ଛାଏଁ ନିଜର ପରିଚୟଟିଏ ବି ତିଆରି କରିପାରିବ ।

ସେମାନେ ଅପର୍ଣ୍ଣାକୁ ଡାକିଥିଲେ ।

ଅପର୍ଣ୍ଣା କୌଣସି ଯୁକ୍ତି କରିନଥିଲା । କେବଳ ନିଜ ଅପାରଗତା ଜଣେଇଥିଲା ଏବଂ କହିଥିଲା, ଯେତେବେଳେ ନିଜକୁ ଏକୁଟିଆ ମନେ କରିବ, ପହଞ୍ଚିଯିବ ସେମାନଙ୍କ ପାଖରେ । ବର୍ତ୍ତମାନ ସେ ବ୍ୟସ୍ତ ଚାକିରିନେଇ ।

ଗଲାବେଳେ ସେମାନେ ଟିପ୍ପଣୀ କରିଥିଲେ, 'ବାଧପତ୍ନୀ, ସେକେଲ୍ ମାନୁଷ ଆମ ଆଇମା' ଜେଜେମା'ଙ୍କ ଭଳି ।

ଅପର୍ଣ୍ଣା ହସିଥିଲା । ସେମାନେ ଗଲାପରେ ଭାବିଲା, ନୂଆଯୁଗ, ନୂଆଚେତନା । ସବୁ ନୂଆ ଭିତରେ ଏମାନେ ମଧ ନୂଆ ଢଙ୍ଗରେ ନିଜକୁ ପେଶ୍ କରିବାକୁ ଚାହୁଁଛନ୍ତି । ହେଲେ ଭୁଲି ଯାଉଛନ୍ତି, ମଣିଷ ଯୋଉ ପୁରୁଣାକୁ ସେଇ ପୁରୁଣା । ତା'ର ସୁଖଦୁଃଖ, ଭାବ ଅନୁଭବ, ପ୍ରବୃତ୍ତି ନିବୃତ୍ତି ସବୁ ସେଇ ପୁରୁଣା । ମାଟି ମା' ଭଳି ସୂର୍ଯ୍ୟ ଚନ୍ଦ୍ରଭଳି ।

ତଳୁ ମେନ୍‌ଗେଟ୍ ପାଖରୁ ଚାହିଁଚି ସିକ୍ୟୁରିଟି ଅକ୍ଷୟ । ହାତର ଟର୍ଚ୍ଚଆଲୁଅ ଥରେ ଥରେ ପହଁରି ଆସୁଛି ରାସ୍ତା ଉପରୁ ତା' ହାତକୁ । ଉପରକୁ ଚାହିଁଲା, ଝରକା ପାଖରେ ଅପର୍ଣ୍ଣାକୁ ଦେଖି ସାଙ୍ଗେସାଙ୍ଗେ ପଚାରିଲା, 'ସାର୍ ଆସିନାହାନ୍ତି ଆହୁରି ?'

ଅପର୍ଣ୍ଣାର ଝରକା ପାଖେ ଠିଆ ହୋଇ ଚାହିଁବା ସହିତ ସାର୍‌ଙ୍କ ଆସିବାଟା ଯେମିତି ଜଡ଼ିତ ହୋଇ ରହିଛି ଅକ୍ଷୟ ପାଇଁ । ସେଇଥିପାଇଁ ସେ ପଚାରେ ।

ଅପର୍ଣ୍ଣା ପ୍ରସନ୍ନ ମନରେ ମୁଣ୍ଡ ହଲାଇ ସଙ୍କେତ ଦେଲା ନାହିଁ । ଅକ୍ଷୟ ତା' ହାତଘଣ୍ଟାକୁ ଟର୍ଚ୍ଚମାରି କହିଲା, 'ଟ୍ରେନ୍ ଟାଇମ୍ ହେଇନି, ଆପଣ ଶୋଇପଡ଼ନ୍ତୁ । ମୁଁ ତ ଗେଟ୍ ପାଖରେ ଅଛି ।'

ଅପର୍ଣ୍ଣା ହସିଲା ଓ ମନେମନେ କହିଲା- ମୋ ଅପେକ୍ଷା କ'ଣ ତୋ ଅପେକ୍ଷା ! !

ତେବେ ନୀଳାଞ୍ଜନଙ୍କ ଯିବାଆସିବା ଟ୍ରେନ୍ ଓ ବସ୍‌ର ସମୟ ଅକ୍ଷୟକୁ ମୁଖସ୍ଥ ।

ଅପର୍ଣ୍ଣା ଏଥର ଝରକା ପାଖରୁ ଆସି ଖଟ ଉପରେ ବସି ଖବରକାଗଜ ଉପରେ ଆଖି ବୁଲେଇବାକୁ ଚଷମାର ଲେନ୍ସ ପୋଛିଲା । କି ଖବର ଆଜିକାଲି ଯେ, ପ୍ରେମଜନିତ ହତ୍ୟା ନହେଲେ ଘୋଟାଲା, ଠକେଇ, ବ୍ୟାଙ୍କ୍ ଡକାୟତି । ଖୁବ୍ ବେଶିହେଲେ ରାଜନେତାଙ୍କ କାଦୁଅ ଫୋପଡ଼ାଫୋପଡ଼ି । କାହା ଶ୍ୱଶୁରଙ୍କ ଦେହାନ୍ତ ତ କୋଉ ଧର୍ମପ୍ରାଣ ମହିଳାଙ୍କ ମୃତ୍ୟୁ । ଦେଶ ଜାତିର ସମୂହ ବିକାଶ ନେଇ କମ୍ ଗମ୍ଭୀର ଆଲୋଚନା ପଢ଼ିବାକୁ ମିଳେ । ଅପର୍ଣ୍ଣାକୁ ବିରକ୍ତ ଲାଗିଲା, ଏ ଦେଶ କେତେ ଶିଥିଳ, ଏ ମଣିଷ କେତେ ଜଡ଼ । କୌଣସି କଥାର ପ୍ରତିକ୍ରିୟା ହିଁ ନାହିଁ । କାନ୍ଥରେ ବାଡ଼ରେ ସଚେତନତାର ପୋଷ୍ଟର ମାରିଦେଲେ ସତେ ଯେମିତି ଦାୟିତ୍ୱ ସରିଗଲା । କ୍ୟାମେରା ଭିତରେ ନିଜକୁ ବାନ୍ଧି ଫଟୋ ଛାପିଦେଲେ ଯେମିତି ନେତାଙ୍କର କାମ ସରିଗଲା । ସବୁ ରବିସ୍ । ବାଜେ କଥା । ଦାୟିତ୍ୱକୁ ଫାଙ୍କିବାର ଉପାୟ ।

ନାପସନ୍ଦିଆ ଢଙ୍ଗରେ ଅପର୍ଣ୍ଣା କାଗଜର ପୃଷ୍ଠାକୁ ଓଲଟେଇ ଥୋଇଦେଲା । ଭାବିଲା, ବେକାର ଖବରଗୁଡ଼ାଏ ପଢ଼ି ବିରକ୍ତିରେ ମୁଡ୍‌ଅଫ୍ କରିବା ଅପେକ୍ଷା ନିଜ କଥା ଭାବିବା ଭଲ । ଦେଶ ଭାସୁ କି ବୁଡୁ ତା'ର ଯାଏ ଆସେ କେତେ !

ତା'ମନ ତ ନୀଳାଞ୍ଜନଙ୍କ ପାଇଁ ଗୁଣୁଗୁଣୁ ହୋଇ ଗୀତ ଗାଇବା କଥା ।

ଖବରକାଗଜଟା ଫ୍ୟାନ୍ ପବନରେ ଉଡ଼ି ଖଟତଳେ ପଶିଲା । ପଶୁ ।

ଏଥର ସେ ଟିକେ ଫ୍ରେଶ୍ ହୋଇଯିବ । ଏବଂ କିଚେନ୍‌କୁ ଯାଇ କିଛି ଗୋଟାଏ

ସୁଇଟ୍ ଡିସ୍ ପ୍ରସ୍ତୁତ କରିବ । ନୀଳାଞ୍ଜନଙ୍କୁ ମିଠା ଖୁବ୍ ଭଲ ଲାଗେ । ବିଶେଷ କରି ତା' ହାତର ଖିରୀ । ହେଲେ ଖିରୀ ପାଇଁ ତ ସମୟ ନାହିଁ ହାତରେ । ତା'ର ବନ୍ଦୋବସ୍ତ ବି ସେ କରିପାରିବନି । ତେବେ ଫ୍ରୁଟ୍ କଷ୍ଟାଡ୍ ଟିକେ କଲେ ବି ଚଳିବ । ତରବର ହୋଇ ଅପର୍ଣ୍ଣା ରୋଷେଇ ଆଡ଼କୁ ମୁହାଁଇଲା । ନୀଳାଞ୍ଜନ ଆସିବା ଆଗରୁ କଷ୍ଟାଡ଼୍‌କୁ ବନେଇ ଟିକେ ସମୟ ଫ୍ରିଜ୍‌ର ରଖିଦେବ ।

ଅପର୍ଣ୍ଣା ମନ ଖୁସିରେ ଗୁଣୁଗୁଣେଇ ଉଠିଲା ।



# ବିଡ଼ମ୍ବିତ ପୃଥିବୀର କଥା

ହସପିଟାଲରୁ ଘର ଫେରନ୍ତି ରାସ୍ତାରେ ମନେ ପଡ଼ିଗଲା । ଅବିନାଶବାବୁଙ୍କର- ନଡ଼ିଆ କିଣି ନେବାକୁ ହେବ । ଅରୁଣା କହିଥିଲା । ଆଗକୁ ଗଣେଶ ଚତୁର୍ଥୀ । ଦି' ଚାରିଦିନ ପରେ ଦାମ୍ ବଢ଼ିଯିବ । ପାଞ୍ଚଟଙ୍କାର ନଡ଼ିଆକୁ ଦଶଟଙ୍କା ଡାକିବେ, ତମେ ଆମର ଆଗରୁ ନଡ଼ିଆ ଚାରି ଛ'ଟା ନେଇଆସିବ, ଭୁଲି ନଯାଅ ଯେମିତି, ତମର ଯେମିତି ଭୁଲାମନ ।

ଏଇଲେ ମନେପଡ଼ିଯାଇଛି । ନେଇଗଲେ ହେବ । ଅବଶ୍ୟ ପୂଜା ଆହୁରି ସପ୍ତାହେ ଅଛି । ଥାଉ, କ'ଣ ହେଇଗଲା ସେଇଠୁ । ସହଜେ ତାଙ୍କର ଭୁଲାମନ । ଅବସର ପରେ ଏଇ ଭୁଲା ରୋଗଟା ଟିକିଏ ବେଶିମାତ୍ରାରେ ବଢ଼ିଯାଇଛି ବୋଲି ସେ ଭାବୁଛନ୍ତି । ଅନେକ କଥା ତ ମନେରହୁନି । ଏମିତିକି ସ୍କୁଟର ଚାବି, କ୍ଷିଅର ବାକ୍ସ, କିଛି ଲେଖିରଖିଥିବା କାଗଜଟି ନହେଲେ କଲମଟା କି ରୁମାଲ, ଚିହ୍ନା ଜାଗାରେ ହିଁ ଥିବା କଥା । ତାଙ୍କର କିନ୍ତୁ ମନେ ରହେନି, ଭୁଲିଯା'ନ୍ତି ବାରମ୍ବାର । ଖୋଜି ହୁଅନ୍ତି । ଅରୁଣାର ସାହାଯ୍ୟ ଲୋଡ଼ାହୁଏ । ଅରୁଣା କିନ୍ତୁ ବିଶ୍ୱାସ କରେନି ଏକଥା । କୁହେ 'ବାଜେକଥା, ତମେ ମନେରଖିବାକୁ ଚାହୁଁନ ବୋଲି ମନେ ରହୁନି । ଖବରକାଗଜ ଅ' ଠୁଁ କ୍ଷ' ପର୍ଯ୍ୟନ୍ତ ସବୁକଥା ଯେତେବେଳେ ମନେ ରହିପାରୁଛି, ଦେଶ ଖବର, ଜାତିଖବର, ରାଜନୀତି ଖବର ଏସବୁ ମନେ ରଖିବାରେ ତ ଅସୁବିଧା ହେଉନି ଅଥଚ ଏଇ ଛୋଟଛୋଟ କଥା କିମିତି ମନେ ରହୁନି ? ଏମିତି କେତେ ବୟସ ହୋଇଗଲା କି ତମର ?' ଏଇଟା ତୁମର ନୂଆ ଢଙ୍ଗ ।

ଅରୁଣାର ଥମଥମ ମୁହଁଟା ମନେ ପଡ଼ିଯିବାରୁ ହସି ପକେଇଲେ ଅବିନାଶବାବୁ । ସତରେ ତା'ର ସାବଧାନୀ ଦୃଷ୍ଟିରୁ କୌଣସି କଥା ବାଦ୍ ପଡ଼ିବନି । ସତ କହିଲେ, ଆଜିକାଲି ଏଇ ଘରସଂସାର ସମ୍ପର୍କୀତ ଯାବତୀୟ ଛୋଟବଡ଼ କଥା, ସେ ଆଉ ମନେ ରଖିବାକୁ ଚାହୁଁନାହାନ୍ତି । ଏତେଦିନ ଧରି ତ ମନେ ରଖି ଆସିଲେ । ତେଲଲୁଣ, ଆଳୁବାଇଗଣ,

ଅଟାଚାଉଳ, କ୍ଷୀରସାବୁନ, ଚା'ଚିନି, ଘୋଷିଘୋଷି ଅଧାରୁ ଅଧିକ ଜୀବନ ଖସିଗଲା- ଏତେ ତାରିଖରେ ଘରଭଡ଼ା ଜମାହେବ, ଏତେ ତାରିଖରେ ଘରକୁ ଟଙ୍କା ପଠାହବ, ଏତିକି ତାରିଖରେ ବିଜୁଳିବିଲ୍, ପାଣିବିଲ୍, ପାଇଁ ଟଙ୍କା ପଇଠ କର, ଯାକୁ ଏତିକି ଦିଅ, ତାକୁ ସେତିକି ଦିଅ, ଯାର ଚାନ୍ଦା ଏତିକି, ତା'ର ହାତଖର୍ଚ୍ଚ ଏତିକିର ହିସାବ ରଖୁରଖୁ ଜୀବନଟା ଏକାବେଳକେ ବେହିସାବ ହୋଇଗଲାଣି । ମନେ ନାହିଁ ସେ କ'ଣ ଖାଇଛନ୍ତି, କ'ଣ ପିନ୍ଧିଛନ୍ତି, କ'ଣ ଦେଖିଛନ୍ତି, କ'ଣ ଭାବିଛନ୍ତି ନିଜ ପାଇଁ ଖାସ୍ । ଅସଲ ବେଳଟା ତ ଗଲା ସରକାରଙ୍କ ସେବାରେ, ନଥିପତ୍ର ସାଇତି ରଖୁରଖୁ ଜବାବ- ପ୍ରତିଜବାବ୍- କୈଫିୟତ ଲେଖୁଲେଖୁ । ବହୁତ ହେଇଗଲା ଦୁନିଆଦାରୀ । ଆଉ ସେ କିଛି କରି ପାରିବେନି । ଏବେ ଖାଲି ଅବସର । ବାସ୍ । ଆଉ ସେ କିଛି ମନେ ରଖିବାକୁ ବାଧ ନୁହଁନ୍ତି । ଖଣ୍ଡେ ପିନ୍ଧିବେ, ଗଣ୍ଡିଏ ଭଇ ଖାଇବେ, ଶୋଇବେ ଶାନ୍ତିରେ ନିଧଡ଼କ । ଯେତେବେଳେ ନିଦ ଭାଙ୍ଗିବ, ଦେଖିବେ ଚାରିଆଡ଼େ ଆନନ୍ଦ ହିଁ ଆନନ୍ଦ । କେତେ ଆନନ୍ଦ ବିଞ୍ଚିହୋଇ ପଡ଼ିଛି ଏଇ ମାଟିରେ, ସେ କ'ଣ କିଛି ଦେଖିଛନ୍ତି ? ଏବେ ସବୁ ଦେଖିବେ ଖୋଜିଖୋଜି ଦେଖିବେ । ସମୁଦ୍ରପବନରେ ଭାସୁଭାସୁ ଅନୁଭବ କରିବେ ଜୀବନକୁ । ଖାସ୍ କରି ନିଜ ଜୀବନକୁ ସହଜ ସରଳ ଛନ୍ଦରେ ଠିକ୍ ଅବୋଧ ବାଳକଟିଏ ଭଳି । କିଛି ଦାୟଦାୟିତ୍ୱ ନାହିଁ । ଫୁଲାଫାଙ୍କିଆ । ଏ ଯାଏ ତ କେବଳ ଜୀବନଯନ୍ତ୍ରଣାର ଦରଜ ହିଁ ମନେଅଛି । ନା, ସେଇଥିପାଇଁ ସେ ସବୁକିଛି ଭୁଲିଯିବାକୁ ଚାହୁଁଛନ୍ତି ଏବଂ ଭୁଲିଯାଇଛନ୍ତି ବି ନିଜର ଅଶେଷ ଆୟାସପ୍ରୟାସ କରି ଗଢ଼ିଥିବା ସଂସାରର ନୀତି ନୀୟମ ତଥା ଆବୁରୁଜାବୁରୁ କଥାଗୁଡ଼ାକୁ ।

ମଝିରେ ମଝିରେ ଏଇ ଅରୁଣାଟା ଯାହା ଅଡୁଆରେ ପକେଇ ଦେଉଛି, ମନେ ପକେଇ ଦେଉଛି ସଂସାର କଥା, ଅସୁବିଧା କରୁଛି । କଣନା, ଆଜି ଅମାବାସ୍ୟା, କାଲି ପୂନେଇଁ, ଆର ତିଥିରେ ଶ୍ରାଦ୍ଧ, ଆସନ୍ତାମାସରେ ମାଣବସା, ଆର ସପ୍ତାରେ ଦଶମୀ ଇତ୍ୟାଦି ଇତ୍ୟାଦି । ଲୟ ଭାଙ୍ଗିଯାଉଛି, ବେଛନ୍ଦ ହେଇ ଯାଉଛି ଅବସର ରାଗିଣୀଟା । ଆନନ୍ଦମୟ ଜଗତରୁ ମଝିରେମଝିରେ ଓହ୍ଲେଇ ଆସିବାକୁ ହେଉଛି ଅରୁଣାର ସଂସାର ଭିତରକୁ । ହଁ, ଅରୁଣାର ହିଁ ସଂସାର, ତାଙ୍କର ନୁହେଁ, ସେ ଗଢ଼ିଛି ।

ସବୁ ସଂପାଦିଛି । ଦାୟିତ୍ୱ ତା'ର । ସେ ଖାଲି ଆଉ କିଛି ଦିନର ଅତିଥି । ଏକଥା ଶୁଣିଲେ ଅରୁଣା ରାଗରେ ତମତମ ହୁଏ । କୁହେ- ନିହାତି ସ୍ୱାର୍ଥପର ଦାୟିତ୍ୱହୀନ ମଣିଷ ତୁମେ । ସେ ହସିଦିଅନ୍ତି । ଠିକ୍ କଥା, କୌଣସି ଦାୟିତ୍ୱ ତୁଲେଇବାର ଇଚ୍ଛା ଆଉ ନାହିଁ । ହେଲେ ଅନ୍ୟସବୁ ଦାୟିତ୍ୱ ସିନା ହସ୍ତାନ୍ତର କରିଦେଲେ କି ଛାଡ଼ିଦେଲେ । ଅରୁଣାର ଦାୟିତ୍ୱ ? ତାକୁ ତ ଫାଙ୍କି ଦେଇ ପାରିବେନି । କଥା ଦେଇଛନ୍ତି- ଦଶଦିଗପାଳ, ଅଗ୍ନିକୁ ସାକ୍ଷୀରଖି ଦାୟିତ୍ୱ ନେଲି ବୋଲି, ଆଜୀବନ... ପ୍ରତିଶ୍ରୁତି ଦେଇଛନ୍ତି ଅଲିଖିତ ଭାବେ । ତେଣୁ ହିଁ

ମଝିରେମଝିରେ ଅରୁଣାର ଡାକରେ ନିଦ ତାଙ୍କର ଭାଙ୍ଗିଯାଏ, ଚହଲିଯାଏ ତାଙ୍କର ଅଘରିପଣ । ବାଧହୋଇ ଝାଡ଼ିଝୁଡ଼ି ବସନ୍ତି ।

ଗଲା ଜନ୍ମାଷ୍ଟମୀ ଦିନ କହିଥିଲା ଅରୁଣା, 'ଯେମିତି ଭୁଲି ନଯାଅ ନଡ଼ିଆ ଆଣିବାକୁ, ଅନ୍ତତଃ ଚାରିଟା, ବେଶୀ ନହେଉ ପଛେ ।'

ଯାହାହେଉ ଏତିକିବେଳକୁ ମନେ ପଡ଼ିଯାଇଛି ଅରୁଣା କଥା । ତା'ରି ପାଇଁ ତ ଔଷଧ ଆଣିବାକୁ ଯାଇଥିଲେ ହସ୍‌ପିଟାଲ । ଥଣ୍ଡା ସର୍ଦ୍ଦି ଜ୍ୱରରେ ଧଇଁସଇଁ ହେଉଛି । ଦି'ଦିଥର ନିମ୍ମୋନିଆ ହାତରୁ ଉତୁରିଛି । ତଥାପି ଡରକୁନି । କୁଆଡୁ ଏତେ ବଳ ପାଇଛି କେଜାଣି ! ସବୁ ଜାନିଯାତ୍ରା, ପର୍ବପର୍ବାଣି କରିବାକୁ ଆଗଭର । କହିଲେ କହିବ, 'ଆଲୋ କଥା, ମୁଁ କ'ଣ ବାପଘରୁ ଆଣିଥିଲି ନା ଶିଖି ଆସିଥିଲି । ତମରି ବାପା ବୋଉ କାନମୋଡ଼ି, ଏକଗୋଡ଼ିଆ ଠିଆ କରେଇ ଶିଖେଇଛନ୍ତି ଏସବୁ । କଲେ ଏଇୟା ହବ, ନକଲେ ସେଇୟା ହବ । ସେମାନେ ଆଜି ନାହାନ୍ତି ବୋଲି ତାଙ୍କ କଥାକୁ ଅମାନ୍ୟ କରିବି !' ଯାଏ କୁଆଡ଼େ । ଯୁଆଡୁ ହେଲେ ବନ୍ଧୁକଟା ମୁହେଁଇଦବ ତାଙ୍କ ଆଡ଼କୁ । ସେ ଆଜିକାଲି ଆଉ କିଛି କହୁନାହାନ୍ତି; ଛାଡ଼ିଦେଲେଣି କହିବା । କେତେ ଆଉ କହିବେ, ପାଠଶାଠ ପଢ଼ିଥିବା ଶିକ୍ଷିତା ପତ୍ନୀଙ୍କୁ । କରୁ ସେ କ'ଣ କରୁଛି । କେବଳ ତା' ବରାଦ ଜିନିଷ କିଣିଆଣି ଥୋଇଦେଲେ ତାଙ୍କ କାମ ସରିଲା । ତେଣିକି ଭଲମନ୍ଦ ପିଠାପଣା କରି ସେ ଥୋଇବ ତାଙ୍କ ଆଗରେ । କ'ଣ ନା, ତମେ ତ ଏଇ ପିଠାଟା ଭଲପାଅ, ସେଇ କାକରାଟା ଖାଉନ, ପୁର ଆରିସା ଖାଇବାକୁ ତ ବାଇଆ, ନଡ଼ିଆ ଆଣିଲେ ସିନା କରିବି... ।'

ସତକଥା ପିଠାପଣା, ଖିରିଖିରିସାରେ ତାଙ୍କର ଦୁର୍ବଳତା । ପିଲାଦିନୁ ବୋଉ ଶିଖେଇଛି । ପିଲେ କ'ଣ ଖାଇବେ, କିମିତି ଖାଇବେ, କାହାର କୋଉଥିରେ ଲୋଭ, ଦିନରାତି ତା'ର ସେଇ ଚିନ୍ତା... ତା' ସାଙ୍ଗକୁ ନନା ଯୋଡ଼ି । ସେମାନେ ସବୁ ଗଲେଣି କୋଉ କାଳରୁ, ହେଲେ ଜାଆଁଳ ଛାଡ଼ି ଦେଇ ଯାଇଛି ବୋଉ ।

ସ୍କୁଟରର ଷ୍ଟାର୍ଟ ଆପେ ବନ୍ଦ ହୋଇଗଲା ସିଂହଦ୍ୱାର ସାମ୍ନାରେ । ଭାବନା ମଧ୍ୟ ଆପଣା ଛାଏଁ ଅଟକିଗଲା ସେଇଠି ସତର୍କ ହେଲାଭଳି । ପତିତପାବନଙ୍କ ଉଦ୍ଦେଶ୍ୟରେ ହାତଯୋଡ଼ି ସାମ୍‌ନା ଆଡ଼କୁ ଚାହିଁଲେ । ଆଗରେ କଡ଼ରେ ଠାଏଠାଏ ହେଇ ନଡ଼ିଆ ବିକାଳି । ଏ ପାଖକୁ କଦଳୀ, ସେଓ, ଅଙ୍ଗୁର ଥାକଥାକ ହେଇ ସଜାହୋଇଛି । ଲେମ୍ବୁ, କମଳାର ଛୋଟ ଛୋଟ ପାହାଡ଼ଟିମାନ । ବଳିତାର ଧଳାସ୍ତୂପ । ଡାଳାଡାଲା ଫୁଲ ତୁଳସୀ । ଚମତ୍କାର ବାସ୍ନା ମାଳତୀ ଆଉ ପଦ୍ମର ମିଠାଳିଆ ସୁଗନ୍ଧରେ ବାଟବଣା ହେଲାପରି ସେ ଠିଆ ହୋଇଗଲେ ହଠାତ୍ । ସ୍କୁଟରକୁ ପାଖିକିଆ ଠିଆକରି ଆଗେଇ ଆସିଲେ କିଛି ପାହୁଣ୍ଡ । ଆଗରୁ ପଛରୁ ସମସ୍ତଙ୍କ ଡାକ 'ଆସବାବୁ, ଆସ ଭାଇନା, ମଉସା, ମୋ ପାଖରେ ଭଲ ମାଲ, ଆସୁନ, ନ କିଣ

ପଛେ, ଦେଖିବାକୁ କ'ଣ ମନା !' କାନ ଅତଡ଼ା ପଡ଼ିଲା ଭଳି ଡାକ । ଯୁଗ ତ ସେଇଆ, ନିଜ ଜିନିଷ ପାଇଁ ଯେତେ ତୂରୀ ଫୁଙ୍କି ପାରିବ ।

ସାମ୍‌ନ୍‌ରେ ମାଇପିଟିଏ, ବେଶି ବୟସ ହେବନି, ଚାଳିଶ ଭିତରେ । ହାତରେ ନଡ଼ିଆ ଦି'ଟା ଦେବାଠାଣିରେ ଧରି ଡାକୁଛି ଥରକୁଥର । 'ଆସ ବାବୁ ଇଆଡ଼ିକି ଆସ... ଭଲ ନଡ଼ିଆ, ଦେଖୁନ, ବେଶି ନୁହେଁବା ଦଶଟଙ୍କା ଗୋଟାକ । ଶୁଖିଲା ନଡ଼ିଆ, ବାଜୁଛି ଭଲ । ଆସବାବୁ ବଂଏଣା କର ।' ଏକା ନିଃଶ୍ୱାସକେ ଗୀତ ଗାଇଲା ଭଳି ଅନର୍ଗଳ ଗାଇ ଯାଉଛି ମାଇପିଟା । କାକୁସ୍ତ ଶୁଭୁଛି ସ୍ୱରଟା କିମିତି ।

ଠିଆ ହେଇଗଲେ ଅବିନାଶବାବୁ, ମାଇପିଟିର ଉଠା ଦୋକାନ ଆଗରେ । ଦୋକାନ ବୋଇଲେ ଅଖା ଖଣ୍ଡିଏ ବିଛେଇ ସଜେଇ ଥୋଇଛି କୋଡ଼ିଏ ପଚିଶଟା ନଡ଼ିଆ । ବାକି ଆଠ ଦଶଟା ପଇଡ଼ । ପଚାରିଲେ- କେତେ କହିଲୁ, ଦଶଟଙ୍କା ଗୋଟାକ ? ବହୁତ ବେଶୀ ହେଇଯାଉନି ? ସବୁବେଳେ ତ ଗୋଟାକ ପାଞ୍ଚଟଙ୍କାରେ ନିଏ, ଆଜି କାହିଁକି ଏତେ ଭାଉ... କହୁକହୁ ଅବିନାଶବାବୁ ନଇଁପଡ଼ି ନଡ଼ିଆ ବାଛିବାକୁ ଲାଗିଲେ ଏପାଖସେପାଖ କରି । ଏମିତିରେ ସେ ଖୁବ୍ ଭଲ ବାଛି ଜାଣନ୍ତିନି । ତେବେ ଥରେ ନନା କହିଥିଲେ, 'କତା ଆଡ଼େଇ ଦେଖିବୁ ଯେମିତି କଳା ଶିରା ଦିଶୁଥିବ, ଜାଣିବୁ ଭଲ ନଡ଼ିଆ ସେଇଟା ।' ବାସ୍ ସେଇ ଫର୍ମୁଲା ବେଦର ଗାର ।

ମାଇପିଟି ଅବିନାଶବାବୁଙ୍କର ନଡ଼ିଆ ବଛା ଦେଖି ଟିକିଏ ଅଧୈର୍ଯ୍ୟ ହେଲାଭଳି କହିଲା, 'ଭଲ ନଡ଼ିଆ ବାବୁ, ଦି' ମାସ ରହିବ ଠିଆ କରି ରଖିଲେ ।' ନଗଦ ତୋଳା । ଦେଖେଇଦେଲା କିମିତି ଠିଆ କରି ରଖିବାକୁ ହେବ । ନେଇଯାଅ ଦିଗଣ୍ଡା । ରଖିଥୋଇ ଖାଇବ । ଆଗକୁ ତ ପର୍ବ ଅଛି । ସକାଳଠାରୁ ବସିଲିଣି ଅଣ୍ଟା ପିଠି କାଠ ହେଇଗଲାଣି । ଟଙ୍କା ଦଶଟା ବି ହୋଇନି... କିମିତି କରିବି କହୁନା... ।' ସତେ ଯେମିତି ତା'ର ଦଶଟଙ୍କା ନହେବା ପାଇଁ ଅବିନାଶବାବୁ ହିଁ ଦାୟୀ ।

ତଥାପି ହସି ପକେଇଲେ ଅବିନାଶବାବୁ ମାଇପିଟିର ବ୍ୟସ୍ତତା ଦେଖି । ଏବଂ କହିଲେ- ମୁଁ କ'ଣ କରିପାରିବି ସେଥିପାଇଁ ! ତୋର ବିକ୍ରି ହେଇନି ବୋଲି ତ ମୁଁ ଆଉ ଦଶଟଙ୍କାରେ ଏଇ ଛୋଟ ନଡ଼ିଆକୁ ନେଇ ପାରିବିନି । ଠିକ୍ କରି କହ କେତେରେ ଦେବୁ । ପାଞ୍ଚଟଙ୍କା ନହେଲା ସାତଟଙ୍କାରେ ଦେ' । ଚାରିଟା ନେଇଯିବି । ଘୋଷିଲା ଭଳି କହି ପକେଇଲେ କଥାଗୁଡ଼ାକ, ନିଶ୍ଚୟ ମାଇପିଟିଏ ନେହୁରା ହୋଇ କହୁଛି ବୋଲି ଦୟାରେ ଓଦା ହୋଇ ଯାଇଥିଲେ ସେ । ମାଇପିଟି କିନ୍ତୁ ନଛୋଡ଼ବନ୍ଧା । 'ନାହିଁ ବାବୁ... ହବନି । ପୋଷାଇବନି । ନଗଦ, ସଜତୋଳା ନଡ଼ିଆ ସାକ୍ଷୀଗୋପାଳର । ଏତେ ଶସ୍ତାରେ ଲଗେଇଲେ କିମିତି ପୋଷିବି ଚାରିଚାରିଟା ଝିଅଙ୍କୁ । କୋଉଠୁ ଆଉ ଆଣିବି ? ମାଇପିଲୋକ । ନିଆଁ ପାଣିର ଲୋଭରେ

ସିଏତ ଅଧାବାଟରେ ଛାଡ଼ିଦେଇଗଲା... ଭାବିଲାନି । ପାଞ୍ଚ ପାଞ୍ଚଟା ପେଟ କିମିତି ପୋଷିହେବ, ସ୍ୱାର୍ଥ ଦେଖିଲା ନିଜର ସେଇ ଦେଖୁଛି... ସେଇ ଜାଣୁଛି... ନୀଳଚକ୍ରକୁ ଚାହିଁ ସ୍ୱଗତୋକ୍ତି କଲା ଭଳି କପାଳରେ ହାତଯୋଡ଼ି କହି ଚାଲିଥାଏ 'ନିଆଁ ପାଣି ମୁନ୍ଦେ ପୁଅ ହାତରୁ ପାଇଗଲେ ସରଗକୁ ଯିବୁ । ମଲେ ଆମେ ପାଞ୍ଚପ୍ରାଣୀ ପଛେ ନର୍କରେ ଘାଣ୍ଟି ହେଉଥିବୁ । ବାରଦୁଆରେ ହାତପାତି ଭିକମାଗି । ଆସବାବୁ, ନାହିଁ କରନି, ପଛେ ଟଙ୍କା ଦି'ଟା କମେଇ ଦେବି ତମକୁ ଶେଷରେ । ଅଲକ୍ଷଣା, ଛାଡ଼ି ଦେଇଗଲା ମୁନ୍ଦେ ନିଆଁ ପାଣି ପାଇଁ... ଠାକୁରେ ! ଦେଖ ତାକୁ... ମୋର ଚାରି ଚାରିଟା ଅରକ୍ଷିତ ପ୍ରାଣ । ମୁଣ୍ଡରେ ହାତଯୋଡ଼ି ସମ୍ପିଲା କଣ୍ଠରେ କହିଚାଲିଥାଏ ଓ ନଡ଼ିଆ ସଜାଡୁଥାଏ ଅଭ୍ୟସ୍ତ ଢଙ୍ଗରେ ଥରକୁଥର ।

ଅବିନାଶବାବୁ ସ୍ଥିର ଭାବରେ ଠିଆହେଲେ କିଛି ମୁହୂର୍ତ୍ତ । ଏବଂ ବୁଝିବାକୁ ଚେଷ୍ଟାକଲେ ମାଇପି ଜଣକ କ'ଣ କହୁଛି । କାହାପ୍ରତି ତା'ର ଆକ୍ଷେପୋକ୍ତି ଓ କାହିଁକି । ତାଙ୍କର ନଡ଼ିଆ କିଣିବା ସହିତ, ମାଇପିଟିର ନଡ଼ିଆ ବିକିବା ଏବଂ କିଏ ତାକୁ କାହିଁକି ଅଧାବାଟରେ ଛାଡ଼ି ଦେବା ଓ ପାଞ୍ଚଟା ପେଟ ଅପୋଷା ରହିବା ଇତ୍ୟାଦି କେମିତି ଓ କିଭଳି ଭାବରେ ସଂପୃକ୍ତ । ଫାଙ୍କା ମୁଣ୍ଡରେ ତାଙ୍କର ହଠାତ୍ କିଛି ପଶିଲାନି । ଭାବିଲେ, ପଚାରି ବୁଝିବେ । ହେଲେ ପଚାରିବାଟା ସୁନ୍ଦର ହେବ ତ ! ତାକୁ ଆଘାତ ହେଲା ଭଳି କଥା ଯଦି ହେଇଥିବ । ସେ ତ କାହାକୁ ଆଘାତ ଦେବାକୁ ଚାହିଁନ୍ତିନି । ତଥାପି... ହଠାତ୍ ସେ ଠିଆ ହୋଇ ପଡ଼ିଲେ ଅଣ୍ଟା ସଳଖି ଏବଂ ମାଇପିଟିର ମୁହଁକୁ ଚାହିଁ ପଚାରିଦେଲେ, 'ତୁ କ'ଣସବୁ କହୁଛୁ ମୁଁ କିଛି ବୁଝିପାରୁନି, କିଏ ଛାଡ଼ି ଦେଲା କାହାକୁ ?'

'କିଏ ଆଉ ବାବୁ, ମୋରି ଅଣ୍ଡିରା । ନ'ବର୍ଷ ଘର କଲି ତା' ସାଙ୍ଗରେ । ସୁଖଦୁଃଖ ଭୋଗିଲି । କେବେ ଦୋଳିରେ ଝୁଲେଇ ରଖିନି ମୋତେ, ଖଟିଛି, ଖାଇଛି ହେଲେ ମୋ କପାଳ ଦୋଷ । ମୁଁ କ'ଣ କହିଥିଲି କି ବିଧାତାକୁ ଚାରି ଚାରିଟା ଝିଅ ଦେ' ବୋଲି । ନା, ମାଗି ଆଣିଥିଲି କୋଉଠୁଁ ବୁଝିଲାନି ସିଏ । ହୀନଅବସ୍ଥା କଲା । କହିଲା – ଝିଅ ପୁଞ୍ଜେ ଜନ୍ମ କଲୁ ଯେ ମୋତେ ନିଆଁ ପାଣି ମିଳିବନି । ଓଲଟି ଖାଇବେ, ବୋହି ନେବେ । ସେ କାହିଁକି ରହିବ । ତା' ପିତୃପୁରୁଷ କୁଆଡ଼େ ଉଦ୍ଧାର ହେବେନି । ପଳେଇଲା ଭାଇ ଭାଉଜ କଥାରେ ପଡ଼ି । ସାନଝିଅଟା ଏନ୍ତୁଡ଼ିରୁ ଉଠି ନଥିଲା । ଛାଡ଼ି ପଳେଇଲା ଆଉ ଆସିଲାନି ଘରକୁ । ଆଉ ଗୋଟିଏ ମାଇକିନାକୁ ରଖିଛି, ନିଆଁ ପାଣି ପାଇ ସରଗକୁ ଯିବ, ମାଇକିନା ସାତପୁଅ ଜନମ କରିବ । ଠାକୁରେ । ତମେ ଦେଖ ତାକୁ । ମୁଁ ତ ନିଆଶ୍ରୀ, ହୀନକପାଳି... ହାତଯୋଡ଼ିଲା କପାଳରେ ପୁଣି, ଥରିଲା, କୋହମିଶା କଣ୍ଠରୁ ଶବ୍ଦମାନେ ଝଡ଼ି ପଡୁଥା'ନ୍ତି ଅଭିମାନର ତାତିରେ । ଚାହିଁଥା'ନ୍ତି ଅବିନାଶବାବୁ ତା' ଛଳଛଳ ଆଖିକୁ । ମୋ ପିଲାଙ୍କ ପେଟ କିମିତି ପୂରିବ... କୋଉ ଗାତଚୁଲିକୁ ଯିବି ବାବୁ... ପିଲାଙ୍କ ଶୁଖିଲା ମୁହଁ ଦେଖିପାରୁନି... ମୁଁ ମା' ତ

ଜମାନ କରିଛି ମୁଁ ତାକୁ ବାଛି ଚାଲିଥାଏ ନଡ଼ିଆ, ହାତ ଚାଲିଥାଏ, କହି ଚାଲିଥାଏ ମନକୁ ମନ କେତେବେଳେ ନିଜକୁ ସଂପି, ପୁଣି କେତେବେଳେ ଭାଗ୍ୟକୁ ନିନ୍ଦା କରି.. ଅଛିଣ୍ଡା, ଅସମାପ୍ତ, ଅସମାଧିତ ଜୀବନ କାହାଣୀ... କଥାରୁ ରକ୍ତ କ୍ଷରୁଥାଏ ।

ଅବିନାଶବାବୁଙ୍କର ଆନନ୍ଦ ଖୋଜା-ବେପରୁଆ-ଆଜାଦୀମନର ଡେଣାଟା ହଠାତ୍ ଜଖମ ହୋଇଗଲା । ସ୍ତବଧ୍ ହୋଇଗଲେ ସେ ଧକ୍କା ଖାଇଲାଭଳି । ସଂସାରରେ ଏତେ ଦୁଃଖ ! ଏତେ ଯନ୍ତଣା ! ଏତେ ନିଷ୍ଠୁର ମଣିଷ ! ଆହା ବିଚାରୀ, ଦୋଷ ନଥାଇ ଦଣ୍ଡ ଭୋଗୁଛି ! ମୁହୂର୍ତ୍ତକରେ କେତେକଥା ଭାବି ହେଇଗଲା । ଆମ ସାମାଜିକ ବ୍ୟବସ୍ଥା- ପୁରୁଷାୟିତ ସମାଜ (ପୁଣି ଏଇ କମ୍ପ୍ୟୁଟର ଯୁଗରେ) ଅନ୍ଧବିଶ୍ୱାସ ଓ ଦାରିଦ୍ର୍ୟ -ସବୁମିଶି ଯୋଉ ଭିତରେ ନାରୀ ନାମକ ଅସହାୟ ଜୀବନଟିଏ, (ହଁ ଏକପ୍ରକାର ଅସହାୟ ହିଁ ତା' ପ୍ରକୃତିଗତ ହେଉ କିମ୍ବା ପାରିପାର୍ଶ୍ୱିକ ପରିସ୍ଥିତି ଯୋଗୁଁ ହେଉ) ସତରେ କେଡ଼େ ଦୟନୀୟ ତା'ର ସ୍ଥିତି ! କେଡ଼େ କରୁଣ ତା'ର ଇତିହାସ ! ସଭ୍ୟ ସମାଜର ଝଲମଲ ଆଲୁଅ ଭିତରେ ଦିଶୁନି ସ୍ପଷ୍ଟଭାବେ । କେହି ଦେଖୁନି, କାହା ଚେତା ପଶୁନି । କେତେ ବିଡ଼ମ୍ବିତ ସେ !

ଏଇ ଟିକକ ଆଗରୁ ହସ୍‌ପିଟାଲରେ, ଏହିଭଳି ଜଣେ ଅଭିଯୋଗକାରୀ ବ୍ୟକ୍ତିଙ୍କୁ ଡାକ୍ତର ବୁଝଉଥିଲେ । ସେ ଶୁଣିଛନ୍ତି । ଡାକ୍ତର କହିଥିଲେ- ସବୁ ଦୋଷ ସ୍ତ୍ରୀର ବୋଲି ଆପଣମାନେ ଭାବୁଛନ୍ତି କାହିଁକି ? ଆପଣମାନେ ଶିକ୍ଷିତ, ସଭ୍ୟ । ବୁଝିପାରିବାର ଯୋଗ୍ୟତା ଅଛି । ନିଜ ଦୋଷ କୁହନ୍ତୁ କି ଈଶ୍ୱରଙ୍କ ଇଚ୍ଛା କୁହନ୍ତୁ, ମାନିନେବାରେ ଈଣାପଣ କୋଉଠି ରହିଲା ? ସବୁବେଳେ ଦୋଷ ମୁଣ୍ଡେଇବାକୁ ସ୍ତ୍ରୀଟିଏ ହିଁ କାନ୍ଧ ଦେଖାଇବ ? ତା'ଛଡ଼ା ପିଲାଟି ପୁଅ ହେବ କି ଝିଅ ହେବ ତା'ର ନିୟନ୍ତକ ତ ନିଜେ ପୁରୁଷ । ତା'ରି ଗୁଣସୂତ୍ରକୁ ନେଇ ସୃଷ୍ଟି । ଈଶ୍ୱରଙ୍କ ଇଚ୍ଛା ଅପେକ୍ଷା ଆଜି ବିଜ୍ଞାନର ବାର୍ତ୍ତା ଆହୁରି ସତ୍ୟ, ଏକଥା ଅନ୍ତତଃ ଆପଣମାନେ ଗ୍ରହଣ କରିବା କଥା ।'

ହଠାତ୍ ଉତ୍ତେଜିତ ହୋଇପଡ଼ିଲେ ଅବିନାଶବାବୁ ଏବଂ ମାଇପିଟି ଉଦ୍ଦେଶ୍ୟରେ କହିଲେ, ତୁ' କହିଲୁନି, ଏଥିପାଇଁ ତୁ ଦାୟୀ ନୁହଁ, ତୋ' ପୁରୁଷ ହିଁ ଦାୟୀ... କହିଦେଇ ସାରି ଅଟକିଗଲେ ଅଧାରୁ ଏବଂ ଭାବିଲେ ବିଚାରୀ ମୂର୍ଖ, ଗାଉଁଲି, ଅଶିକ୍ଷିତା ମାଇପିଟା, କ'ଣ ସେ ବୁଝିବ ବିଜ୍ଞାନଭଳି ଗୁରୁତ୍ୱପୂର୍ଣ୍ଣ କଥା ! ସଭ୍ୟ ଶିକ୍ଷିତ ମଣିଷ ଯୋଉଠି ବୁଝି ମଧ ବୁଝି ନ ପାରିବାର ଛଳନା କରୁଛି, ସେ ବି କିମିତି ବୁଝେଇବେ ! ଅଶିକ୍ଷା ଏ ଦେଶକୁ ଦିନେ ରସାତଳକୁ ନେଇଯିବ । ତାଙ୍କର ଅନ୍ୟମନସ୍କତାକୁ ଭାଙ୍ଗିଦେଇ ଚକିତ ବିସ୍ମୟରେ ମାଇପିଟି କହିଲା– କ'ଣ କହିଲ ବାବୁ, ତା' ଦୋଷ ? ମୁଁ ତ ମୂରୁଖ ନୋକ, ଏତେକଥା କାହୁଁ ଜାଣିବି ? ତମେମାନେ ସିନା ପାଠଶାଠ ପଢ଼ିଛ । ହେଲେ ମୁଁ ଏତିକି ଜାଣିଛି ପିଲା ଚାରିଟି ତା'ର, ବାପ ସିଏ, ପୋଷିବା ଦାୟିତ୍ୱ ମଧ ତା'ର । ମୁଁ ଜନମ କଲା ମା' । ସେ ପୋଷିଲାନି ବୋଲି ମୁଁ ହାରିଯିବି ? ମୁଁ ଢୋକଦେବି ବାବୁ ପିଲାଙ୍କୁ, ପ୍ରାଣଥିବା ଯାକେ ।

'ତୁ ଏବେ କେମିତି, କୋଉଠି ଅଛୁ ?'

'ବାପଘରେ ଅଛି ବାବୁ ପିଲାଙ୍କୁ ନେଇ । ହେଲେ କେତେ ବୋଝ ହେବି ସେମାନଙ୍କର । ଗରିବ ଘର । ସଭିଙ୍କୁ ଭିଡ଼ । ଟଣାଓଟୁରା । ସାନ ପଣତ, ଚିରାପଣତ । ସେମାନେ କହିଲା ଯାଏ କଥା ଯିବ କାହିଁକି, ଏଇ ନଡ଼ିଆ ବେବସା ଧରିଛି । ଏସବୁ ସେଇଥେରେ ଗୁଜୁରାଣ କରିବା କଥା । ତେଣିକି 'ସେଇ' ବାଟ ଦେଖେଇବ– ନୀଳଚକ୍ର ଉଦ୍ଦେଶ୍ୟରେ ହାତ ଦେଖେଇଲା ଓ ନଡ଼ିଆ ଚାରିଟା ବଢ଼େଇଦେଲା ହାତକୁ । ମନ୍ତ୍ରମୁଗ୍ଧ ଭଳି ଚୁପ୍‌ଚାପ୍ ଧରିନେଲେ ଅବିନାଶବାବୁ ନଡ଼ିଆକୁ, ଏବଂ ପଦୁଟିଏ କଥା ନକହି ବଢ଼େଇଦେଲେ ପଚାଶ ଟଙ୍କାର ନୋଟ୍‌ଟିଏ ତା' ହାତକୁ । ସେ ରେଜା ଖୋଜୁଖୋଜୁ ସ୍କୁଟର ପାଖକୁ ଆସି ଷ୍ଟାର୍ଟ ଦେଲେ ଅବିନାଶବାବୁ ।'

ମାଇପିଟି କିନ୍ତୁ ପଛରୁ ଡାକୁଥିଲା ଜବାବ ଅନୁସାରେ ବାକି ଟଙ୍କା ଫେରେଇବ ବୋଲି ନିଶ୍ଚୟ । 'ହେ ବାବୁ... ଆଜ୍ଞା... ତମର ବାକି ପଇସା...'



ସ୍ୱରାଜ୍ୟ, ମୋ ପରି ତାଙ୍କର ଅନ୍ୟପାଠକମାନଙ୍କୁ ଆନନ୍ଦ ବାଣ୍ଟି ଚାଲିଥାନ୍ତୁ ××× ସେ ତ ଜଗନ୍ନାଥ ପଦାଶ୍ରିତା, ସେଇ ବିଶ୍ୱପୁରୁଷ ହିଁ ତାଙ୍କ ଲେଖନୀକୁ ଚିର ଚଂଚଳ ରଖିଥାନ୍ତୁ, ଏବଂ ତାଙ୍କ ଗଳ୍ପସାମ୍ରାଜ୍ୟ ଅଧିକ ସମୃଦ୍ଧ ହେଉ । ତାଙ୍କର ଅପ୍ରକାଶିତ ରଚନାବଳୀ ଲୋକଲୋଚନକୁ ଆସୁ । ତାଙ୍କର ଦାମ୍ପତ୍ୟ ଜୀବନ ମଧୁମୟ ହେଉ । ଆଶୀର୍ବାଦ ସହ ॥

ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟ

ସ୍ୱରାଜ୍ୟ ଲକ୍ଷ୍ମୀଙ୍କ ଗଳ୍ପର ଭାଷା ଓ ଶୈଳୀ ଭିନ୍ନ । ତାହା ପ୍ରଥାସିଦ୍ଧ ଶୈଳୀ ନୁହେଁ । ଗଳ୍ପର ଶୈଳୀ ମଧ ତାଙ୍କର ଇଚ୍ଛାକୃତ ନୁହେଁ; ସ୍ୱତଃସ୍ଫୂର୍ତ୍ତ । ନିର୍ମଳ ଗଂଗାଧାର ପରି ତାହା ପ୍ରବାହିତ । କାହାଣୀଟି ଗତିକଲା ବେଳେ ତାହା ଲଟେଇ ଲଟେଇ ଯାଇଛି । ସେଥିରେ ଫୁଲ ଫୁଟିଛି, ଫଳ ବି ଧରିଛି ।

ପ୍ରଫେସର ବୈଷ୍ଣବଚରଣ ସାମଲ

××× ସ୍ୱରାଜ୍ୟଲକ୍ଷ୍ମୀ ଜଣେ ଆଗଧାଡ଼ିର ଗାଳ୍ପିକା, ଏଥିରେ ଦ୍ୱିମତ ନାହିଁ । କାବ୍ୟିକ ଗଦ୍ୟ ରଚନାରେ ସେ ଖୁବ୍ ନିପୁଣା । ××× ପ୍ରକାଶଭଙ୍ଗୀରେ କାବ୍ୟମୟତାର ବିଚିତ୍ର ଆବେଦନ । ବିମ୍ବ ଓ ପ୍ରତୀକରେ ଭରପୁର । ଏ ପ୍ରକାରର ପରିପୁଷ୍ଟ ଶୈଳୀର ବୈଶିଷ୍ଟ୍ୟ ରହିଛି ଏଥିପାଇଁ ଯେ ଏହା ଚମତ୍କାର ଭାବରେ ଭାବବାହକ । ସେଥିପାଇଁ ଭାବ ଓ ଭାଷା ମଧ୍ୟରେ ଅପୂର୍ବ ସନ୍ତୁଳନ ତାଙ୍କ ରଚନାର ଉଲ୍ଲେଖନୀୟ ଦିଗ ।

ଡ. ପଞ୍ଚାନନ ମିଶ୍ର




ISBN 81-7480343-7-2